ପଠାଣୀ ପଟ୍ଟନାୟକ

# ସାହିତ୍ୟ ଓ ସମୀକ୍ଷା

ବିଦ୍ୟାପୁରୀ

# ସାହିତ୍ୟ ଓ ସମୀକ୍ଷା

ଶ୍ରୀ ପଠାଣି ପଟ୍ଟନାୟକ
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

ବିଦ୍ୟାପୁରୀ
ବାଲୁବଜାର କଟକ

ପ୍ରଥମ ପ୍ରକାଶ
ଡିସେମ୍ବର, ୧୯୭୮

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରକ
ଗୀତାଞ୍ଜଳି ପ୍ରେସ
ଅଲିଶାବଜାର, କଟକ

ମୂଲ୍ୟ
ବୋର୍ଡ଼ବନ୍ଧେଇ— [illegible]
ସାଦା ବନ୍ଧେଇ—

# ସ୍ମୃତି-ତର୍ପଣ

ଶ୍ରୀମନ୍ଦିର ପଶ୍ଚିମ ଉଦ୍ୟାନର ଚମ୍ପାଗଛ ଉପରେ କେତେଜଣ କିଶୋରଙ୍କର ସ୍ୱପ୍ନାତୁର ମନ ନେଇ ଜନ୍ମ ନେଇଥିଲା ପୁରୀର ତରୁଣ ସାହିତ୍ୟମନ୍ଦିର । ହେ **ଚନ୍ଦ୍ରନାରାୟଣ** ! ତୁମେ ଥିଲ ତାର ଏକ ଖୁଣ୍ଟିଆ ଖମ୍ବ । ଗାନ୍ଧୀଜୀଙ୍କ ଷୋହଳଗୋଟି ମୌଳିକ କାର୍ଯ୍ୟକ୍ରମ ପାଳନ କରିବାପାଇଁ ସ୍ୱାଧୀନତାର ପ୍ରାକ୍‌କାଳରେ କେତେଜଣ ତରୁଣ ଧାଇଁ ଯାଇଥିଲେ ଅନଗ୍ରପର ବ୍ରହ୍ମଗିରି ଅଞ୍ଚଳକୁ । ସେଠାରେ ମଧ୍ୟ ତୁମକୁ ଦେଖିଥିଲି ଝାଡ଼ୁଦାର ରୂପରେ । ବିଚ୍ଛିନ୍ନ ଅଞ୍ଚଳ ଭାଇଭଉଣୀଙ୍କ ପାଇଁ ଉତ୍କଳ ବାହିନୀର ପଟୁଆରରେ ତୁମରି ହାତରେ ପତାକା ଶୋଭା ପାଉଥିଲା । ପୁରୀର ସଂଗ୍ରାମୀ ଯୁବ ଶୋଭାଯାତ୍ରାରେ ତୁମେହିଁ ଆଗେ ଆଗେ ଡାକ ଯାଉଥିଲ, "ଇନ୍‌କିଲାବ, ଜିନ୍ଦାବାଦ୍" । ପୁରୀ ସେବା ସମିତି, ପୁରୀ ପୌରସଂସ୍ଥା, ପୁରୀ ସେବାବ୍ରତ ଗୋଷ୍ଠୀ, ପୁରୀ ସାଂସ୍କୃତିକ ସମାବେଶ—ପ୍ରଭୃତି ତୁମର ପଦଚିହ୍ନ ବାରି ହୋଇ ପଡ଼ୁଥିଲା । ତୁମେ ଥିଲ ଅଜାତଶତ୍ରୁ । ତୁମର କୌଳିକ ଅଧିକାର ଥିଲା ଶ୍ରୀଜଗନ୍ନାଥଙ୍କୁ ଚନ୍ଦନ ଘୋରି ଯୋଗାଇବା । ସେଇ ପ୍ରେମରେ ବିହ୍ୱଳ ହୋଇ ପ୍ରଭୁ ତୁମକୁ ଏତେ ଚଞ୍ଚଳ ପାଖକୁ ଟାଣି ନେଇଗଲେ । ମରସଂସାରର ଜଞ୍ଜାଳରେ ଥାଇ ପୁଣି ତୁମ କଥା ବେଳେବେଳେ ବହୁତ ମନେ ପଡ଼େ । ହେ ମହାକାଳ ! ବନ୍ଧୁ **ଚନ୍ଦ୍ରନାରାୟଣ ଘଟୁଆରୀ**ର ଅମର ଆତ୍ମା କୋଇଲି ବୈକୁଣ୍ଠରେ କୈବଲ୍ୟ ଲାଭ କରୁ ।

ସ୍ନେହାଧୀନ ବନ୍ଧୁ
**ପଠାଣି**

# ଭୂମିକା

ସାଂପ୍ରତିକ କାଳର ଓଡ଼ିଆ ସାହିତ୍ୟରେ ସମାଲୋଚନାର ସ୍ରୋତସ୍ୱିନୀ ଅମନ୍ଦ-ଗାମିନୀ ହୋଇଅଛି ବୋଲି ଅନେକେ ମତପ୍ରକାଶ କରିଥାଆନ୍ତି । ଏଥିପାଇଁ ବିଶ୍ୱବିଦ୍ୟାଳୟର ପ୍ରସାର ଏବଂ ବିଶ୍ୱବିଦ୍ୟାଳୟ ସ୍ତରରେ ଦେଶୀୟ ଭାଷାର ପ୍ରାଧାନ୍ୟଲାଭ ବହୁ ପରିମାଣରେ ଦାୟୀ ବୋଲି ଅନୁମାନ କରାଯାଇପାରେ । ବିଶ୍ୱବିଦ୍ୟାଳୟ ଅନୁଦାନ ସମିତିଙ୍କ ଆରୋପିତ ସର୍ତ୍ତଯୋଗୁ ଜୀବିକା-ଧନ୍ଦାରେ ପ୍ରାଣପ୍ରତିଷ୍ଠା ପାଇଁ ଆଜିକାଲି ବହୁ ଗବେଷଣା-ନିବନ୍ଧ ଓ ସମାଲୋଚନା ପ୍ରସ୍ତୁତ କରାଯାଉଅଛି । ସରକାରୀ ସ୍ତରରେ ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ସାହିତ୍ୟକୃତି ପାଇଁ ସ୍ୱୀକୃତି ଏବଂ ସମ୍ବର୍ଦ୍ଧନା ସହିତ କଳ୍ପିତ ଆର୍ଥିକ ଲାଭର ସୁଯୋଗ ରହିଥିବାରୁ ନିଜ ନିଜ ସାହିତ୍ୟକୃତିର ମୂଲ୍ୟାୟନ ପାଇଁ ବହୁ ସାହିତ୍ୟସ୍ରଷ୍ଟାଙ୍କର ମାନସରେ ବ୍ୟାକୁଳତା ପ୍ରକାଶ ପାଇଅଛି । ଏହି କାରଣରୁ ସାହିତ୍ୟ-ଆଲୋଚନା କ୍ଷେତ୍ରରେ ଗୋଷ୍ଠୀ-ପ୍ରୀତି, ଆଞ୍ଚଳିକ-ପ୍ରୀତି, ଏବଂ ଅତି ଭୟଙ୍କର ଅହଂମନ୍ୟ-ପ୍ରୀତି ମଧ୍ୟ ପ୍ରତିଫଳିତ ହେଉଅଛି । ସେଥିପାଇଁ ଆଲୋଚନାର ପରିସର ବସ୍ତୁନିଷ୍ଠ ନ ହୋଇ ଅତ୍ୟନ୍ତ ବ୍ୟକ୍ତିନିଷ୍ଠ ଏବଂ ଅନୁଦାର-ଭାବନା-ପୀଡ଼ିତ ତଥା ସଙ୍କୀର୍ଣ୍ଣ ହୋଇ ପଡ଼ିବା ସ୍ୱାଭାବିକ ।

ସାହିତ୍ୟ ଆଲୋଚନାରେ ପରମ୍ପରା, ପୂର୍ବଦୃଷ୍ଟି ଏବଂ ତତ୍କାଳୀନ ଜୀବନଚୈତନ୍ୟ ପ୍ରାଧାନ୍ୟ ଲାଭ କରିବା ଆବଶ୍ୟକ ବୋଲି ଲେଖକ ବିଶ୍ୱାସ କରେ । କୌଣସି ନିର୍ଦ୍ଦିଷ୍ଟ କାଳର ତତ୍କାଳିକ ମୂଲ୍ୟବୋଧ ସ୍ୱୀକୃତ ହେଲେହେଁ ସାହିତ୍ୟର ଚିରନ୍ତନ ଆବେଦନକୁ ଅସ୍ୱୀକାର କରାଯାଇ ପାରେନାହିଁ । ରସିକ ପାଠକମଣ୍ଡଳୀ "ସାହିତ୍ୟ ଓ ସମୀକ୍ଷା"ର କେତେଗୋଟି ଆଲୋଚନାକୁ ସେହି ମାନଦଣ୍ଡରେ ଗ୍ରହଣ କରିପାରିଲେ ଲେଖକ ନିଜକୁ ଧନ୍ୟ ମନେ କରିବ ।

କେନ୍ଦୁଝର କଲୋନୀ
କନିକା ରୋଡ଼
କଟକ-୮

ପଠାଣି ପଟ୍ଟନାୟକ

# ସୂଚୀ

# ସାହିତ୍ୟର ଆଦର୍ଶ

'ସାହିତ୍ୟ'' ଏହି ଶବ୍ଦଟି ଆମ୍ଭମାନଙ୍କ ନିକଟରେ ଏତେ ପରିଚିତ ଏବଂ ଏତେ ବ୍ୟାପକ ଉପଲବ୍‌ଧ ହୁଏ ଯେ ସାହିତ୍ୟର ପ୍ରକୃତ ସ୍ୱରୂପ ଏବଂ ସାଧନା ନେଇ ଆଲୋଚନା କଲେ ସ୍ୱତଃ ବିସ୍ମିତ ହେବାକୁ ପଡ଼େ । ସାହିତ୍ୟର ଲକ୍ଷ୍ୟ ନେଇ ବିଭିନ୍ନ ଯୁଗରେ ଦେଶକାଳ ଭେଦରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଛି । ସାହିତ୍ୟ ସୃଷ୍ଟିର କେଉଁ ଆଦିମ ଯୁଗରୁ ଆଜିଯାଏ ସମାଲୋଚକମାନେ ସାହିତ୍ୟର ଧର୍ମ ସମ୍ବନ୍ଧରେ ଆଲୋଚନା କରି ଆସୁଅଛନ୍ତି; କିନ୍ତୁ ସେ ଆଲୋଚନାର ବିରାମ ସମ୍ଭବ ହୋଇନାହିଁ ।

ସଂସ୍କୃତ ଆଲଙ୍କାରିକମାନେ ସାହିତ୍ୟ ସମ୍ବନ୍ଧରେ ନାନା ମତ ଦେଇଅଛନ୍ତି । ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ ସାହିତ୍ୟ ହେଉଛି 'ସଂକ୍ଷେପାତ୍ ବାକ୍ୟ ମିଷ୍ଟାର୍ଥଂ ବ୍ୟବଚ୍ଛିନ୍ନା ପଦାବଳୀ ।' ସଂକ୍ଷେପରେ ବୁଝାଇ କହିଲେ ହୋଇପାରେ ମନୁଷ୍ୟ ମରଣଶୀଳ 'Man is bubble' । ଅନ୍ୟତମ ଆଲଙ୍କାରିକ ପଣ୍ଡିତ ବାମନାଚାର୍ଯ୍ୟ କହନ୍ତି—'ରୀତିରାତ୍ମା କାବ୍ୟସ୍ୟ'—ରୀତି ହେଉଛି କାବ୍ୟର ଆତ୍ମା ଅର୍ଥାତ୍ ରୀତି ହେଉଛି ବିଶିଷ୍ଟ ପଦର ରଚନା । ବିଶିଷ୍ଟ ପଦର ସମାହାରରେ ସାହିତ୍ୟର ଅଭିବ୍ୟକ୍ତି ସୁନ୍ଦର ହୋଇପାରେ । ଏହି ମତକୁ ସମର୍ଥନ କରି ଇଂରେଜ କବି କଲରିଜ୍ (Coleridge) କହିଛନ୍ତି— Poetry is the best words in the best order. ଅନ୍ୟ ପକ୍ଷରେ ଆନନ୍ଦବର୍ଦ୍ଧନାଚାର୍ଯ୍ୟ 'କାବ୍ୟର ଆତ୍ମା ଧ୍ୱନି' ବା 'ବକ୍ରୋକ୍ତି କାବ୍ୟର ପ୍ରାଣ' ବୋଲି ଘୋଷଣା କରିବେଲେ 'ସରସ୍ୱତୀ କଣ୍ଠାଭରଣ' 'ଦୋଷ ବର୍ଜିତ, ଗୁଣଯୁକ୍ତ, ଅଳଙ୍କାର ମଣ୍ଡିତ ଓ ରସଯୁକ୍ତ ପଦାବଳୀହିଁ କାବ୍ୟ' ବୋଲି ମତ ବ୍ୟକ୍ତ କରି ଅଛନ୍ତି । ଶେଷୋକ୍ତ ମତକୁ ସମର୍ଥନ କରି ଦଣ୍ଡାଚାର୍ଯ୍ୟ କହନ୍ତି—'ସ୍ୟାଦପି ସୁନ୍ଦରଂ ବପୁଃଶ୍ୱିତ୍ରେଣୈକେନ ଦୁର୍ଭଗମ ।' ଅର୍ଥାତ୍ ସୁନ୍ଦର ଶରୀର କୁଷ୍ଠ ଦୋଷରେ ଦୂଷିତ ହେଲେ ଯେପରି ତ୍ୟାଜ୍ୟ, ସେହିପରି ଦୋଷଯୁକ୍ତ କାବ୍ୟ ବର୍ଜନୀୟ । ମାତ୍ର ବାସ୍ତବରେ ବିଶ୍ୱ-ସାହିତ୍ୟ ସଂସାରରେ ଦୋଷହୀନ କାବ୍ୟ ବିରଳ । ଉତ୍କଳଗୌରବ ବିଶ୍ୱନାଥ କବିରାଜ 'ନିର୍ଦ୍ଦୋଷଂ କାବ୍ୟଂ ପ୍ରବିରଳବିଷୟଂ ନିର୍ବିଷୟଂ ବା ସ୍ୟାତ୍' କହି ଏ ମତକୁ ସମର୍ଥନ କରିଛନ୍ତି । ସେ ଯାହାହେଉ ବର୍ତ୍ତମାନ ସାହିତ୍ୟର ପ୍ରକୃତ ବିଶ୍ଳେଷଣ ନେଇ ବିଚାର କଲେ ସଂସ୍କୃତ ସାହିତ୍ୟର ଭଣ୍ଡାରରେ ବିଶ୍ୱନାଥଙ୍କର ମତହିଁ ସର୍ବଜନାଦୃତ ହୋଇଅଛି । ସେ କହିଛନ୍ତି—'ବାକ୍ୟଂ ରସାତ୍ମକଂ କାବ୍ୟଂ ।'

ଏସବୁ ଆଲୋଚନା ସତ୍ତ୍ୱେ ଆମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବ ଯେ, ବର୍ତ୍ତମାନ ସାହିତ୍ୟର ବିକାଶରେ କେତେ ପରିବର୍ତ୍ତନ ହୋଇଗଲଣି, ଯଦିଓ ସାହିତ୍ୟର ମୌଳିକ ଧର୍ମ 'ସତ୍ୟ-ଶିବ-ସୁନ୍ଦର' ଚିରଦିନପାଇଁ ରହିବା ସ୍ୱାଭାବିକ । ସାହିତ୍ୟ ଶବ୍ଦର ବିଶ୍ଳେଷଣ କରିବାକୁ ଯାଇ ଅଧ୍ୟାପକ ଗିରିଜାଶଙ୍କର ରାୟ ଲେଖିଛନ୍ତି—ସହ ଏହି ମୂଳ ଶବ୍ଦରୁ ସାହିତ୍ୟର ଉତ୍ପତ୍ତି; ଅର୍ଥାତ୍ ଯାହାଦ୍ୱାରା ମନୁଷ୍ୟ ଅନ୍ୟାନ୍ୟ ମନୁଷ୍ୟମାନଙ୍କ ସହିତ, ପ୍ରକୃତି ଓ ପରମେଶ୍ୱରଙ୍କ ସହିତ ବାସ୍ତବ ଓ ଅବାସ୍ତବ ରାଜ୍ୟ ସହିତ ନିଜର ଐକ୍ୟ ବା ଯୋଗ ସମ୍ପାଦନ କରିବାକୁ ସକ୍ଷମ ହୁଏ, ତାହାହିଁ ସାହିତ୍ୟ ନାମରେ ଅଭିହିତ ହୋଇପାରେ । ଯେଉଁ ଲେଖାରେ ମନୁଷ୍ୟ ନିଜ ସତ୍ତାକୁ ପୃଥକ୍ ଭାବରେ ଅନୁଧ୍ୟାନ କରିବାକୁ ସଚେଷ୍ଟ ହୁଏ ନାହିଁ; ମାତ୍ର ଦୃଶ୍ୟ ଓ ଅଦୃଶ୍ୟ ଜଗତ ସହିତ ନିଜ ଭିତର ଘାତ ଓ ପ୍ରତିଘାତ ଉପଲବ୍ଧି କରିବାକୁ ଚେଷ୍ଟାକରେ ଓ ନିଜକୁ ସଂସାରର ଅଙ୍ଗ ସ୍ୱରୂପ ଜାଣି କରି ଅନ୍ୟାନ୍ୟ ଅଙ୍ଗର ସ୍ପନ୍ଦନକୁ ନିଜେ ଅବଧାରଣ କରିବାକୁ ଶିଖେ ଓ ବିଶ୍ୱରୂପର କିଞ୍ଚିନ୍ମାତ୍ର ଉପଲବ୍ଧି କରି କଳ୍ପନାର ବିକାଶ ଦ୍ୱାରା ସମଗ୍ର ରୂପଟିକୁ ନିଜର ମନରେ ଧାରଣା କରିବାକୁ ସଚେଷ୍ଟ ହୁଏ, ତାହାର ମଧ୍ୟରେ ସାହିତ୍ୟର ବିକାଶ ଦେଖାଯାଇ ପାରେ (ସାହିତ୍ୟ ସନ୍ଦର୍ଭ-ପୃଷ୍ଠା ୨) । ସେହିପରି ହୃଦୟ ମଧ୍ୟ ଦେଇ ଲେଖକ ଏବଂ ପାଠକ ମଧ୍ୟରେ ଯେଉଁ ଅନ୍ତରଙ୍ଗ ଯୋଗ ତାହାକୁ ବିଶ୍ୱକବି ରବୀନ୍ଦ୍ରନାଥ ସାହିତ୍ୟ ଆଖ୍ୟା ଦେଇଛନ୍ତି । ତାଙ୍କ ମତରେ 'ସେ ଯେ କେବଳ ଭାବେ ଭାବେ ଭାଷାୟ ଭାଷାୟ ଗ୍ରନ୍ଥେ ଗ୍ରନ୍ଥେ ମିଳନ ତାହା ନୟେ—ମାନୁଷେର ସହିତ ମାନୁଷେର, ଅତୀତେର ସହିତ ବର୍ତ୍ତମାନେର, ଦୂରେର ସହିତ ନିକଟେର ଅତ୍ୟନ୍ତ ଅନ୍ତରଙ୍ଗ ଯୋଗସାଧନ ସାହିତ୍ୟ ବ୍ୟତୀତ ଆର କିଛୁଇ ଦ୍ୱାରାଇ ସମ୍ଭବପର ନହେଁ ।"

କାବ୍ୟ ଏବଂ ସାହିତ୍ୟର ଉଦ୍ଦେଶ୍ୟ ଆମର ଅନୁଭୂତିକୁ ସୁନ୍ଦର ଭାବରେ ରୂପାୟିତ କରିବା—ବର୍ଣ୍ଣନା ପ୍ରସଙ୍ଗରେ ସାହିତ୍ୟିକ ମାନବର ହର୍ଷ, ବିଷାଦ, ସୁଖ, ଦୁଃଖ, ସକଳ ଅନୁଭୂତିଗୁଡ଼ିକୁ ଲିପିବଦ୍ଧ କରିଥାଏ । ସେ ସବୁ ସତ୍ୟ, ଶିବ, ସୁନ୍ଦର ଭାବରେ ପାଠକ ହୃଦୟରେ ପ୍ରତିଭାତ ହୁଏ ଏବଂ ମାନବ ସମାଜକୁ ଗଢ଼ିବାରେ ତାହା ଯଥେଷ୍ଟ ପ୍ରେରଣା ପ୍ରଦାନ କରେ ।

Hudson କହନ୍ତି—

'Literature is a vital record of what men have seen in life, what they have experienced of it, what they have felt and thought about those aspects of it which have the most immediate and enduring interest for all of us. ମନୁଷ୍ୟ ଯାହା ଦେଖେ, ଶୁଣେ, ଯାହାଁ ଅନୁଭବରେ ଆଣେ, ଯାହା ଜୀବନ ସମ୍ବନ୍ଧରେ ଚିନ୍ତା କରେ ଏବଂ ଯାହାର ଅଭିବ୍ୟକ୍ତିହିଁ ସର୍ବସାଧାରଣର ଇଚ୍ଛା ଏବଂ ଅନୁଭୂତ ରୂପେ ପ୍ରକାଶ ପାଏ, ତାହାହିଁ ସାହିତ୍ୟ ଲିପିବଦ୍ଧ କରେ ।

ସାହିତ୍ୟରେ ଅବାସ୍ତବ ଆଦର୍ଶ ରୂପରେ ଏବଂ ଆଦର୍ଶ ବାସ୍ତବ ରୂପରେ ପ୍ରତିଭାତ ହୁଏ । ଅରୂପକୁ ରୂପ ଦିଏ ସାହିତ୍ୟିକ । ବିରାଟ ସୃଷ୍ଟି ଚତୁର୍ଦ୍ଦିଗରେ ନାନା ଭାବରେ ପଡ଼ି ରହିଅଛି । ନଦୀ, ବଣ, ବିଲ, ଉପତ୍ୟକା, ଚନ୍ଦ୍ର, ସୂର୍ଯ୍ୟ, ଅନନ୍ତ ଆକାଶ, ବିଶାଳ ବାରିଧି, ଜଳ ଏବଂ ଜନ୍ତୁ ଜଗତ—ଏସବୁ ମଧ୍ୟରେ ସୃଷ୍ଟିର ବୈଚିତ୍ର୍ୟ ଉପଲବ୍ଧି କରୁ କରୁ ସାଧାରଣ ଦର୍ଶକ ଏହି ବିରାଟ ଦୃଶ୍ୟରେ ସତ୍ତା ହରାଇ ବସେ । ତାର ଅସ୍ମିତା ବିସ୍ମୟରେ ନିମଗ୍ନ ହୁଏ । କିନ୍ତୁ ସାହିତ୍ୟିକ ସେହି ସବୁ ଦୃଶ୍ୟ ମଧ୍ୟରେ ଯେଉଁ ଅମୃତର ସନ୍ଧାନ ପାଏ, ଯେଉଁ ଭୂମାନନ୍ଦ ଉପଲବ୍ଧି କରେ, ତାକୁ ସତ୍ୟ, ଶିବ ସୁନ୍ଦର ରୂପରେ ବିଶ୍ୱ ଆଗରେ ବାଢ଼ିଦିଏ ସୃଷ୍ଟିର ବୈଚିତ୍ର୍ୟକୁ ଆହୁରି ସ୍ପଷ୍ଟତର କରି । ଜଗତର ଶ୍ରେଷ୍ଠ କଳାକାର ଏହି ଭାବରେ ମାନବ ସମାଜର ବନ୍ଦନୀୟ । ବିଶ୍ୱ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ କଳାକାର ସେକ୍ସପିଅର ଗାଇଛନ୍ତି—

The poet's eye in a
fine frenzy rolling
Sooth glance from heaven to earth,
from earth to heaven.
And as imagination bodies forth
The forms of things unknown
the poet's pen
Turns them to shapes and
gives to airy nothing
A local habitation and a name.

ଯାହା ସାଧାରଣ ମନୀଷୀର ବୋଧଗମ୍ୟ ହୁଏ ନାହିଁ, ଯାହା ସାଧାରଣ ଅନୁଭୂତିର ଅନ୍ତରାଳରେ ରହି ବୈଚିତ୍ର୍ୟ ସୃଷ୍ଟି କରୁଥାଏ, ଯାହା ଅଜଣା ଅଶୁଣା ଭାବରେ ପଡ଼ି ରହେ, କବି ତାର ଅମର ଲେଖନୀରେ ସେ ସବୁ ରୂପ ଦିଏ; ଅରୂପକୁ ମୂର୍ତ୍ତି ପ୍ରଦାନ କରେ, ବିଶ୍ୱ ଦରବାରରେ ତାକୁ ପରିଚିତ କରାଏ । ବିଖ୍ୟାତ ହିନ୍ଦୀ ସାହିତ୍ୟିକ ଜୈନେନ୍ଦ୍ରକୁମାର ତାଙ୍କର 'ସାହିତ୍ୟ କ୍ୟା ହୈ ?' ପ୍ରବନ୍ଧରେ ଆଲୋଚନା କରି ଲେଖିଛନ୍ତି—ମନୁଷ୍ୟ ସହିତ, ସମାଜ ସହିତ, ରାଷ୍ଟ୍ର ଏବଂ ବିଶ୍ୱ ସହିତ ଏବଂ ସର୍ବୋପରି ନିଜ ସହିତ ସମ୍ପର୍କ—ଅର୍ଥାତ୍ ଏମାନଙ୍କ ମଧ୍ୟରେ ଚିରକାଳଲାଗି ଯେ ସମ୍ବନ୍ଧ ସ୍ଥାପନର ଚେଷ୍ଟା ବିଦ୍ୟମାନ—ତାହାହିଁ ମନୁଷ୍ୟ ଜୀବନର ସର୍ବଶ୍ରେଷ୍ଠ ସଂଗୃହୀତ ମଣିରୂପେ ବିକାଶପ୍ରାପ୍ତ । ଅର୍ଥାତ୍ ମନୁଷ୍ୟର ସବୁଠାରୁ ସାର ଏବଂ ଅସାର ବସ୍ତୁ ଜ୍ଞାନ ଏବଂ ଅଜ୍ଞାନ ରୂପେ ପ୍ରତିଭାତ ହୁଏ—ସେ ସତ୍ୟର ଅନୁସନ୍ଧାନରେ ଚେଷ୍ଟିତ ହୁଏ । ଏହି ପ୍ରକାରେ ମନୁଷ୍ୟ ବିଭିନ୍ନ ଉପାୟରେ ନିଜର ଅନୁଭୂତିକୁ ଉପଭୋଗ କରେ । ଜୀବନର ସଫଳତା, ବିଫଳତା, ହର୍ଷବିଷାଦ, ପ୍ରେମ ଆଉ ଶତ୍ରୁତା, ନିସ୍ୱାର୍ଥଶୀଳତା, ଆଉ ପ୍ରତିଦ୍ୱନ୍ଦ୍ୱିତାଶୀଳତା

ଆଦରେ ମାନବ ଅନୁଭୂତିର ବିକାଶ ପରିଲକ୍ଷିତ ହୁଏ । ଅନୁଭୂତିର ବହିଃପ୍ରକାଶ ପାଇଁ ସେ ତିଆରି କରେ ଭାଷା । ଭାଷାକୁ ରସାଣିତ କରି ସେ ସାହିତ୍ୟରେ ରୂପାୟିତ କରିବାକୁ ଚେଷ୍ଟା କରେ ।

ମନୁଷ୍ୟ ଯୁଗଯୁଗର ସାଧନା ଫଳରେ ବିଶ୍ୱର ବିରାଟ ଅଂଶ ମଧ୍ୟରୁ ଖୋଜି ଖୋଜି ଯେଉଁ ଅମୂଲ୍ୟ ଅନୁଭୂତି ସକଳ ପାଇଛୁ, ତାକୁ ମାଟି, ପଥର, ଧାତୁ ଅଥବା ଧ୍ୱନି ବିଶେଷରେ ବାନ୍ଧି କରିବାପାଇଁ ଚେଷ୍ଟାକରେ । ଯେମାନଙ୍କ ନିଜର ଅନୁଭୂତିର ବହିଃ-ପ୍ରକାଶ ରୂପେ ସମାଜ ସମକ୍ଷରେ ଉପସ୍ଥାପିତ କରିବାକୁ ବ୍ୟଗ୍ର ହୁଏ । ମାନବ ଜାତିର ଏହି ଅନନ୍ୟସାଧାରଣ ଅନୁଭୂତିଭଣ୍ଡାର ଲିପିବଦ୍ଧ କରିବାହିଁ ସାହିତ୍ୟ । ତେଣୁ ଇଂରେଜି ସାହିତ୍ୟର ବିଖ୍ୟାତ ରୋମାଣ୍ଟିକ କବି ଉଆର୍ଡ଼୍ସଉଆର୍ଥ ଲେଖିଛନ୍ତି—

The poet is a man who has a greater knowledge of human nature and a more comprehensive soul than are supposed to be common among mankind, a man pleased with his own passions and violations and who rejoices more than other men in the spirit of life that is in him

କବି ବା ସାହିତ୍ୟିକ ନିଜେ ଜଣେ ଐନ୍ଦ୍ରଜାଲିକ । ସତ୍ୟ, ଶିବ, ସୁନ୍ଦରର ଅଗ୍ରଦୂତ ହିସାବରେ କବି ଆମର ପୂଜ୍ୟ । ସାଧାରଣ ଆଖିରେ ଯାହା ସୁନ୍ଦର, କବିର ଆଖିରେ ତାହା ସୁନ୍ଦର ହୋଇପାରେ, ମାତ୍ର ସାଧାରଣ ଆଖି ଯେଉଁ ଆଡ଼କୁ ଯାଏ ନାହିଁ, କବି ତାର ଦୂରଦୃଷ୍ଟି ବଳରେ ସେହି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଅଧ୍ୟୟନ କରେ । କବି ଜଡ଼ରେ ପ୍ରାଣର ସଞ୍ଚାର କରେ, ଅସୁନ୍ଦରରେ ସୌନ୍ଦର୍ଯ୍ୟର ସନ୍ଧାନ ଦିଏ । ଯାହା ମାନବ ସମାଜ ଆଗରେ ଅତି ଖିଷଣ, କଦାକାର ଏବଂ ତୁଚ୍ଛ, ତାହା ସାହିତ୍ୟିକ ବା କଳାବିତ୍ ଆଖିରେ ଅତି ସୁନ୍ଦର ଓ ମଙ୍ଗଳମୟ । ତେଣୁ କବି ତାହାର ଏହି ଅମର ବାର୍ତ୍ତା ଜଗତକୁ ଦେବାକୁ ଚାହେଁ— ॰

"ଏହି ଭସ୍ମ ଅବଶେଷ ଉପରେ ମୁଁ
ରଚିବି ନନ୍ଦନ
ମର୍ତ୍ତ୍ୟରେ ଅମରାବତୀ ଜଡ଼ ଦେହେ
ଜୀବନ ସ୍ପନ୍ଦନ ।"

( ସବୁଜ କବିତା—ଅନ୍ନଦାଶଙ୍କର )

କଳାର ଉଦ୍ଦେଶ୍ୟ ହେବା ଉଚିତ—ବୁଦ୍ଧି ଏବଂ ଭାବମୟ କ୍ଷେତ୍ରକୁ ନେଇ ଏଭଳି ସତ୍ୟରେ ପହଞ୍ଚାଇ ଦେବା, ଯେଉଁଠାରେ ମନୁଷ୍ୟର ଐକ୍ୟ, କଲ୍ୟାଣ ସାଧିତ ହେବ । ଈଶ୍ୱରଙ୍କର ସତ୍ୟ, ଶିବ, ସୁନ୍ଦର ଏବଂ ପ୍ରେମର ସାମ୍ରାଜ୍ୟ ସେହିଠାରେ ସମ୍ଭବ । ସାହିତ୍ୟରେ ସହିତର ଭାବ ଏହିଠାରେ । 'ସାହିତ୍ୟକା ଉଦ୍ଦେଶ୍ୟ' ଶୀର୍ଷକ ପ୍ରବନ୍ଧରେ

ହିନ୍ଦୀ ସାହିତ୍ୟର କଥା-ସମ୍ରାଟ ପ୍ରେମଚନ୍ଦ କହିଛନ୍ତି, 'ଯେଉଁ ସାହିତ୍ୟରେ ଆମର ସୁରୁଚି ଜାଗ୍ରତ ନ ହୁଏ, ଆଧ୍ୟାତ୍ମିକ ଏବଂ ମାନସିକ ତୃପ୍ତି ସାଧିତ ନ ହୁଏ, ଆମର ଶକ୍ତି ଏବଂ ଗତିର ପ୍ରେରଣା ନ ଜନ୍ମେ, ଆମର ପ୍ରେମ ଏବଂ ସୌନ୍ଦର୍ଯ୍ୟଙ୍କ ଜାଗ୍ରତ ନ ହୁଏ, ଯେ ଆମକୁ ପ୍ରକୃତ ସଂକଳ୍ପରେ ବ୍ରତୀ ନ କରାଏ ଏବଂ ବିପଦରେ ଯେ ପ୍ରକୃତ ଦୃଢ଼ତା ନ ଶିଖାଏ—ଏଭଳି ରଚନା ସାହିତ୍ୟ ପଦବାଚ୍ୟ ହୋଇ ନପାରେ ।'

ସାହିତ୍ୟର ସାଧନା ସୌନ୍ଦର୍ଯ୍ୟ-ପ୍ରେମକୁ ଜାଗ୍ରତ କରିବା । ତାହାହିଁ ଏ ଯତ୍ନ କରିଥାଏ । ଏପରି କୌଣସି ମନୁଷ୍ୟ ନାହିଁ, ଯାହାର କି ସୌନ୍ଦର୍ଯ୍ୟରେ ଅନୁଭୂତି ନାହିଁ । ସାହିତ୍ୟକାରର ଏ ସୌନ୍ଦର୍ଯ୍ୟବୃତ୍ତି ଯେତେ ପରିମାଣରେ ଜାଗ୍ରତ ହୋଇ ଉଠେ, ତାହାର ରଚନା ସେତେ ପ୍ରଭାବମୟ ହୋଇଥାଏ । ଅନୁଭୂତିର ତୀକ୍ଷ୍ଣତା ଏବଂ ପ୍ରକୃତ ନିରୀକ୍ଷଣ ଫଳରେ ସୌନ୍ଦର୍ଯ୍ୟ-ବୋଧକୁ ଏଭଳି ଶାଣିତ କରାଯାଏ ଯେ, ଯାହା କିଛି ଅସୁନ୍ଦର, ମନୁଷ୍ୟ ପ୍ରକୃତିର ବାହାର, ତାହାକୁ ପଦାଘାତ କରାଯାଏ । ଯାହାକିଛି ମାନବତା ଦିବ୍ୟତା ଏବଂ ଶାଶ୍ୱତ ଜ୍ୟୋତିରେ ଉଦ୍ଭାସିତ, ତାହାହିଁ ସେ ଗାନ କରି ପାଗଳ ହୁଏ । କବିଗୁରୁ ରବୀନ୍ଦ୍ରଙ୍କ ମତରେ ସୀମାର ମଧ୍ୟରେ ଅସୀମର ଆକର୍ଷଣ ସନ୍ଧାନ କରିବା ପ୍ରତ୍ୟେକ କାବ୍ୟକାର, କଳାବିତ୍ ବା ସାହିତ୍ୟିକର ଲକ୍ଷ୍ୟ ହେବା ଉଚିତ । ତେଣୁ ସେ ଲେଖିଛନ୍ତି—''ଆମାର ତୋ ମନେ ହୟ ଆମାର କାବ୍ୟ ରଚନାର ଏଇ ଏକଟି ମାତ୍ର ପାଲା—ସେ ପାଲାର ନାମ ଦେଓୟା ଯାଇତେ ପାରେ ସୀମାର ମଧ୍ୟେଇ ଅସୀମେର ସହିତ ମିଲନ ସାଧନେର ପାଲା ।'' (ଜୀବନ-ସ୍ମୃତି ୧୮୭ ପୃଷ୍ଠା) । ସାହିତ୍ୟ ଆକାରରେ ବିଚାର କଲେ ଆମର ରାମାୟଣ, ମହାଭାରତ, ଭଗବଦ୍‌ଗୀତା ପ୍ରଭୃତି ଗ୍ରନ୍ଥମାନ ବିଶ୍ୱ ଦରବାରରେ ଏହି ହିସାବରେ ଯୁଗ ଯୁଗ ଧରି ଯେଉଁଭଳି ପ୍ରେରଣା, ସ୍ପନ୍ଦନ ଏବଂ ଶକ୍ତି ପ୍ରଦାନ କରି ଆସୁଅଛନ୍ତି, ଆଗାମୀ ବହୁ ଶତ ବର୍ଷ ପାଇଁ ମଧ୍ୟ ସେହିଭଳି ପରିବେଷଣ କରୁଥିବେ ।

ସାହିତ୍ୟ ମଧ୍ୟରେ ଦେଶକାଳ ଭେଦରେ ବିଭିନ୍ନ ଦ୍ରଷ୍ଟାମାନେ ଭିନ୍ନ ଭିନ୍ନ ଦୃଷ୍ଟି-କୋଣରୁ ବିଚାର କରି ଆସିଛନ୍ତି । କେହି କେହି ସାହିତ୍ୟକୁ କେବଳ ଆନନ୍ଦ ଦେବାର ଏକ ଅସ୍ତ୍ର କରି ଧରିନେଲେ । କେହି ଆଧ୍ୟାତ୍ମିକବାଦ, ଦର୍ଶନ ବା ରାଜନୀତି ପ୍ରଭୃତି ବିଭିନ୍ନ ଦୃଷ୍ଟିକୋଣରୁ ପ୍ରଚାର କରିବାର ଏକ ପୋଷାକ ବୋଲି ମନେ କରନ୍ତି । ମାତ୍ର ଜାତି ଗଢ଼ିବାରେ ଏବଂ ଆଗାମୀ ଯୁଗର ସନ୍ଦେଶ ଦେବାରେ ସାହିତ୍ୟର ମହନୀୟ କାର୍ଯ୍ୟ ହୁଏତ ଅନେକ ଭୁଲି ଯାଆନ୍ତି ! ଅନେକଙ୍କ ମତରେ art for art sake ଯେପରି ସାହିତ୍ୟର ଧର୍ମ । ମାତ୍ର ଜୀବନ ପାଇଁ କଳାର ଯେ ବିଶିଷ୍ଟ ଅବଦାନ ଅଛି ସେ କଥା ଭୁଲିଯିବା ଉଚିତ ନୁହେଁ । ଏ କଥାର ଆଲୋଚନା ପ୍ରସଙ୍ଗରେ ସଂସ୍କୃତ ସାହିତ୍ୟର ବିଷୟବସ୍ତୁର ଆଦର୍ଶ ନେଇ ଏହିପରି ମନେ ପଡ଼ୁଛି—'ଇତିହାସ କଥୋଦ୍ଭୂତମିତରେ ବା ସଦାଶ୍ରୟମ୍'' ଅର୍ଥାତ ପୁରାଣ, ଇତିହାସ, ସତ୍ୟମୂଳକ ଘଟଣା ଲୋକପ୍ରଚଳିତ ଆଖ୍ୟାୟିକା ଇତ୍ୟାଦି ସେମାନଙ୍କ ସାହିତ୍ୟର ଆଶ୍ରୟ ହୋଇ ରହିଥିଲି । କିମ୍ବା ଆଜିର

ମାନଦଣ୍ଡରେ ବିଚାର କଲେ ତାଙ୍କର କଥାସାହିତ୍ୟର ଆଦର୍ଶ ନେଇ ଆମ୍ଭର ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ସେମାନଙ୍କର କଥା ସାହିତ୍ୟର ଆଦର୍ଶ ଥିଲା—

'ମିଥ୍ୟାଗ୍ରନ୍ଥପ୍ରବନ୍ଧେନ ମନୋହରତି ଯା ଭୃଶମ୍
ନାନା କୌତୁକହାସ୍ୟାଦ୍ୟୈଃ ସା କଥେତ୍ୟଭିଧୀୟତେ ।

ମିଥ୍ୟା କଥା, ମନୋହରଣକାରୀ ନାନା କୌତୁକାବହ ହାସ୍ୟରସାତ୍ମକ ବିଷୟ ଗ୍ରହଣ ଏହାର ଆଦର୍ଶ ହୋଇପାରେ ଏ ସେମାନେ ମାନବ ସମାଜକୁ ଯେପରି ଭୁଲି ଯାଇଥିଲେ । ଯେ କୌଣସି ଦେଶର ପ୍ରାଚୀନ ଧର୍ମମୂଳକ ସାହିତ୍ୟରେ ଏ ଅଭାବ ସର୍ବଦା ପରିଦୃଷ୍ଟ ହୁଏ । ଅନେକେ ଭାବନ୍ତି କବି ବା ସାହିତ୍ୟିକ କେବଳ କଳ୍ପନା-ବିଳାସରେ ଅତ୍ୟଧିକ ବୃତ୍ତି ଉଠିଥାଏ । ଏହି ସୁନ୍ଦର ପୃଥିବୀ, ସବୁଜ ବନାନୀ, ରମଣୀୟ ପ୍ରକୃତି ତାକୁ ଯେପରି ପାଗଳ ଭାବରେ ମୋହିତ କରି ରଖିଥାନ୍ତି । ତାର ଆଖି ଯେପରି ମାନବ ସମାଜ ଉପରେ ପଡ଼େ ନାହିଁ । ଦୁନିଆର ସମସ୍ୟାବହୁଳ ପଥରେ ତାର କର୍ତ୍ତବ୍ୟ ସେ ଅବଧାରଣ କରେ ନାହିଁ । ମାତ୍ର ଏ ତ ଆଜି ଭୁଲରେ ପରିଣତ ହୋଇଛି । ସେହି ପଳାୟନପନ୍ଥୀମାନଙ୍କୁ ଆହ୍ୱାନ କରି କବିଗୁରୁ ରବୀନ୍ଦ୍ର ଗାଇଛନ୍ତି—

'ମରିତେ ଚାହିଁନା ଆମି ସୁନ୍ଦର ଭୁବନେ
ମାନୁଷେର ମାଝେ ଆମି ବାଞ୍ଚିବାରେ ଚାଇ ।'

ଇଂରାଜ ସାହିତ୍ୟର ପ୍ରସିଦ୍ଧ ସମାଲୋଚକ ମାଥିଉଆରନଲ୍ଡ 'ସାହିତ୍ୟ ଜୀବନର ସମାଲୋଚନା' (Literature is the criticism of life) ବୋଲି ଘୋଷଣା କରିଛନ୍ତି । ଅଥବା ହଡ୍‌ସନଙ୍କ ମତରେ "Poetry is an interpretation of life through imagination and emotion." ଭାବ ଏବଂ କଳ୍ପନାର ବୋଲ ଦେଇ ଜୀବନର ବିଶ୍ଳେଷଣ କେବଳ କବିତା ମଧ୍ୟରେ କରାଯାଇ ପାରେ । ଏହି ଆଦର୍ଶ ଆଜି ସାମନ୍ତବାଦୀ ସାହିତ୍ୟକୁ ଏଡ଼ିଦେଇ ଆଗେଇ ଆସିଛି ଓଡ଼ିଆ ଭାଷାର କାବ୍ୟଯୁଗର ସାହିତ୍ୟ ଏହିପରି । ସେଠାରେ ମନୁଷ୍ୟକୁ ମନୁଷ୍ୟ ରୂପରେ ଦେଖିବାର ସ୍ୱପ୍ନ ଯେପରି ନିରର୍ଥକ । କଳ୍ପନାର ସେହି ତାଜମହଲ ମଧ୍ୟରେ ଅରୂପର ସ୍ୱପ୍ନ ମଧ୍ୟରେ ବୁଡ଼ି ନ ରହି ଆଜିର କବି ବା ସାହିତ୍ୟିକ ସମଗ୍ର ବିଶ୍ୱର ଚିନ୍ତାଧାରାରେ ବୁଡ଼ି ରହିଛି । ସେ ଆଜି ସମଗ୍ର ମାନବ ସମାଜର, ମାନବ ସମାଜ ତାରି । ସାହିତ୍ୟ କେବଳ ସାମନ୍ତବାଦୀ ସମାଜର ସୌଖୀନ ବିଳାସପ୍ରିୟ ସାମଗ୍ରୀ ହୋଇ ନ ପାରେ । ତେଣୁ ରବୀନ୍ଦ୍ର ଗାଇଛନ୍ତି—

'ହୃଦୟ ଆଜି ମୋର କେମନେ ଗେଲ ଖୁଲି
ଜଗତ ଆସି ସେଥା କରିଛେ କୋଲାକୋଲି ।'

(ପ୍ରଭାତ ସଙ୍ଗୀତ)

ଆଜିର ସାହିତ୍ୟ ଚାହେନା ସ୍ୱପ୍ନପୁରର ତନ୍ଦ୍ରା ମଧ୍ୟରେ ନିଜକୁ ହଜାଇ ଦେବାକୁ । ସବୁଜ କବି ଏବଂ ବର୍ତ୍ତମାନ ଓଡ଼ିଆ ସାହିତ୍ୟର ଯୋଗ୍ୟ ପ୍ରତିନିଧି କାଳିନ୍ଦୀଚରଣ ଗାଇଛନ୍ତି—

'କବିତା ଗଢ଼ିବି ଏକ ବିରାଟ ସମାଜର,
ମଣିଷର ଅଛି ଯହିଁ ବକ୍ଷୁରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧଭାତ,
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ ।
ଦୁଇଖଣ୍ଡ ଲୁଗା କାମ୍ବା ସବୁରି ପାଇଁ ମିଳେ,
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ ।
ବେକାର ରହିବାକୁ ନାହିଁଟି ଅଧିକାର,
ସବୁରି ପାଇଁ କାମ ଯୋଗାଏ ସରକାର ।
କହିବା ପାଇଁ କଥା, ସବୁରି ଦାବୀ ଅଛି,
ମୁଁ ସେହି ସମାଜର କବିତା ବସେ ରଚି ।"

ସମସ୍ୟାବହୁଳ ଜୀବନପଥରେ ସେ ମୌଳିକ ଦାବୀ ପାଇଁ ସାହିତ୍ୟରେ ସଂଗ୍ରାମର ଆହ୍ୱାନ ଦିଏ । ଆଜିର କଳାବିତ୍ ଏତେ ସ୍ୱାର୍ଥପର ହେବାକୁ ଚାହେ ନାହିଁ । ସମଗ୍ର ମାନବସମାଜ ପାଇଁ ସେ ଗାଇବାକୁ ଚାହେଁ । ଦିନ ଥିଲା, ଯେତେବେଳେ କବି କିମ୍ବା କଳାକାର ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ବା ସମ୍ମାନ ପାଇଁ ମୁଷ୍ଟିମେୟ ପାଠକରେ ପରିଣତ ହୋଇଥିଲେ ଏବଂ ସମଗ୍ର ମାନବସମାଜକୁ ଅବହେଳା କରି ସାମନ୍ତବାଦୀ ସମାଜର ଜୟଗାନରେ ଲିପ୍ତ ରହିଥିଲେ । ଆଜି ସାହିତ୍ୟର ରୂପ ବଦଳି ଯାଇଛି । ସାହିତ୍ୟ ସାଧନା ବ୍ୟକ୍ତିଗତ ହୋଇ ପଡ଼ିଛି । ଅନ୍ୟର ଆଶ୍ରିତ ହୋଇ ରହିବା ଫଳରେ ପବିତ୍ର ସାହିତ୍ୟରାଜ୍ୟରେ ଯେପରି ବିପ୍ଳବର ସୂତ୍ରପାତ ହୋଇଛି ।

ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ବିଖ୍ୟାତ କଳାକାର ଡକ୍ଟର ମାୟାଧର ମାନସିଂହ ତାଙ୍କର 'ମୁକ୍ତି ନାହିଁ ମାଗେ' କବିତାରେ କିଏତିକି ଶୁଣାଇଛନ୍ତି—

'ସ୍ୱର୍ଗ ମୁକ୍ତି ନାହିଁ ବାଞ୍ଛେ, ଜୀବନ ମୁଁ ଚାହେଁ
ସୁଖ ଦୁଃଖମୟ ଏହି ଜୀବନ ପ୍ରବାହେ
ଏ ପବିତ୍ର ଧରଣୀର । ମୋର ଜନ୍ମାନ୍ତର
ଜଗତରେ କୋଟି କୋଟି ଦୁଃଖୀ ଦରିଦ୍ରର
ନୟନ ଲୋତକେ ମୋର ଲୋତକ ମିଶାଇ
ହେଉ ଗୋ ପବିତ୍ରତର, କବିତାରେ ଗାଇ
ଦଳିତ ଲାଞ୍ଛିତ ଯେତେ ତାଙ୍କ ଦୁଃଖ ବ୍ୟଥା
ଅବଜ୍ଞାତ ସୁଖ ଦୁଃଖମୟ ପ୍ରାଣ କଥା
ଲେଖନୀ ମୋ ଧନ୍ୟ ହେଉ ।"

କବିଗୁରୁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର କବିଚରିତରେ ତାଙ୍କର ସାହିତ୍ୟର ପ୍ରକୃତ ଆଦର୍ଶ ଏହି ଭାବରେ ଫୁଟି ଉଠିଛି । ସେ ସ୍ପଷ୍ଟ କହିଛନ୍ତି ଯେ, ସାଧାରଣ ଭାବରେ ବାହାରୁ ଦୃଷ୍ଟିପାତ କରିବା ଉଚିତ ନୁହେଁ । କବିଙ୍କର ସୁଖ କିମ୍ବା ଦୁଃଖରେ ତାଙ୍କୁ ପାଇବା କଷ୍ଟ । ତାଙ୍କର ବେଦନା ସକଳ ତାଙ୍କର ହୃଦୟରେ ଖୋଜିହେବ ନାହିଁ । ପ୍ରକୃତରେ କବିଙ୍କୁ ଯେଉଁଠାରେ ସାଧାରଣ ଆଖି ଖୋଜି ବସେ, ସେଠାରେ ସେ ନାହାନ୍ତି । କବିଙ୍କୁ କେବଳ ସାଗରର ମନ୍ଦ୍ର କଳରବ ମଧ୍ୟରେ, ମେଘର ଗର୍ଜ୍ଜନ କିମ୍ବା ଝଞ୍ଜା ମଧ୍ୟରେ ନୀରବ ନିଶୀଥର ଶାନ୍ତ କମନୀୟ ଆକାଶ ଅଥବା ଘନ ଅନ୍ଧାର ବା ଆଲୋକ ମଧ୍ୟରେ ଖୋଜିଲେ ଭୁଲ ହେବ । କବି ଗାଇ ଉଠିଛନ୍ତି—

'......ମାନବେର ଲୋକାଳୟେ
ବାଜିୟା ଉଠେଛି ସୁଖେ ଦୁଃଖେ ଲାଜେ ଭୟେ
ଗରଜି ଛୁଟିୟା ଧାୟୀ ଜୟେ ପରାଜୟେ
ବିପୁଳ ଛନ୍ଦେ ଉଦାର ମନ୍ଦ୍ରେ ମାଢିୟା ।'

ଏ କଥା ସ୍ୱୀକାର କରିବାକୁ ହେବ ଯେ, କବି ବା ସାହିତ୍ୟିକ ବା କଳାକାର ସୃଷ୍ଟି କରେ ସମଗ୍ର ମାନବସମାଜ ପାଇଁ ଏବଂ ଏକ ସର୍ବଯୁଗମୟୀ ଆଧାର ଉପରେ । ସେ ଧର୍ମପ୍ରଚାରକ ନୁହେଁ, ତାହାର ସୃଜନୀ ଶକ୍ତିର ଅପୂର୍ବ କଳାକୁଶଳତା ମଧ୍ୟରେ ଯେଉଁ ସତ୍ୟ, ଶିବ, ସୁନ୍ଦରର ଅପୂର୍ବ ମିନାର ଗଢ଼ିଉଠେ, ତାହା ଯୁଗ ଯୁଗ ଧରି ଜାତି ଏବଂ ସମାଜକୁ ପ୍ରଗତିପଥରେ ଅଗ୍ରସର କରାଉଥାଏ । ସାହିତ୍ୟିକ ମରି ଯାଇପାରେ, ତାହାର ମରଦେହ ମାଟି ଗୋଡ଼ରେ ମିଶିଯାଇ ପାରେ, ଏହି କଠୋର ବାସ୍ତବ ସମାଜର ତେଲ ଲୁଣ ସଂସାରରେ ତାହାର ଜୀବନ ଢଳ ଢଳ ହୋଇ ନଷ୍ଟ ହୋଇଯାଇ ପାରେ; ଅଥବା ଅନ୍ୟପକ୍ଷରେ ସୌଭାଗ୍ୟ ଏବଂ ସମୃଦ୍ଧିର ଶେଷ ସୋପାନରେ ସେ ଆସନ ଗ୍ରହଣ କରିପାରେ; ମାତ୍ର କାଳବକ୍ଷରେ ଇତିହାସ ସେ ସବୁ ବିସ୍ମୃତିରେ ପରିଣତ କରେ । କିନ୍ତୁ ତାର ଅମର ଲେଖନୀରୁ ଯେଉଁ ମଙ୍ଗଳ ନିର୍ଯ୍ୟାସ ଝରିପଡ଼େ, ତାହା ଚିରନ୍ତନ ହୋଇଉଠେ । ତେଣୁ ରବୀନ୍ଦ୍ରନାଥ ତାଙ୍କର ନିଜ ସମ୍ବନ୍ଧରେ ମତ ଦେବାକୁ ଯାଇ କହିଛନ୍ତି—"ମୁଁ ଯାହା ଚିନ୍ତାକରୁଛି, ଯାହା ଅନୁଭବ କରୁଛି, ତାହା ମରିବ ନାହିଁ । ମନ ମନ ମଧ୍ୟରେ କାଳ କାଳ ମଧ୍ୟରେ, ଚିନ୍ତା ଏବଂ ଅନୁଭୂତିର ସ୍ରୋତ ମଧ୍ୟରେ ତାର ପ୍ରବାହ ଅବଶ୍ୟମ୍ଭାବୀ । ମୋର ଘର ଦ୍ୱାର, ଆସବାବ ପତ୍ର, ଶରୀର ମନ, ସୁଖ ଦୁଃଖର ସାମଗ୍ରୀ ସମସ୍ତ କାଳ ବକ୍ଷରେ ଲୋପ ପାଇଯିବ । କେବଳ ମୁଁ ଯାହା ଭାବୁଛି, ଯାହା ବୋଧ କରୁଛି, ତାହା ଚିରକାଳ ପାଇଁ ମନୁଷ୍ୟର ଭାବନା ଏବଂ ବୁଦ୍ଧି ଆଶ୍ରୟ କରି ସଜୀବ ସଂସାରର ମଝିରେ ବଞ୍ଚି ରହିଥିବ ।" ଏଣୁ କବିର ସୃଷ୍ଟି ପ୍ରଜାପତିଙ୍କର ସୃଷ୍ଟିଠାରୁ ଆହୁରି ମହାନ । ସେଠାରେ ନିୟତିକୃତ ନିୟମର କଠୋର ବନ୍ଧନ ନାହିଁ । କବିର ସୃଷ୍ଟି

ଚରମହାନ, ଚରସୁନ୍ଦର ଏବଂ ରମଣୀୟ, ହ୍ଲାଦୈକମୟୀ, ନବରସରୁଚିର ନିର୍ମିତ—
ଏହାହିଁ 'କାବ୍ୟ ପ୍ରକାଶକାର' ମମ୍ମଟ ଭଟ୍ଟ ଘୋଷଣା କରିଛନ୍ତି—

'ନିୟତିକୃତ ନିୟମରହିତାଂ
ହ୍ଲାଦୈକମୟୀ ମନନ୍ୟ ପରତନ୍ତ୍ରାମ୍ ।
ନବରସରୁଚିରାଂ ନିର୍ମିତି—
ମାଦଧତୀ ଭାରତୀ କବେର୍ଜୟତି ॥"

# ପ୍ରାଚୀନ ଓ ଆଧୁନିକ ସାହିତ୍ୟ

ଆଧୁନିକ ସାହିତ୍ୟ ପ୍ରାଚୀନ ସାହିତ୍ୟଠାରୁ ଏଭଳି ବ୍ୟାପକ ହୋଇପଡ଼ିଛି ଯେ ଏହାର ଯେ କୌଣସି ଗୋଟିଏ ବିଭାଗରେ ମଧ୍ୟ ଆଲୋଚନା କରିବା ତେତେ ସହଜ ହୁଏ ନାହିଁ । ପ୍ରାଚୀନ ସାହିତ୍ୟଠାରୁ ଆଧୁନିକ ସାହିତ୍ୟର ପାର୍ଥକ୍ୟ କେବଳ ରୂପଗତ ନୁହେଁ, ରସଗତ ମଧ୍ୟ । ତେଣୁ ଆଜି ଆଧୁନିକ ସାହିତ୍ୟରେ ପ୍ରେମ କବିତାର ସ୍ଥାନ ଆଲୋଚନା ପ୍ରସଙ୍ଗରେ ଆମକୁ ସାହିତ୍ୟର ଏକ ଧାରାବାହିକ ପୁଙ୍ଖାନୁପୁଙ୍ଖ କ୍ରମବିକାଶ ଆଲୋଚନା କରିବାକୁ ପଡ଼ିବ । ସୃଷ୍ଟିର ଆଦିକାଳରୁ ଆଜିଯାଏ ସାହିତ୍ୟକୁ ଯଦି ପର୍ଯ୍ୟାଲୋଚନା କରାଯାଏ, ତେବେ ତାହା କେବଳ ସମରବର୍ଣ୍ଣନା ଅଥବା ପ୍ରଣୟର ଅଫୁରନ୍ତ ବିଳାସଭଳି ସୃଷ୍ଟିର ଦୁଇଟି ଚିରନ୍ତନ ସତ୍ୟ ରୂପରେ ପ୍ରତିଷ୍ଠିତ । ତେବେ ଅଧିକାଂଶ ସାହିତ୍ୟ ସମର ସାହିତ୍ୟ ନା ପ୍ରଣୟ ସାହିତ୍ୟ, ତାହା ଏକ ବିବାଦମୂଳକ ପ୍ରଶ୍ନ । କାରଣ ପୃଥିବୀର ସର୍ବପ୍ରାଚୀନ ସଂସ୍କୃତ ସାହିତ୍ୟର ଶ୍ରେଷ୍ଠ ମହାକାବ୍ୟ ରାମାୟଣ ଓ ମହାଭାରତର ଉପଜୀବ୍ୟ ବିଷୟବସ୍ତୁ ସମର ହେଲେହେଁ ଏଥିରେ ପ୍ରଚ୍ଛନ୍ନ ଏବଂ ପ୍ରଧାନ ଭାବରେ ଶତଶତ ପ୍ରଣୟ କାହାଣୀ ଯୁଗ ଯୁଗ ଧରି ଭାରତର ସାହିତ୍ୟ ଓ ସମାଜକୁ ବିହ୍ୱଳିତ କରିଅଛି । ସେଥିପାଇଁ ପରଯୁଗରେ କାଳିଦାସ, ଭବଭୂତି, ଶ୍ରୀହର୍ଷ, ଭାରବି ପ୍ରଭୃତି ପ୍ରସିଦ୍ଧ ସଂସ୍କୃତ କାବ୍ୟକାରଗଣ ତାଙ୍କର ଅମର ପ୍ରଣୟରସାତ୍ମକ କାବ୍ୟର ବିଷୟବସ୍ତୁ ଏହି ରାମାୟଣ ଓ ମହାଭାରତରୁ ଗ୍ରହଣ କରିଥିଲେ । ଅନ୍ୟପକ୍ଷରେ ପୃଥିବୀର ଅନ୍ୟ ଦୁଇଟି ପ୍ରସିଦ୍ଧ ଗ୍ରୀକ୍ ମହାକାବ୍ୟ ଇଲିୟାଡ୍ ଓ ଓଡ଼େସି (Iliad & Odyssey) ମଧ୍ୟ ପ୍ରଣୟ ଓ ସମରକୁ କେନ୍ଦ୍ର କରି ଲିଖିତ ହୋଇଛି ।

ମଣିଷ ସମାଜର ଜୀବନ-ଦର୍ଶନର ବିକାଶକୁ ଆଲୋଚନା କଲେ ଜଣାଯାଏ ମଧ୍ୟଯୁଗରେ ଭକ୍ତି ଓ ପ୍ରେମ ଥିଲା ପ୍ରଧାନ ବିଷୟ । କାମାଭିଳାଷ ଓ ମୋକ୍ଷାଭିଳାଷ ଥିଲା ଜୀବନର ଚିରନ୍ତନ ଲକ୍ଷ୍ୟ । ଈଶ୍ୱର ଭକ୍ତି ଓ ନାରୀପୂଜା ଉପରେ ଶତ ଶତ କାବ୍ୟ କବିତା ସେତେବେଳେ ସମଗ୍ର ସାହିତ୍ୟ ସମାଜକୁ ସମୃଦ୍ଧ କରିଅଛି । ଜୟଦେବଙ୍କ ଗୀତ-ଗୋବିନ୍ଦ, ବନ୍ଦ୍ୟୋପାଧ୍ୟାୟ ଚଣ୍ଡୀଦାସଙ୍କ ପଦାବଳୀ ତୁଳସୀ ଦାସଙ୍କ ଭଜନ ପ୍ରଭୃତି ମଧ୍ୟଯୁଗ ସାହିତ୍ୟର ପ୍ରତିଧ୍ୱନି ମାତ୍ର । ସେକ୍ସପିଅରଙ୍କ ନାଟକଠାରୁ ଆରମ୍ଭ କରି ପରଯୁଗରେ ଅତି ଆଧୁନିକ ଯୁଗରେ ଏଚ. ଜି ଓ୍ୱେଲସ୍, ଡି. ଏଚ. ଲରେନ୍ସ, ମୋପାସାଁ ପ୍ରଭୃତିଙ୍କର ନଗ୍ନ ପ୍ରଣୟକାହାଣୀର ସାହିତ୍ୟକ ମୂଲ୍ୟ ମଧ୍ୟ ଆଲୋଚନା ପ୍ରସଙ୍ଗରେ ଆମର ବିଚାର୍ଯ୍ୟ । ଓଡ଼ିଆ ସାହିତ୍ୟରେ ବିଶାଳ ସାରଳା ମହାଭାରତର ସମର ବର୍ଣ୍ଣନା

ମଧ୍ୟରେ ନଗ୍ନ ପ୍ରଣୟଚିତ୍ରର ଯେଉଁ ମଧୁର ଇଙ୍ଗିତ ଆମେ ପାଉ, ତାହାର ଅତି ସମୃଦ୍ଧ ବିକାଶ ଦେଖୁ କାବ୍ୟଯୁଗର ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ସାମନ୍ତସିଂହାର, କବିସୂର୍ଯ୍ୟ ପ୍ରଭୃତିଙ୍କର କୃତିରେ । ଏପରିକି ଅତି ଆଧୁନିକ ଓଡ଼ିଆ ସାହିତ୍ୟକୁ ଦୃଷ୍ଟିପାତ କଲେ ରାଧାନାଥଙ୍କଠାରୁ ଆରମ୍ଭକରି ମାୟାଧର ମାନସିଂହଙ୍କ ଯାଏଁ ପ୍ରତ୍ୟେକ କବି ଓ ଲେଖକ କାବ୍ୟ, କବିତା, ଗଳ୍ପ ଉପନ୍ୟାସ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଏହି ପ୍ରଣୟ କାହାଣୀ ଗାଇଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଜି ତେଣୁ ମନଭିତରେ ସ୍ୱତଃ ଏଇ ପ୍ରଶ୍ନ ଉଠେ—ଯୁଗଯୁଗ ଧରି ସାହିତ୍ୟରେ ପ୍ରେମର ଏଭଳି ଏକଚ୍ଛତ୍ରିଆ ଅଧିକାରର କାରଣ କଅଣ ? ତାର କାରଣ ସ୍ୱରୂପ ହୁଏତ ଏଇ କଥାର ଦିଆଯାଇପାରେ ଯେ ସୃଷ୍ଟିର ଚିରନ୍ତନ ସତ୍ୟକୁ ସାହିତ୍ୟ ରୂପାୟିତ କରିବା ଛଡ଼ା ଆଉ ଉପାୟ କଅଣ ଅଛି । ଜୀବନରେ ପ୍ରେମର କିପରି ଅପରିହାର୍ଯ୍ୟ ପ୍ରଭାବ ରହିଛି, ସେହି ପ୍ରସଙ୍ଗରେ ବହୁ ମତ ଉଦ୍ଧାର କରାଯାଇ ପାରେ ! Love is the essence of life. 'ପ୍ରେମ ହେଉଛି ଜୀବନର ନିର୍ଯ୍ୟାସ ମାତ୍ର' ସାର୍ ୱିଲ୍ୟମ୍ ଟେମ୍ପଲ୍ କହିଛନ୍ତି—The greatest pleasure of life is love. 'ଜୀବନର ଶ୍ରେଷ୍ଠ ଆନନ୍ଦ ହେଉଛି ପ୍ରେମ' । ଭିକ୍ଟର ହିଉଗୋଙ୍କ ମତରେ 'ଜୀବନ ଯଦି ଗୋଟିଏ ପୁଷ୍ପ ହୁଏ, ତେବେ ପ୍ରେମ ହେଉଛି ସେଥିରେ ମଧୁ-ସ୍ୱରୂପ' । Life is a flower of which love is the honey. ଏହି ହେତୁରୁ ଅପୌରୁଷେୟ ବେଦରୁ ଆରମ୍ଭ କରି ଆଜିଯାଏ ସାହିତ୍ୟ ସହିତ ପ୍ରେମ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଋକ୍‌ବେଦରେ ମଧ୍ୟ ଯମ-ଯମୀ, ପୁରୁରବା-ଉର୍ବଶୀ ସମ୍ବାଦ ପ୍ରଭୃତି ଏହି ପ୍ରେମର ସ୍ପଷ୍ଟ ସଙ୍କେତ ।

ଅବଶ୍ୟ ପ୍ରେମକୁ ଏକ ବ୍ୟାପକ ଆଦର୍ଶ ଭାବରେ ଗ୍ରହଣ କରାଯାଇଛି ବହୁଦିନ ଧରି । ମାତ୍ର କାବ୍ୟ-ଯୁଗରେ ସାହିତ୍ୟର ଆଦର୍ଶ ମଧ୍ୟ ହୋଇପଡ଼ିଲା "ଶୃଙ୍ଗାରାଶ୍ରିତେତ୍ କବି ।" ଆଧୁନିକ ଯୁଗ ସାହିତ୍ୟ ଯେତେ ଝଡ଼ଝଞ୍ଜା ମଧ୍ୟ ଦେଇ ଗତିକରି ଆସିଛି, ଆଜି ସାହିତ୍ୟରେ ପ୍ରେମର ସେହି ପରିଣ କିଭଳି ହେବା ଉଚିତ ତାହାହିଁ ବିଚାର୍ଯ୍ୟ । ଏକଥା ସତ୍ୟ ଯେ, ଆଜି ପ୍ରସିଦ୍ଧ ସ୍ୱପ୍ନପ୍ରବଣ କବି ଓମାର ଖୈୟାମଙ୍କ ସୁରା, ସାକୀ ଓ ସଙ୍ଗୀତର ସ୍ୱପ୍ନ (wine, woman and song) ବାସ୍ତବ ଜୀବନ ସଂଗ୍ରାମରେ ଆଦୌ ସତ୍ୟ ନୁହେଁ । ଏହି ଦୃଷ୍ଟିକୋଣରୁ ଆଧୁନିକ ସାହିତ୍ୟକୁ ଅନୁଧ୍ୟାନ କରିବାର ଅଛି ।

ଭଞ୍ଜଯୁଗୀୟ ଶତଶତ କାବ୍ୟକବିତାରେ ପ୍ରଣୟର ଯେଉଁ ଅଫୁରନ୍ତ ବିଳାସ ଆମେ ଦେଖୁ, କୋଣାର୍କ, ପୁରୀ, ଭୁବନେଶ୍ୱର, ଏଲୋରା, ଅଜନ୍ତା ପ୍ରଭୃତିର ମନ୍ଦିର ଗାତ୍ରରେ କଳା ଓ କବିତାର ସେଉଁ ମଧୁର ସମନ୍ୱୟ ଦେଖୁ ସେଥିରୁ ଏତିକି ପ୍ରତୀତ ହୁଏ ଯେ, ଏମାନେ ଏଇ ମାଟିଗୋଡ଼ ସଂସାରରେ ଅବସ୍ଥାନ କରି ମଧ୍ୟ ସ୍ୱର୍ଗୀୟ କଳ୍ପନାରେ ସ୍ୱପ୍ନ-ପ୍ରବଣ ହୋଇଛନ୍ତି ମାତ୍ର । ମର୍ତ୍ତ୍ୟରେ ରହି ଏମାନେ ଅମର୍ତ୍ତ୍ୟର ସୁନ୍ଦର କଳ୍ପନା କରିଛନ୍ତି । ମହାକାବ୍ୟରୁ ଆରମ୍ଭ କରି କାବ୍ୟ-ଯୁଗ ଯାଏଁ ଯେଉଁଭଳି ଦେବତା ଓ ରାଜରାଣୀଙ୍କର ପ୍ରଣୟକାହାଣୀ ଗାଇବାରେ ବ୍ୟସ୍ତ ଅଛନ୍ତି, ସେହିଭଳି ଏହି ମନ୍ଦିରଗାତ୍ରର କଳା ବିକାଶ

ମଧ୍ୟରେ ଅଣଶାଶ ଦେବତାର ସ୍ୱପ୍ନହିଁ ଦେଖିଛନ୍ତି । ମଣିଷକୁ ମଣିଷ ଭାବରେ ଦେଖି ଚିହ୍ନିବାର ପ୍ରଚେଷ୍ଟା ଆଦୌ ହୋଇ ନ ଥିଲା । ଜୀବନ-ଯୁଦ୍ଧର ସାମାନ୍ୟ ସଙ୍କେତ ମଧ୍ୟ ଆମେ ଏହିସବୁ ସାହିତ୍ୟରୁ ପାଇନାହୁଁ ।

ଅବଶ୍ୟ ଏହାର କାରଣ ସ୍ପଷ୍ଟ । ଏଥିପାଇଁ ସର୍ବତୋଭାବେ ଦାୟୀ ଆମର ପ୍ରାଚୀନ ଓ ଆଧୁନିକ ଜୀବନ ଦର୍ଶନ । ଯୁଗଭେଦରେ ଜୀବନର ଦୃଷ୍ଟିଭଙ୍ଗୀ ପ୍ରାଚୀନଠାରୁ ଆମର ବଦଳି ଯାଇଛି । ତେଣୁ ଆଜିର ସାହିତ୍ୟ କାଲିର ସାହିତ୍ୟ ଅପେକ୍ଷା ଯେ ଅଧିକ ଜୀବନ୍ତ ଏବଂ ସହାନୁଭୂତିସଂପନ୍ନ, ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ ପ୍ରାଚୀନ ଓଡ଼ିଆ କାବ୍ୟଯୁଗ ସାହିତ୍ୟକୁ ଆଲୋଚନା କଲେ ଜଣାଯାଏ ଯେ ସମସାମୟିକ ସମାଜର ସମସ୍ୟା ଓ ଜୀବନ-ସଂଗ୍ରାମର ଚିତ୍ର ଆମେ ସାହିତ୍ୟରେ ପାଉ ନାହିଁ । ସାହିତ୍ୟ ମଧ୍ୟରେ ଭାସ୍କରଙ୍କର କୋଣାର୍କ ଯେପରି ଗଢ଼ି ଉଠିଥିଲା, ଉପମା, ଅନୁପ୍ରାସ, ଯମକ ପ୍ରଭୃତି ବିଭିନ୍ନ ଅଳଙ୍କାରରେ ସାହିତ୍ୟସୁନ୍ଦରୀ ଯେଉଁଭଳି ଅଙ୍ଗାଭରଣା ହୋଇଥିଲେ, ମଣିଷ ଜୀବନର ସୁଖ, ଦୁଃଖ, ଅଭାବ, ଅନୁଭୂତି, ଜାତୀୟ ଜୀବନର ଚିତ୍ର ଦେବାରେ ସାହିତ୍ୟ ଆଦୌ ଧ୍ୟାନ ଦେଇ ନ ଥିଲା । ଫଳରେ ସାହିତ୍ୟରେ କଳ୍ପଲୋକର ମାନସୀର ପୂଜା ଏତେ ଦେଖିବାକୁ ପାଉଁ । ପ୍ରକାଶ ପାଇଥିବା 'ଭଞ୍ଜ ବଂଶାନୁଚରିତ' ପାଠ କଲେ ଜଣାଯାଏ, ଉପେନ୍ଦ୍ରଙ୍କର ପାରିବାରିକ, ସାଂସାରିକ ଓ ବ୍ୟକ୍ତିଗତ ଜୀବନ କିଭଳି ସଂଘର୍ଷବହୁଳ ଥିଲା । ରାଜପରିବାର ମଧ୍ୟରେ ଯେଉଁ କୁତ୍ସିତ ଅମାନୁଷିକ ଅତ୍ୟାଚାର ଏବଂ ରକ୍ତପାତ ଚାଲିଥିଲା ସେ ସଂଘର୍ଷ ମଧ୍ୟରୁ ବାହାରିଆସି ଅସି ତ୍ୟାଗକରି ଲେଖନୀ ଧରିବା ଏବଂ ରାଜପୁତ୍ରରୁ ରାଜକବିରେ ପରିଣତ ହେବାରେ ଯେଉଁ ସାଧନା ଏବଂ ଉତ୍ଥାନ-ପତନ ଜୀବନ ସଂଗ୍ରାମର ସୂଚନା ମିଳେ, ଭଞ୍ଜଙ୍କ ଲେଖା ପଢ଼ିଲେ ସେ ସବୁର ଆଭାସ ଧରିହୁଏ ନାହିଁ । ସବୁକଥାରେ ଆମେ ଯଦି ଯୁଗର ରୁଚି ଅଥବା କଳ୍ପନାର ଯୁଗ ବୋଲି କହି ଏଡ଼ାଇ ଦେଉ, ତାହାହେଲେ ଉପଯୁକ୍ତ ବିଚାର ହେଲବୋଲି କହି ହେବ ନାହିଁ । ବାସ୍ତବରେ ସେମାନେ ଜୀବନ-ସଂଗ୍ରାମ ପ୍ରତି ଅତିଭାବରେ ବିମୁଖ ଥିଲେ । ଏକଥା ମଧ୍ୟ କବିସୂର୍ଯ୍ୟ, ଗୋପାଳକୃଷ୍ଣଙ୍କ ପ୍ରତି ପ୍ରଯୁଜ୍ୟ; ମାତ୍ର ସେହି ଯୁଗରେ ଜନ୍ମ ହୋଇ ଦୀନକୃଷ୍ଣ ଯଦି ସାହିତ୍ୟରେ ବଳିଷ୍ଠ ସ୍ୱାଧୀନ ମତ ବ୍ୟକ୍ତ କରି ନିର୍ବାସିତ ହୋଇପାରନ୍ତି ଏବଂ ରାଜଦରବାର ଓ ଜନସାଧାରଣଙ୍କ ଦ୍ୱାରା ଆଜନ୍ମରୋଗୀ ଭାବରେ ଅବହେଳିତ ହୋଇଥାଆନ୍ତି ବଳଦେବ ଯଦି ନିଜର ଦୁଃଖଦୁର୍ଦ୍ଦଶା ସାହିତ୍ୟରେ ଲିପିବଦ୍ଧ କରିପାରନ୍ତି, ସମସାମୟିକ ରାଜନୀତିକ ଘଟଣାବଳୀକୁ ସାହିତ୍ୟ ମଧ୍ୟରେ ଅମର କରିପାରନ୍ତି ; ଅଥବା ମହାତ୍ମା ଭୀମ ଯଦି ତାଙ୍କ କବିତାରେ ଜୀବନର ମହତ୍ସତ୍ୟ ପ୍ରଚାର କରିବା ସଙ୍ଗେ ସଙ୍ଗେ ଜୀବନର ସୁଖ ଦୁଃଖ, ଅଭାବ ଅନୁଭୂତି, ଲାଞ୍ଛନାମୟ ଜୀବନର ନିଖୁଣ ଚିତ୍ର ପାଠକ ଆଗରେ ପରିବେଷଣ କରିପାରନ୍ତି, ତେବେ ଯୁଗଧର୍ମ ଅନୁଯାରେ ଅତିରିକ୍ତ କଳ୍ପନାବିଳାସ ମାଧ୍ୟମରେ ବି ପ୍ରତ୍ୟେକର ନିପୁଣ ଚିତ୍ର ମଧ୍ୟରେ ଜୀବନ-ସଂଗ୍ରାମର ସ୍ପଷ୍ଟ ଛବି ପ୍ରତିଫଳିତ ହୋଇଥାଆନ୍ତା ।

ଏ ସବୁ ମଧ୍ୟରେ ଏତିକି ମନେହୁଏ ଯେ ଆମ ସମାଜର ଆଭିମୁଖ୍ୟ ବଦଳି ଯାଇଛି । ଆଜିର ସରକାର ଲୋକମଙ୍ଗଳ ସରକାର । ଆଜିର ସମାଜ ନିଜର ସୁଖ ଦୁଃଖ, ଅଭାବ ଅସୁବିଧା ପାଇଁ ଦାୟୀକରେ ସରକାରଙ୍କୁ । ତାର ନିରାକରଣ ପାଇଁ ସେ ଦାବୀ କରିଥାଏ; ମାତ୍ର ପୂର୍ବର ସମାଜରେ ମଣିଷ ଭାଗ୍ୟ ଉପରେ ନିର୍ଭର କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ପୂର୍ବଜନ୍ମର କର୍ମଫଳ ହିଁ ତାକୁ ବର୍ତ୍ତମାନର ଦୁର୍ଗତି ଭିତରେ ସାନ୍ତ୍ୱନା ଆଣି ଦେଉଥିଲା । ତେଣୁ ଜୀବନ-ଯୁଦ୍ଧର ସ୍ଥାନ କଳା ବା ସାହିତ୍ୟରେ ମିଳେ ନାହିଁ କେବଳ ରତିବିଳାସ ହିଁ ସାହିତ୍ୟକୁ ଏତେଦିନ ଧରି ମୁହ୍ୟମାନ କରି ରଖିଥିଲା । ପୃଥିବୀରେ ଲକ୍ଷ୍ୟ ଲକ୍ଷ୍ୟ ବିୟୋଗାତ୍ମକ ଘଟଣା ଘଟିଥିଲେ ହେଁ ସଂସ୍କୃତ ସାହିତ୍ୟରେ ବିୟୋଗାତ୍ମକ ନାଟକ ସୁଲଭ ନୁହେଁ । ଏହି ପ୍ରସଙ୍ଗରେ ଓଡ଼ିଆ ସାହିତ୍ୟ ପ୍ରତି ଆଖି ପକାଇଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଆମେ ଆଜି କଥା କଥାକେ ଅତୀତ ଉତ୍କଳର ଗୌରବ କଥା ସ୍ମରଣ କରି ପାଗଳ ହୋଇଥାଉଁ । ଉତ୍କଳର ବିଶାଳ ସାମ୍ରାଜ୍ୟ, ପ୍ରାଚୀନ ଉତ୍କଳର ନୌବାଣିଜ୍ୟ, ଶିଳ୍ପ, ସ୍ଥାପତ୍ୟ, ନାନା ଯୁଦ୍ଧ ଓ ଅଭିଯାନର କାହାଣୀମାନ ଶୁଣାଇ ଗର୍ବ ଅନୁଭବ କରୁ । ମାତ୍ର ଦୁଃଖର କଥା, ଏ ସବୁର ସୂଚନା ମଧ୍ୟ ଓଡ଼ିଆ ସାହିତ୍ୟରେ ମିଳେ ନାହିଁ କହିଲେ ଚଳେ । ଆଜିର ଓଡ଼ିଆ ସମାଜ ଓ ଦେଶକୁ ଆଲୋଚନା କଲେ ବିଶ୍ୱାସ କରି ହୁଏ ନାହିଁ ଯେ ଏ ଦେଶ 'କଳିଙ୍ଗା ସାହସିକାଃ' ନାମରେ ପୁରାଣରେ ଆଖ୍ୟାତ ହୋଇଥିଲା ; ପୃଥିବୀର ବିଭିନ୍ନାଞ୍ଚଳରେ ବାଣିଜ୍ୟ ବ୍ୟବସାୟ କରି ସାଧବପୁଏ ଏ ଦେଶକୁ ସମୃଦ୍ଧ କରିଥିଲେ: ଏ ଦେଶର ଶିଳ୍ପୀ କୋଣାର୍କ, ଭୁବନେଶ୍ୱର, ପୁରୀ ପ୍ରଭୃତିର ଶିଳ୍ପ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ କୃତିତ୍ୱ ହାସଲ କରିଥିଲେ । ଏସବୁ ମଧ୍ୟରେ ସାହିତ୍ୟର ଜୀବନ ପ୍ରତି ବିମୁଖତା ସ୍ପଷ୍ଟ ପ୍ରତିଭାତ ହୁଏ ।

ଏହି ଭାବରେ ଆଲୋଚନା କଲେ ଜଣାଯାଏ, ପ୍ରାଚୀନ ସମାଜର ଆଦର୍ଶ ନିବୃତ୍ତି ଓ ଶାନ୍ତି । ତେଣୁ ସାହିତ୍ୟରେ କଳ୍ପନାପ୍ରବଣତା ମଧ୍ୟରେ ପ୍ରଣୟ ସ୍ରୋତର ଯେଉଁଭଳି ନିରଳସ ପ୍ରବାହ ହୋଇଛି, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଅନ୍ୟପକ୍ଷରେ ଆଜିର ସମାଜର ଆଦର୍ଶ ହେଉଛି ପ୍ରବୃତ୍ତି ଓ ସଂଗ୍ରାମ ମନୋଭାବ । ଅତଏବ ସେ ଯୁଗର ପ୍ରଣୟ-ସମ୍ଭୋଗ-ବିଭୋର ସ୍ୱପ୍ନପ୍ରୟାସୀ ପଳାୟନପନ୍ଥୀ ସମାଜର ଆଦର୍ଶ ଯେ ଥିଆଲି ସାହିତ୍ୟ ଅଥବା 'କଳା ପାଇଁ କଳା' (art for art sake) ତାହା ପ୍ରାଚୀନ ସାହିତ୍ୟ ଆଲୋଚନାରୁ ଜଣାଯାଏ । ସେ ଯୁଗର କବିଙ୍କୁ ତେଣୁ ଏ ଯୁଗର ପ୍ରଗତିଶୀଳ କବି ଆହ୍ୱାନ କରେ ।

"ଆରେ ଆରେ ପଳାୟନପନ୍ଥି !
ପଳାଇବୁ ଆଜି କାହିଁ ଛିନ୍ନକରି ଧରଣୀର ଗ୍ରନ୍ଥି,
ଲୁଚିବୁ ବା କାହିଁ,
ମୃତ୍ତିକାର ଏତେ ଦାବୀ ପାରିବୁ କି ଆଜି ତୁ ତୁଟାଇ ?
କାହିଁ ଭାବୁ ନେବୁ ରେ ଆଶ୍ରୟ,
ତୋର ଯେହ୍ନ କୁଞ୍ଜବନ ଦେଇ କି ଯେ ପାରିବ ଅଭୟ ?

ସାହିତ୍ୟର ଏଭଳି ପ୍ରକୃତି ଯେ କେବଳ ଓଡ଼ିଆ ସାହିତ୍ୟ ପାଇଁ ପ୍ରଯୁଜ୍ୟ ତାହା ନୁହେଁ, ଏହା ସମଗ୍ର ବିଶ୍ୱସାହିତ୍ୟ ପକ୍ଷରେ ମଧ୍ୟ ସତ୍ୟ । ପାଶ୍ଚାତ୍ୟ ଦେଶରେ ଶିଳ୍ପ-ବିପ୍ଳବ (Industrial revolution) ଫଳରେ ପୁରୁଣା ସମାଜ ବଦଳିରେ ନୂଆ ସମାଜ ଗଢ଼ିଉଠିଲା । ନୂଆ ଆଶା-ଉଦ୍ଦୀପନା ନେଇ ପାଶ୍ଚାତ୍ୟ ସଭ୍ୟତା ଓ ସାହିତ୍ୟର ଗତି ବଦଳିଯିବା ସ୍ୱାଭାବିକ । ତା'ପରେ ୧୭୮୯ରେ ଫରାସୀ ବିପ୍ଳବ, ୧୮୮୯ରେ କାର୍ଲମାର୍କସଙ୍କର 'Das Capital' ଏବଂ ୧୯୧୭ ମସିହାର ଅକ୍ଟୋବର ବିପ୍ଳବକୁ କେନ୍ଦ୍ର କରି ସେ ଦେଶର ସାହିତ୍ୟ ଓ ସମାଜରେ ଅଭୂତ ପରିବର୍ତ୍ତନର ସୂତ୍ରପାତ ହେଲା । ବସ୍ତୁତାନ୍ତ୍ରିକ ବିଜ୍ଞାନୀ ସମାଜ ମଧ୍ୟରେ ଆମର ଦୃଷ୍ଟିକୋଣ ଅଧିକ ଅର୍ଥନୀତି ଓ ଜୀବନ-ସଂଗ୍ରାମକୁ କେନ୍ଦ୍ର କରି ଗଢ଼ି ଉଠିଲା । ତେଣୁ ସାହିତ୍ୟର ରୂପ ମଧ୍ୟ ବଦଳିଯିବା ସ୍ୱାଭାବିକ । ସେହିଭାବରେ ଆଲୋଚନା କଲେ ଜଣାଯାଏ ଯେ ଇଂରେଜମାନେ ଏ ଦେଶକୁ ଆସିଲାପରେ ରାଧାନାଥ ଯୁଗ ଓଡ଼ିଆ ସାହିତ୍ୟରେ ଯେଉଁ ନୂତନତା ଦେଖାଦେଲା ତାହା ଏକ ସନ୍ଧିକ୍ଷଣରେ ପହଞ୍ଚି ଥିଲା । ମଧ୍ୟଯୁଗର କଳ୍ପନା-ବିଳାସ ମଧ୍ୟରେ ଗୀତ ପ୍ରଣୟ କାହାଣୀ ସହିତ ବାସ୍ତବ ଯୁଗ-ସମସ୍ୟାର ପ୍ରଭାବ ମଧ୍ୟ ସାହିତ୍ୟ ମଧ୍ୟରେ ରୂପାୟିତ ହୋଇଥିଲା । ଯାହାହେଉ ଓଡ଼ିଆ ସାହିତ୍ୟରେ ବିପୁଳ ଭାବରେ ପରିବର୍ତ୍ତନ ଆସିଲା ୧୯୧୮ରେ ପ୍ରଥମ ମହାଯୁଦ୍ଧ ପରେ । ମହାଯୁଦ୍ଧରେ ହତାଶ, ରକ୍ତପାତ, ଧ୍ୱଂସର ଜ୍ୱାଳା, ହାହାକାର ମଧ୍ୟରେ ନୀରଳସ ପ୍ରଗତି ଚୂରମାର ହୋଇଗଲା । ମଣିଷର ଭାବନା ସବୁ ଓଲଟପାଲଟ ହୋଇଗଲା । ମଣିଷ ସମାଜ ଓ ସଭ୍ୟତାର ସ୍ଥାୟିତ୍ୱ ନେଇ ଏ ଯୁଗର ମାରଣାସ୍ତ୍ର ନିକଟରେ ସାହିତ୍ୟିକର ମନ ଫିକା ହୋଇ ଉଠିଲା । ତେଣୁ ଏ ଯୁଗର ଏକ ଶ୍ରେଷ୍ଠ ଚିନ୍ତାଶୀଳ କବି ଟି. ଏସ୍. ଇଲିଏଟ୍ ତାଙ୍କର ପ୍ରସିଦ୍ଧ କବିତା Waste Landରେ ଏହି ହତାଶର ବାଣୀ ଶୁଣାଇଛନ୍ତି—

"I am tired with my own life and the
lives of these after me,
I am dying in my own death and the
death of these after me"

ମାତ୍ର ଏହାକୁ ପ୍ରଗତିର ଲକ୍ଷଣ କୁହାଯାଇ ପାରିବ ନାହିଁ । କବି ଆମକୁ ହତାଶର ବାଣୀ ଶୁଣାଇ ପଛକୁ ଟାଣିବାକୁ ଚେଷ୍ଟା କରିଛନ୍ତି ; ମାତ୍ର ଜଗତର ଏହି ଦୁଃଖ-ଦୁର୍ଦ୍ଦିନରେ ଲେଖକ ଦ୍ରଷ୍ଟା ଆସନରେ ବସି ପ୍ରକୃତ ସାହିତ୍ୟ ସୃଷ୍ଟି କରି ଜଗତକୁ ନୂତନ ଆଲୋକ ପ୍ରଦାନ କରିପାରେ । ସବୁଜ କବି ଅନ୍ନଦାଙ୍କ ଭାଷାରେ ସେହି ହତାଶା ଓ ଭଗ୍ନସ୍ତୂପ ଉପରେ ଆଶାର ଚେତାବନୀ ଆମେ ଶୁଣିବାକୁ ପାଉ—

"ଏହି ଭଗ୍ନ ଅବଶେଷ ଉପରେ
ମୁଁ ରଚିବି ନନ୍ଦନ,

ମର୍ତ୍ତ୍ୟରେ ଅମରାବତୀ,
ନରଦେହେ ଅମୃତ ସ୍ପନ୍ଦନ ।"

ସେହିଭଳି ମଧ୍ୟ ଆମେ ଦେଖୁ, ଇଂରେଜୀ ସାହିତ୍ୟରେ ଗତ ଯୁଦ୍ଧ ପରେ A. S. M. Hutchinson ତାଙ୍କର "If Winter Comes" ଉପନ୍ୟାସରେ ଜାତୀୟ ଦୁର୍ଦ୍ଦଶାର ଚିତ୍ର ଦେବା ସଙ୍ଗେ ସଙ୍ଗେ ଆଶାର ବାଣୀ ମଧ୍ୟ ଶୁଣାଇଛନ୍ତି— 'If winter comes, can spring be far behind.' ଶୀତଋତୁ ଭଳି ପୃଥିବୀର ଏ ଦୁର୍ଦ୍ଦିନ ଅପସରି ଅନାଗତ ନିର୍ମଳ ବସନ୍ତର ଆଗମନୀ ଯେ ସୂଚିତ ହେଉଛି, ଏଥିରେ ସନ୍ଦେହ ନାହିଁ ।

ଏଭଳି ସଂଘର୍ଷମୟ ଯୁଗରେ ଜୀବନର ସମସ୍ୟା-ବହୁଳ ଚିତ୍ର ସାହିତ୍ୟରେ ଯେଭଳି ଅଭିବ୍ୟକ୍ତ ହୁଏ, ସେଠାରେ ଖିଆଲ କଳ୍ପନା ପ୍ରସ୍ତାସ ବା ପ୍ରଣୟ-ବିଳାସର ସ୍ୱପ୍ନ ଅସମ୍ଭବ । ଏହାର ଅର୍ଥ ନୁହେଁ ଯେ ସାହିତ୍ୟରୁ ନାୟକନାୟିକାର ପ୍ରଣୟ ଚିତ୍ର ଲୋପ ପାଇଯିବ; ବରଂ ଦେଖିଲେ ଆଜି ଉପନ୍ୟାସ, ଚଳଚ୍ଚିତ୍ର, କଳା ପ୍ରଭୃତି ପ୍ରତ୍ୟେକ ବିଭାଗରେ ପ୍ରଣୟ ଚିତ୍ର ଭରପୂର ହୋଇ ଉଠୁଛି । ମାତ୍ର ଦୃଷ୍ଟିକୋଣରେ ବହୁ ପରିବର୍ତ୍ତନ ସୂଚିତ ହୋଇଛି । ଆଜିର ସାହିତ୍ୟ ସ୍ପଷ୍ଟଭାବରେ ନିର୍ଯାତିତ ସମାଜ ପାଇଁ ରୂପାୟିତ ହୁଏ ଏବଂ ମଣିଷ ସମାଜକୁ ନେଇ ତାର ଚିତ୍ରାଙ୍କନ ତେଣୁ ଜୀବନ-ସଂଗ୍ରାମ ପ୍ରତି ବିମୁଖ ହୋଇ କାଳ୍ପନିକର ଜୀବନ-ସମ୍ଭୋଗ ପାଇଁ ଆଉ ସାହିତ୍ୟରେ ସ୍ଥାନ କାହିଁ ? ସେଥିପାଇଁ ଏ ଯୁଗର ଅନ୍ୟତମ ପ୍ରସିଦ୍ଧ କବି ଓ୍ୱାଲ୍ଟ୍ ହ୍ୱିଟ୍ ମ୍ୟାନ୍ କହିଛନ୍ତି ନିଜ କବିତା ବିଷୟରେ—

"Comrade, this is no book,
Who touches this, touches a man."

"ବନ୍ଧୁଗଣ ! ଏହା କେବଳ ଜଡ଼ ପୃଷ୍ଠା ସମାହାରର ଏକ ପୁସ୍ତକ ନୁହେଁ; ଯେ ଏହାକୁ ଛୁଏଁ, ସେ ଜଣେ ମଣିଷଙ୍କୁ ଛୁଏଁ ।" ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଏ କଥା ଭୁଲିଯିବା ସମ୍ଭବ ନୁହେଁ ।

# ଓଡ଼ିଆ ଗଣସାହିତ୍ୟ

ଏ ଯୁଗ ଗଣରେ ଯୁଗ । ପୂର୍ବ ଯୁଗର ସାମନ୍ତବାଦୀ ଓ ପୁଞ୍ଜିବାଦୀ ସଭ୍ୟତା ଲୋପ ହେବାକୁ ଯାଉଛି । ତେଣୁ ସମାଜ ଓ ଅର୍ଥନୀତି ପରି ସାହିତ୍ୟରେ ମଧ୍ୟ ଆଜି ଗଣର ଦୁଆ ଉଠିଚି । ଗଣ ସାହିତ୍ୟ ସମ୍ବନ୍ଧେ ଅତୀତରେ ବହୁ ବାଦାନୁବାଦ ହୋଇ ଯାଇଛି । ଗଣକୁ ନେଇ ଲିଖିତ ସାହିତ୍ୟ ଓ ଗଣ ପାଇଁ ଉଦ୍ଦିଷ୍ଟ ସାହିତ୍ୟ; ଏ ଦୁଓଟିରୁ କେଉଁଟି ଗଣ ସାହିତ୍ୟ ସେହି ସମ୍ପର୍କରେ ଆଜି ପର୍ଯ୍ୟନ୍ତ ଆଲୋଚନା ଚାଲି ଆସିଅଛି । ରାଜନୀତି ଓ ସମାଜନୀତି ପରି ସାହିତ୍ୟର ଇତିହାସରେ ଗଣଜାଗରଣର ଆଲୋଚନା ଉକ୍ତ ସମସ୍ୟା ସମ୍ପର୍କରେ ଯଥେଷ୍ଟ ଆଲୋକପାତ କରିବ ।

ସମାଜ ଅଥବା ଅର୍ଥନୀତିରେ ରାଜା ଓ ସାମନ୍ତମାନଙ୍କର ଆଧିପତ୍ୟ ଯେପରି ସ୍ୱୀକାର କରାଯାଉଥିଲା, ସାହିତ୍ୟରେ ମଧ୍ୟ ସେହିପରି ସେମାନଙ୍କର ଆଧିପତ୍ୟ ଚାଲିଥିଲା । ରାଜା ଅଥବା ବ୍ରାହ୍ମଣ ପଣ୍ଡିତମାନଙ୍କର ଭାଷା ହିଁ ରାଷ୍ଟ୍ରଭାଷା ଭାବରେ ସ୍ୱୀକୃତ ହେଉଥିଲା । ସଂସ୍କୃତକୁ ଦେବଭାଷା ଭାବରେ ସମ୍ମାନ ଦିଆ ଯାଉଥିଲା । ସଂସ୍କୃତ ପଣ୍ଡିତଗଣ ଦେଶରେ ଓ ରାଜସଭାରେ ସମ୍ମାନିତ ହେଉଥିଲେ । ଇଂରେଜ ଶାସନ କାଳରୁ ଇଂରେଜୀ ଭାଷା ଯେପରି ଅର୍ଥକରୀ ହୋଇଛି ଏବଂ ଦେଶରେ ସମ୍ମାନ ଲାଭ କରିଛି, ସେ ଯୁଗରେ ମଧ୍ୟ ସଂସ୍କୃତ ଅଳ୍ପ ବହୁତେ ସେହି ସ୍ଥାନ ଅଧିକାର କରିଥିଲା । ବ୍ରାହ୍ମଣ ପଣ୍ଡିତଗଣ ଗଣର ଭାଷା ପ୍ରାକୃତକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ପ୍ରାକୃତ ଭାଷା ଅର୍ଥାତ୍ ଜନତାର ଭାଷା ଓ ସାହିତ୍ୟ ପ୍ରତି ଶାସକମାନଙ୍କର ଅନାଦର ପୂର୍ଣ୍ଣ ମାତ୍ରାରେ ରହିଥିଲା ।

ଏହିଭଳି ଅବସ୍ଥାର ବିରୁଦ୍ଧରେ ମହାମାନବ ବୁଦ୍ଧଦେବ ପ୍ରଥମେ ସ୍ୱର ଉଠାଇଥିଲେ ଏବଂ ତାଙ୍କର ଗଣଧର୍ମକୁ ଲୋକପ୍ରିୟ କରିବା ପାଇଁ ଗଣର ଭାଷା ଅର୍ଥାତ୍ ପ୍ରାକୃତ ଭାଷାରେ ବୌଦ୍ଧ ଧର୍ମ ପ୍ରଚାର କରିବା ନିର୍ଦ୍ଦେଶ ଦେଲେ । ପ୍ରାକୃତ ଭାଷା ଓ ସାହିତ୍ୟର ସମୃଦ୍ଧି ସାଧିତ ହେଲା । ବ୍ରାହ୍ମଣ୍ୟ ଧର୍ମର ସଂକୀର୍ଣ୍ଣ ନିଗଡ଼ରୁ ବାହାରି ଆସି ବୌଦ୍ଧ ଧର୍ମ ଜନତାର ଧର୍ମ ଭାବରେ ଏ ଦେଶରେ ଓ ଦେଶ ବାହାରେ କୋଟି କୋଟି ଲୋକମାନଙ୍କ ମଧ୍ୟରେ ଅପୂର୍ବ ଜନପ୍ରିୟତା ଅର୍ଜନ କଲା । ସାମନ୍ତବାଦୀ ସମାଜରେ ଥାଇ ମଧ୍ୟ ସେତେବେଳେ ଜନତାର ଜୟ ଜୟକାର ଓ ଗଣଭାଷା ଏବଂ ସାହିତ୍ୟର ବିକାଶ ସମ୍ଭବ ହୋଇଥିଲା ।

ଏହି ପ୍ରସଙ୍ଗରେ ଆମ ଓଡ଼ିଆ ସାହିତ୍ୟ କଥା ଆଲୋଚନା କରାଯାଉ । ଓଡ଼ିଆ ସାହିତ୍ୟର ଆଦିକବି ସାରଳା ଦାସ ଯୁଗେ ଯୁଗେ ଏ ଜାତିର ନମସ୍ୟ । ସେ ପ୍ରଥମ କରି ବ୍ରାହ୍ମଣ ପଣ୍ଡିତ ଓ ସଂସ୍କୃତପ୍ରେମୀମାନଙ୍କର ଏକାଧିପତ୍ୟ ବିରୁଦ୍ଧରେ ସ୍ୱର ଉଠାଇ ଲେଖନୀ ଧରିଥିଲେ ଏବଂ ଗଣର ଭାଷାରେ ବିଶାଳକାୟ ମହାଭାରତ ରଚନା କରିଥିଲେ । ତାଙ୍କର ରଚିତ ମହାଭାରତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ । ତାହା ଓଡ଼ିଆ ସଂସ୍କୃତିର ଏକ ବିରାଟ ଇତିହାସ । ବହୁ କିମ୍ବଦନ୍ତୀ, କାହାଣୀ ଜରିଆରେ ମହାଭାରତର କଥାବସ୍ତୁ ମଧ୍ୟରେ ଓଡ଼ିଆ ଜାତିର ଆଶା, ଆକାଂକ୍ଷା, ଅନୁଭୂତି, ଯୁଦ୍ଧଯାତ୍ରା, ବେଶ-ସଂସ୍କାର ପ୍ରଭୃତି ଜାତୀୟ ଜୀବନର ପ୍ରତ୍ୟେକ କଥା ସେ ରୂପାୟିତ କରିଛନ୍ତି । କପିଳେନ୍ଦ୍ରଙ୍କ ସମୟରେ ଜନ୍ମଲାଭ କରିଥିବାରୁ ତାଙ୍କର ଭାବ-ସାମ୍ରାଜ୍ୟ ଦିଗନ୍ତବିସ୍ତାରୀ ହୋଇଥିଲା । ଆଜି କପିଳେନ୍ଦ୍ରଙ୍କ ସାମ୍ରାଜ୍ୟ ବିସ୍ମୃତିରେ ରହିଛି; ମାତ୍ର ସାରଳାଙ୍କ ଦିଗ୍‌ବିଜୟ ସର୍ବଯୁଗବ୍ୟାପୀ । ଓଡ଼ିଆ ଜାତି ଥିବା ପର୍ଯ୍ୟନ୍ତ ସାରଳାଙ୍କ ରାଜତ୍ୱ ଚାଲୁ ରହିଥିବ । ତେଣୁ ଓଡ଼ିଆ ସାହିତ୍ୟରେ ସେ କେବଳ ଆଦିକବି ନୁହନ୍ତି ; ସେ ହେଉଛନ୍ତି ଗଣ ସାହିତ୍ୟର ପଥପୁରୋଧା । ତାଙ୍କ ପଛକୁ ରାମାୟଣକାର ବଳରାମ ଓ ଭାଗବତକାର ଜଗନ୍ନାଥ ଦାସ ହିଁ ଆମର ମନେ ପଡ଼ନ୍ତି । ଜଗନ୍ନାଥଙ୍କ ଭାଗବତ ଓଡ଼ିଆ ଜାତିର ବେଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ପୁରାଣକାରଗଣ ବାସ୍ତବରେ ଗଣସାହିତ୍ୟରେ ସାଧନା ଆରମ୍ଭ କରିଥିଲେ ଏବଂ ଗଣର ମନକୁ ବୁଝିଲଭଳି ସର୍ବଯୁଗସ୍ଥାୟୀ ସାହିତ୍ୟ ଲେଖିଯାଇଛନ୍ତି । ସେଥିପାଇଁ ଆଜି ଓଡ଼ିଆର ଘରେ ଘରେ ସାରଳାଦାସ, ବଳରାମ ଓ ଜଗନ୍ନାଥ ଦାସ ଅର୍ଚ୍ଚିତ ହୁଅନ୍ତି । ଓଡ଼ିଆ କୃଷ୍ଟି ଓ ସମାଜକୁ ବଞ୍ଚାଇବାରେ ଓ ଓଡ଼ିଆ ଗଣମଧ୍ୟରେ ଅପୂର୍ବ ଆତ୍ମବିଶ୍ୱାସ ଓ ଅବଚେତନା ଆଣି ଦେବାରେ ଏମାନେ ଯୁଗ ଯୁଗ ଧରି ପ୍ରେରଣା ଯୋଗାଇ ଆସୁଛନ୍ତି । ତାର କାରଣ, ପୁରାଣ ଯୁଗରେ ରହି ମଧ୍ୟ ଧର୍ମ ପ୍ରଚାରର ସଙ୍କୀର୍ଣ୍ଣତା ସେମାନଙ୍କର ନ ଥିଲା । ଓଡ଼ିଆ ଗଣ-ଜୀବନର ବିକାଶ ପଥରେ ଏହି ତିନିଜଣ କମ୍ ପ୍ରଭାବ ପକାଇ ନାହାନ୍ତି ।

ତା ପରେ ଆସେ ଓଡ଼ିଆ କାବ୍ୟସାହିତ୍ୟର ଯୁଗ । କାବ୍ୟସାହିତ୍ୟ ଏକ ସୌଖୀନ୍ ସାହିତ୍ୟ କହିଲେ ଚଳେ । ରାଜ ଦରବାର ଏବଂ ସାମନ୍ତ ପରିବାରର ପରିବେଷ୍ଟନୀ ମଧ୍ୟରେ କାବ୍ୟ ଯୁଗର ସାହିତ୍ୟ—ପାଲା, ଗୋଷ୍ଠିପୁଅ ସଙ୍ଗୀତ ଜରିଆରେ ଚର୍ଚ୍ଚା ହୋଇ ଆସୁଥିଲା । ବିଳାସ ବ୍ୟସନରେ ଥାଇ ଉପଭୋଗ କରୁଥିବା ଲୋକଙ୍କ ପାଇଁ କାବ୍ୟ ଯୁଗର ରସାଳ ସାହିତ୍ୟ ଲେଖା ହୋଇଥିଲା । ତେଣୁ ତାହା ଏତେ ପରିମାଣରେ ସଙ୍ଗୀତପ୍ରଧାନ; ଅଥଚ ଏହି ସାହିତ୍ୟର ଜନତା ସହିତ ବିଶେଷ କୌଣସି ସମ୍ପର୍କ ନ ଥିଲା । ସେଥିପାଇଁ ଓଡ଼ିଆ ଗଣର ଜୀବନ, ଆଶା, ଅଭିଳାଷ କାବ୍ୟ ଯୁଗର ସାହିତ୍ୟରେ ଦେଖିବାକୁ ମିଳେ ନାହିଁ । ଯେଉଁମାନେ ଓଡ଼ିଶାର ଇତିହାସ ଆଲୋଚନା କରିଛନ୍ତି, ସେମାନେ ଜାଣନ୍ତି ଯେ କାବ୍ୟଯୁଗର ସାଧନା ଯେଉଁ ସମୟରେ ଚାଲିଥିଲା, ଅର୍ଥାତ୍ ସପ୍ତଦଶ, ଅଷ୍ଟାଦଶ ଶତାବ୍ଦୀ ଓଡ଼ିଆ ଜାତୀୟ ଇତିହାସରେ ଏକ ସଙ୍ଘର୍ଷମୟ ଓ କଳଙ୍କିତ ଅଧ୍ୟାୟ । ସେହି

ସମୟରେ ବିଶାଳ ଓଡ଼ିଆ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଥିଲା ଏବଂ ସାମନ୍ତରାଜାମାନେ ଗୃହବିବାଦରେ ଲିପ୍ତ ରହିଥିଲେ । କୌଣସି କେନ୍ଦ୍ରିକ ଶକ୍ତି ନ ଥିବାରୁ ଦେଶରେ ସର୍ବଦା କଳହ, ସଂଘର୍ଷ, ଯୁଦ୍ଧବିଗ୍ରହ, ଲୁଣ୍ଠତରାଜ ଲାଗି ରହିଥିଲା । ସେ ସମୟରେ ଓଡ଼ିଶାର ବହୁ ସାମନ୍ତ ରାଜବଂଶ ନାନା ଦୋଷ ଦୁର୍ନୀତି, ରକ୍ତପାତ ଓ ଗୃହବିବାଦରେ ଲିପ୍ତ ରହିଥିଲେ । ଦେଶରେ ମୋଗଲ ଅଧିକାର ପ୍ରତିଷ୍ଠିତ ହୋଇଥିଲା । ଦୁର୍ଭିକ୍ଷ, ଲୁଣ୍ଠତରାଜ ହତ୍ୟାର ବିଭୀଷିକା ଓଡ଼ିଆ ଗଣର ଜୀବନକୁ ପଦେ ପଦେ ବିକଳାଙ୍ଗ କରି ଗଢ଼ିଥିଲା । ଜାତୀୟ ଜୀବନରେ ଅଧଃପତନ ଦେଖା ଦେଉଥିଲା ; ଅଥଚ ଏ ସବୁର କ୍ଷୀଣ ଆଭାସ ସୁଦ୍ଧା ବିଶାଳ କାବ୍ୟ ସାହିତ୍ୟରେ ଦେଖିବାକୁ ମିଳେ ନାହିଁ । ଦଳେ ଲେଖକ ଧର୍ମ ପ୍ରଚାରର ଉଦ୍ଦେଶ୍ୟରେ ଯେପରି ବୈଷ୍ଣବ ସାହିତ୍ୟ ରଚନା କଲେ, ଅନ୍ୟ ଦଳକ ରାଜା ଓ ସାମନ୍ତମାନଙ୍କର ପରିତୃପ୍ତି ପାଇଁ ସେହିପରି ଆଡ଼ମ୍ବରପୂର୍ଣ୍ଣ ସାହିତ୍ୟ ଲେଖିବାକୁ ଆରମ୍ଭ କଲେ । ଗଣ ସହିତ ଏହାର କୌଣସି ସମ୍ପର୍କ ରହିଲା ନାହିଁ । ରାଜନୀତି ପରି ସାହିତ୍ୟରେ ମଧ୍ୟ ଗଣର ମନକୁ କାଏକଲାପର କୌଣସି ସାହିତ୍ୟିକ ବାର କାହ୍ନ ଗ୍ରହଣ କରି ନ ଥିଲେ । ଅବଶ୍ୟ ଏ କଥା ସତ୍ୟ ଯେ କାବ୍ୟ ସାହିତ୍ୟର ସଙ୍ଗୀତମୟତା ଯୋଗୁଁ ଗଣ ମଧ୍ୟରେ ତାହାର ଚର୍ଚ୍ଚା ସମ୍ୟକ୍ ପ୍ରବେଶ ଲାଭ କରିଥିଲା । ମାତ୍ର ବସ୍ତୁବାଦୀ ସଭ୍ୟତାର ପ୍ରଭାବ ସଙ୍ଗେ ସଙ୍ଗେ ଗଣ ଆଗରେ ସଂଘର୍ଷ ଏଭଳି ବିକଟ ହୋଇ ଉଠିଛି ଯେ ଜାତୀୟ ଜୀବନରୁ ସଙ୍ଗୀତ ହ୍ରାସ ପାଇଯାଇଛି । ତେଣୁ ସେ ସାହିତ୍ୟ ମଧ୍ୟ ଦୂରେଇ ଯାଇଛି । ମାତ୍ର "କଳା କଳେବର କହ୍ନାଇ ସଙ୍ଗେ ରୋହିଣୀସୁତ", "କହଇ ମନ ଅରେ ମୋ ବୋଲ କର", "ଅରେ ବାବୁ ଶ୍ୟାମଘନ ତୁ ଗଲେ ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବି" ପ୍ରଭୃତି ଛାନ୍ଦ, ଚଉତିଶା ଓ ସଙ୍ଗୀତ ଯାହା ସବୁ ଗଣ ମନକୁ ସ୍ପର୍ଶ କଲାଭଳି ଲେଖା ଯାଇଥିଲା, ତାହା ସର୍ବଯୁଗବ୍ୟାପୀ ସାହିତ୍ୟ ଭାବରେ ଗଣ ମନରେ ରେଖାପାତ କରିଚି ଓ କରିବ ।

ଇଂରେଜ ଶାସନ କାଳରେ ଓଡ଼ିଆ ସାହିତ୍ୟ ଗଣଠାରୁ ଅଧିକ ବିଚ୍ଛିନ୍ନ ହୋଇ ପଡ଼ିଲା । ତାହା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରବର୍ତ୍ତକ ରାଧାନାଥଙ୍କ ସାହିତ୍ୟ ଆଲୋଚନା କଲେ ସ୍ପଷ୍ଟ ପ୍ରମାଣିତ ହୁଏ । ତାଙ୍କର ପ୍ରତ୍ୟେକ କାବ୍ୟ ସେ ରାଜା ମହାରାଜା ଓ ଉଚ୍ଚ ଇଂରେଜ କର୍ତ୍ତାମାନଙ୍କୁ ଉତ୍ସର୍ଗ କରିଥିଲେ ଏବଂ ଅଧିକାଂଶ କାବ୍ୟ କବିତାରେ ରାଧାନାଥ, ମଧୁସୂଦନ ପ୍ରଭୃତି ରାଜା ଓ ସାମନ୍ତ ପରିବାରର ସ୍ତବ କରିଅଛନ୍ତି । ଓଡ଼ିଆ ସାହିତ୍ୟର ଏହି ନବଯୁଗରେ ଯେଉଁମାନେ ଗଣର ଅନୁଭୂତି ଓ ଆଶା ଆକାଙ୍‌କ୍ଷାକୁ ରୂପାୟିତ କରିବାକୁ ନେତୃତ୍ୱ ନେଇଥିଲେ, ସେମାନଙ୍କ ମଧ୍ୟରେ ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, ଗୋପବନ୍ଧୁ ପ୍ରଭୃତି ପ୍ରଧାନ । ଅତି ଆଧୁନିକ ଲେଖକମାନଙ୍କ ମଧ୍ୟରେ କାଳିନ୍ଦୀଚରଣ, ଗୋପୀନାଥ, ଅନନ୍ତପ୍ରସାଦ, କାହ୍ନୁଚରଣ, କୁଞ୍ଜବିହାରୀ ପ୍ରଭୃତିଙ୍କ କୃତିରେ ଗଣ ଜୀବନର ଆଶା ଅଭିଳାଷ, ସୁଖ ଦୁଃଖ ରୂପାୟିତ ହୋଇଛି । ଅନନ୍ତ, ମନମୋହନ, ନିତ୍ୟାନନ୍ଦ, ଶଚୀଦାନନ୍ଦ ପ୍ରଭୃତି କବିଗଣ ସେମାନଙ୍କର ବିପ୍ଳବାତ୍ମକ କବିତାରେ ଗଣର ଦାବୀ ଉପସ୍ଥାପିତ କରିଛନ୍ତି ।

କିନ୍ତୁ ମନରେ ଆଜି ପ୍ରଶ୍ନ ଉଠୁଛି, ସତରେ କଣ ଏମାନେ ଗଣର କବି ହୋଇ ପାରିଛନ୍ତି ? ସାରଳା ଦାସ, ଜଗନ୍ନାଥ ଦାସ ଯେଉଁ ପରିମାଣରେ ଓଡ଼ିଆ ସଂସ୍କୃତି, କୃଷକ ଓ ରଜା ଜମିଦାରର ଚରିତ୍ର ଗଠନ କରିବାରେ ସାହାଯ୍ୟ କରିଛନ୍ତି, ଯେମାନେ ସେ ପର୍ଯ୍ୟନ୍ତ କେବେହେଲେ ଯାଇ ପାରିବେ ନାହିଁ । ଏହାର କାରଣ ଖୋଜିବାକୁ ବେଶି ଦୂର ଯିବାକୁ ପଡ଼ିବ ନାହିଁ । ଇଂରେଜ ଶିକ୍ଷା ଫଳରେ ଆମ ଦେଶର ଶିକ୍ଷିତ ଓ ଅଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ଯେଉଁ ବିରାଟ ପ୍ରାଚୀର ଠିଆ ହେଲା, ତା ଫଳରେ ଆଧୁନିକ ସାହିତ୍ୟ ବହୁଦିନ ପାଇଁ ଜନତାଠାରୁ ଦୂରେଇ ରହିଲା । ଆଜିର ସାହିତ୍ୟ କେବଳ କେତେକ ଶିକ୍ଷିତ ମୁଷ୍ଟିମେୟଙ୍କ ମଧ୍ୟରେ ଆବଦ୍ଧ । ସଂସ୍କୃତିର ଅଭାବ-ଅନାଟନକୁ ବିଷୟବସ୍ତୁରୂପେ ସମ୍ବଳ କରି କାବ୍ୟ, କବିତା, ଉପନ୍ୟାସ ଲେଖିବା ଆଧୁନିକ ଲେଖକର ଏକ ଆଭିଜାତ୍ୟ ହୋଇପଡ଼ିଛି କହିଲେ ଚଳେ । କାରଣ ତା ଫଳରେ ସେ ପ୍ରଗତିଶୀଳ ଲେଖକର ସୁନାମ ମାରିନେବାକୁ ଅପେକ୍ଷା କରୁଛି । କିନ୍ତୁ ଗଣ ପାଇଁ ଯେଉଁ ସାହିତ୍ୟ ସୃଷ୍ଟି ହେଉଛି, ତାହା ଗଣ ନିକଟରେ ପହଞ୍ଚି ପାରୁ ନାହିଁ । ଉଦାହରଣସ୍ୱରୂପ ଗୋପୀନାଥଙ୍କ 'ହରିଜନ' ଓ 'ପରଜା' ଉପନ୍ୟାସ ଆଲୋଚନା କରାଯାଉ । ଏକଥା ସତ୍ୟ ଯେ ହଜାର ହଜାର ବର୍ଷଧରି ହରିଜନ ଓ ଆଦିବାସୀମାନଙ୍କ ଉପରେ ଆର୍ଯ୍ୟସମାଜ ଶୋଷଣ ଓ ଅତ୍ୟାଚାର ଚଳାଇ ଆସିଛି । ସେସବୁ ଅତି ଜୀବନ୍ତ ଭାବରେ ଗୋପୀନାଥ ତାଙ୍କ ଉପନ୍ୟାସରେ ରୂପ ଦେଇଛନ୍ତି ଏବଂ ସେମାନଙ୍କ ମନରେ କୁହୁଳି ଉଠୁଥିବା ଅସନ୍ତୋଷ ପ୍ରତି ପାଠକର ଦୃଷ୍ଟି ଆକର୍ଷଣ କରିଛନ୍ତି । ମାତ୍ର ଆମର ଅର୍ଥନୈତିକ, ସାମାଜିକ ସଂସ୍ଥା ଏପରି ଯେ ଏ ଦେଶରେ କେତେକ ସୁବିଧାବାଦୀ ଶ୍ରେଣୀଙ୍କ ଛଡ଼ା ଆଉ କେହି ପଢ଼ି ଲେଖି ପାରିନାହାନ୍ତି । ସେପରି ସ୍ଥଳରେ ପରଜା ଓ ହରିଜନ ଦୁଆରେ ଗୋପୀନାଥଙ୍କ ବାଣୀ ପହଞ୍ଚି ପାରିଲା ନାହିଁ । ଏହି ପ୍ରସଙ୍ଗରେ ଶ୍ରୀମନ୍ଦିରରେ ହରିଜନ ପ୍ରବେଶ ଆଇନ ଆମର ଆଲୋଚ୍ୟ । ଶ୍ରୀମନ୍ଦିରରେ ହରିଜନ ପଶିବାରେ କୌଣସି ବାଧା ନ ଥିଲେ ମଧ୍ୟ ତାହା ହରିଜନଙ୍କ ବିପ୍ଳବଦ୍ୱାରା ସଂଘଟିତ ନ ହୋଇ କେବଳ ଶାସନକଳର ନିର୍ଦ୍ଦେଶରେ ହୋଇଥିବାରୁ କୌଣସି ଫଳ ମିଳିଲା ନାହିଁ । ଓଡ଼ିଆ ସାହିତ୍ୟରେ ମଧ୍ୟ ଗଣସାହିତ୍ୟର ଠିକ୍ ସେହି ଅବସ୍ଥା ହୋଇଛି । ଯେଉଁଦିନ ଗଣର ଦୁଆରେ ସାହିତ୍ୟ ପହଞ୍ଚିପାରିବ, ସେଦିନ ତାହା ଗଣସାହିତ୍ୟ ପଦବାଚ୍ୟ ହୋଇପାରିବ । ନଚେତ୍ "ବାବାରେ ଆଲୁଅ" ଭଳି ଶସ୍ତା ଓ ନିକୃଷ୍ଟ ସଂସ୍କରଣ ଆଜି ହଜାର ହଜାର ପଲ୍ଲୀ ସଂସାର ମଧ୍ୟରେ ସ୍ୱଳ୍ପ ଶିକ୍ଷା ଓ ନିକୃଷ୍ଟ ରୁଚିର ଲୋକମାନଙ୍କୁ ତୁଷ୍ଟି କରିବାରେ ଆଶ୍ଚର୍ଯ୍ୟ କ'ଣ ଅଛି ତେଣୁ ଆଜି ହମିଦ, ସଦାଶିବ ପ୍ରଭୃତି ବାସ୍ତବରେ ଗଣ-ସାହିତ୍ୟିକ । ଏଥିପାଇଁ ଅବଶ୍ୟ ଆଧୁନିକ ଲେଖକଙ୍କୁ କେହି ଦୋଷ ଦେଉନାହିଁ । ଦୋଷ ହେଉଛି ପ୍ରଚଳିତ ଅର୍ଥନୈତିକ ସଂସ୍ଥା ଓ ସାମାଜିକ ଅନୁଷ୍ଠାନର ।

ଅସମାନ୍ତର ସମାଜ ମଧ୍ୟରେ ଯେଉଁ ଅସନ୍ତୋଷ କୁହୁଳି ଉଠିଛି, ସେଥିରେ ବିପ୍ଳବ ଅବଶ୍ୟମ୍ଭାବୀ । ଅର୍ଥନୈତିକ ଓ ସାମାଜିକ ମାନଦଣ୍ଡରେ ସାମ୍ୟନୀତି ଅନୁସୃତ ନ ହେଲେ

ସାଂସ୍କୃତିକ କ୍ଷେତ୍ରରେ ଏ ଦେଶ ଗଣ ସମ୍ମାନ ଲାଭ କରିବ ବା କିପରି ? ସେପରି ଗଣ ନିକଟରେ ସାହିତ୍ୟ ବା ପହଞ୍ଚିବ କିପରି ? ସମାଜ ଏବଂ ଜାତି ଗଢ଼ିବାରେ ସାହିତ୍ୟର ଯେଉଁ ଦାୟିତ୍ୱ ରହିଛି, ସେଥିରେ ସାମାଜିକ ବିପ୍ଳବ ହେବାପାଇଁ ସାହିତ୍ୟରେ ପ୍ରଥମେ ବିପ୍ଳବ ହେବା ଉଚିତ । ମଧ୍ୟ ଯୁଗରେ 'ପୁରାଣ', 'ପଞ୍ଚତନ୍ତ୍ର' 'ହିତୋପଦେଶ' ପ୍ରଭୃତିର ଲୋକପ୍ରିୟ କାହାଣୀ ଜରିଆରେ ଗଣ ନିକଟରେ ସାହିତ୍ୟ ପହଞ୍ଚି ପାରିଥିଲା । ଆଜି ସେଦିନ ନାହିଁ । ଯେଉଁ ଦେଶରେ ଲେଖିପଢ଼ି ଜାଣିଥିବା ଲୋକଙ୍କ ସଂଖ୍ୟା ନଗଣ୍ୟ, ସେ ଦେଶରେ ଗଣ ସାହିତ୍ୟର ସ୍ଥିତି ସମ୍ବନ୍ଧରେ ଆଲୋଚନା କରିବା ହାସ୍ୟାସ୍ପଦ କଥା ।

ଆଉ ଗୋଟିଏ କଥା, ଯାହା ବା ଆମେ ଗଣ ସାହିତ୍ୟ ନାମରେ ନାମିତ କରୁଛୁ, ତାହା ଗଠନମୂଳକ ହେଉନାହିଁ । ଓଡ଼ିଆରେ ଅଧିକାଂଶ ଗଳ୍ପ, କବିତା ଓ ଉପନ୍ୟାସରେ ଶସ୍ତା ଗଳ୍ପ ଓ ପ୍ରଣୟ-ବିଳାସର କସରତ ଚାଲିଛି । ଜାତି ଗଠନ ଦିଗରେ ଏଭଳି ସାହିତ୍ୟ ଦେବା ବର୍ଜନୀୟ । ସୋଭିଏଟ୍ ରୁଷ ଅଥବା ନୂତନ ଚୀନରେ କଲର ଶ୍ରମିକ, ମୂଲିଆ, କୃଷକ, ଡାକ୍ତର ଇଞ୍ଜିନିୟରଙ୍କ ପରି ଲେଖକ ମଧ୍ୟ ବିଶାଳ ସାମ୍ୟବାଦର ସମାଜ ଗଠନରେ ସାହାଯ୍ୟ କରୁଛି । ସେଥିପାଇଁ ପୁଷ୍କିନ୍, ଟୁର୍ଗେନେଭ, କରେନ ଚେଭସ୍କି ପ୍ରଭୃତିଙ୍କ ଲେଖାରେ ଭବିଷ୍ୟତ ସୁବର୍ଣ୍ଣ ସମାଜର ରୂପରେଖ ଦିଆଯାଇଛି । ସେମାନେ ସୁନ୍ଦର ଭବିଷ୍ୟତର ସ୍ୱପ୍ନ ଦେଖି କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହେଉଛନ୍ତି । ଉଦାହରଣସ୍ୱରୂପ କରେନ ଚେଭସ୍କି ତାଙ୍କର 'What is to be done' 'କଣ କରିବାକୁ ହେବ' ଉପନ୍ୟାସରେ ରୁଷିଆକୁ ଗଢ଼ିବାର ଏକ ସୁନ୍ଦର ଚିତ୍ର ଦେଇଛନ୍ତି । ତାଙ୍କ ସ୍ୱପ୍ନରେ ଆଜି ଯାହା ମରୁଭୂମି ଓ ପାର୍ବତ୍ୟ ଅଞ୍ଚଳ ରହିଛି, କାଲିକି ସେ ଶସ୍ୟଶ୍ୟାମଳ କ୍ଷେତ୍ରରେ ପରିଣତ ହୋଇଯାଉଛି । ସେଠାରେ ପ୍ରତ୍ୟେକ ଲୋକର ଖଟି ଖାଇବାର ସମାନ ଅଧିକାର ରହିଛି । ଦେଶରେ ଅଭାବ-ଅନାଟନ ସ୍ୱପ୍ନ ପ୍ରାୟ ପ୍ରତୀୟମାନ ହେଉଛି । ଆମ ଓଡ଼ିଆ ସାହିତ୍ୟରେ କାହ୍ନୁଚରଣ ତାଙ୍କର 'ଝଞ୍ଜା' ଉପନ୍ୟାସରେ ଏକ ଯୋଜନାବଦ୍ଧ ସୁନ୍ଦର ସମୃଦ୍ଧ ସମାଜର ସ୍ୱପ୍ନ ଦେଖିଛନ୍ତି ଅନନ୍ତପ୍ରସାଦ ତାଙ୍କର କେତୋଟି ଉପନ୍ୟାସରେ ସମବାୟ ସହଯୋଗମୂଳକ ସମାଜର ଚିତ୍ରଣ କରିଛନ୍ତି । ଏ ଉଦ୍ୟମ ଅତି ସାମାନ୍ୟ କହିଲେ ଚଳେ । ସ୍ୱାଧୀନତା ପରେ ଦେଶର ବିଭିନ୍ନ ସ୍ତରରେ କେତେକ ପରିବର୍ତ୍ତନ ହେବାକୁ ଯାଉଛି । ସେ ସମ୍ପର୍କରେ ଓଡ଼ିଆ ସାହିତ୍ୟରେ ଅଳ୍ପ କେତେଜଣଙ୍କ ଛଡ଼ା କେହି ଚିନ୍ତା କରିବାକୁ ପ୍ରେରଣା ଯେପରି ପାଉନାହାନ୍ତି ।

ପ୍ରସିଦ୍ଧ ପାଶ୍ଚାତ୍ୟ କବି 'ପାଉଣ୍ଡ' ଥରେ କହିଥିଲେ—

Friends,
If you touch my book,
You will touch a man.

"ବନ୍ଧୁ ! ତୁମେ ମୋର ରଚନା ମଧ୍ୟରୁ ପ୍ରକୃତ ମଣିଷର ସନ୍ଧାନ ପାଇ ପାରିବ ।" ଗଣ ସାହିତ୍ୟ ଏହିଭଳି ହେବା ଉଚିତ । ଭାରତୀୟ ସମାଜ ଓ ଅର୍ଥନୀତି ଯେଉଁ ସ୍ତରରେ ଅଛି, ସେପରି କ୍ଷେତ୍ରରେ ଏପରି ସାହିତ୍ୟ ଆଶା କରିବା ବୋଧହୁଏ ସମୀଚୀନ ହେବନାହିଁ ।

# ଓଡ଼ିଆ ସାହିତ୍ୟ ଓ ପ୍ରଗତିବାଦ

ସାହିତ୍ୟ ହେଉଛି ସାମାଜିକ ସମୂହ ଚେତନାର ଅଭିବ୍ୟକ୍ତି । ସେଥିପାଇଁ ଯୁଗେ ଯୁଗେ ଏହା ସହଜରେ ବର୍ତ୍ତମାନ ବୋଲି କୁହାଯାଇଛି । ସାହିତ୍ୟ ବ୍ୟାପକ ଭାବରେ ଜୀବନର ଆଭିମୁଖ୍ୟକୁ ପ୍ରକାଶ କରିଥାଏ । ଯୁଗଧର୍ମର ଆଦର୍ଶ ସାହିତ୍ୟ ମାଧ୍ୟମରେ ପ୍ରତିଫଳିତ ଏବଂ ପ୍ରସ୍ଫୁରିତ ହୁଏ । ଖ୍ରୀଷ୍ଟଫର କଡ଼ୱେଲ ଯଥାର୍ଥରେ କହିଛନ୍ତି :— Art is the product of society, as the pearl is the product of the Oyster, and to stand outside art is to stand inside society. × ×" ପୁନଶ୍ଚ ସେ କହିଛନ୍ତି—"Culture cannot be separated from economic production or poetry from social organisation.

ଇଂରେଜମାନଙ୍କ ଭାରତ ଅଧିକାର ପୂର୍ବରୁ ଏ ଦେଶରେ ସାମନ୍ତବାଦ ରାଜପଣ କରୁଥିଲା । ପାଶ୍ଚାତ୍ୟ ଶାସନ ପଦ୍ଧତିର ପ୍ରବର୍ତ୍ତନ ସଙ୍ଗେ ସଙ୍ଗେ ଆମ ଦେଶରେ ଶିଳ୍ପ-ବିପ୍ଳବର ଅଭ୍ୟୁଦୟ ହୋଇଥିଲା । କାଳକ୍ରମେ ସାମନ୍ତବାଦୀ ଗୋଷ୍ଠୀର ପ୍ରଭାବ ହ୍ରାସ ହୋଇ ଏକ ନୂତନ ପୁଞ୍ଜିବାଦୀ ଗୋଷ୍ଠୀ ଶକ୍ତିଶାଳୀ ହୋଇ ଉଠିଲେ । ଏହି ପୁଞ୍ଜିବାଦୀ ଯୁଗ ହେଉଛି ଭାରତୀୟ ରାଜନୀତିରେ ସାମ୍ରାଜ୍ୟବାଦର ଯୁଗ । ସାମ୍ରାଜ୍ୟବାଦୀ ଯୁଗକୁ ଅନ୍ୟପକ୍ଷରେ ଜାତୀୟଯୁଗ ବୋଲି ମଧ୍ୟ କୁହାଯାଇପାରେ । ୧୮୫୭ ସାଲରେ ସିପାହୀ ବିଦ୍ରୋହକୁ ଐତିହାସିକଗଣ "The last and the lost battle of feudalism in India" ବୋଲି ମତ ବ୍ୟକ୍ତ କରିଥାଆନ୍ତି । ଏହି ଘଟଣାର ମାତ୍ର ୩୦ ବର୍ଷ ପରେ ଓଡ଼ିଆ ସାହିତ୍ୟରେ ଆଧୁନିକଯୁଗର ଆରମ୍ଭ ହୋଇଥିଲା ଏବଂ ଏହି ଯୁଗରେ ରାଧାନାଥ, ଫକୀରମୋହନ ଏବଂ ମଧୁସୂଦନ ପ୍ରଭୃତି ସାହିତ୍ୟ ସାଧନା କରିଥିଲେ । ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସକୁ ବାଦଦେଲେ ଏ ଯୁଗର କାବ୍ୟ କବିତାରେ ପ୍ରାୟତଃ ସାମନ୍ତବାଦ, ପୁଞ୍ଜିବାଦ ଏବଂ ଜାତୀୟତାବାଦର ଝଙ୍କାର ଶୁଣିବାକୁ ମିଳେ । ରାଧାନାଥ ଏବଂ ମଧୁସୂଦନ ଜନ୍ମଭୂମିର ଗୌରବଗାନ କରିଥିଲେ ହେଁ ସାମ୍ରାଜ୍ୟବାଦୀ ଶାସକଙ୍କର ପ୍ରବଳ ପ୍ରଶସ୍ତିଗାନ କରିଅଛନ୍ତି ।

ପାଶ୍ଚାତ୍ୟ ସଭ୍ୟତାର ସମ୍ପର୍କ ଘନିଷ୍ଠତର ହେବା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସାହିତ୍ୟ ଜରିଆରେ ଏ ଦେଶର ସମାଜରେ ଆନ୍ତର୍ଜାତିକ ଭାବଧାରା ପରିବେଷ୍ଟିତ

ହୋଇଥିଲା । ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଏବଂ ସମ୍ବାଦପତ୍ରର ପ୍ରଚଳନ ଯୋଗୁ ଦେଶ ବିଦେଶର ସାଂସ୍କୃତିକ, ଅର୍ଥନୈତିକ, ରାଜନୈତିକ ଏବଂ ଆଧ୍ୟାତ୍ମିକ ଆନ୍ଦୋଳନ ସମ୍ପର୍କରେ ଭାବବିନିମୟ ହୋଇ ଅପୂର୍ବ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଏହି ପରିପ୍ରେକ୍ଷିରେ ମହାମାନବ ଲେନିନ୍‌ଙ୍କର ପ୍ରଭାବ ଆମର ଆଲୋଚ୍ୟ କେତେକ ଆଲୋଚକ ମତବ୍ୟକ୍ତ କରନ୍ତି ଯେ ଭାରତବର୍ଷରେ ଏବଂ ପୃଥିବୀରେ ବହୁ ବିପ୍ଳବ ଏବଂ ଚିନ୍ତାରାଜ୍ୟରେ ଆବର୍ତ୍ତନ ସୃଷ୍ଟି ହୋଇଥିଲେ ହେଁ ସତେ ଯେପରି ଓଡ଼ିଆ ସାହିତ୍ୟ-ସାଗରରେ କୌଣସି ତରଙ୍ଗ ସୃଷ୍ଟି ହୋଇନାହିଁ । ଯଦି କେଉଁଠାରେ ଆଲୋଡ଼ନ ସୃଷ୍ଟି ହୋଇଛି, ତାହା ସାହିତ୍ୟର ମୁଖ୍ୟଧାରାକୁ ନିୟନ୍ତ୍ରିତ କରିଅଛି ବୋଲି କହିହେବ ନାହିଁ ।

ତେବେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମହାପୁରୁଷ ବିବେକାନନ୍ଦଙ୍କର ବାଣୀ ଭାରତୀୟ ସମାଜରେ ଅପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା । ସେ ଥିଲେ ଆଧ୍ୟାତ୍ମିକ ଆନ୍ଦୋଳନର ପଥପ୍ରଦର୍ଶକ । ଅଥଚ ତାଙ୍କର ବାଣୀ ଥିଲା ଅତୀତର ପରମ୍ପରାରୁ ସମ୍ପୂର୍ଣ୍ଣ ବ୍ୟତିକ୍ରମ । ବିଂଶ ଶତାବ୍ଦୀର ପ୍ରଥମ ଦୁଇଟି ଦଶକ ଥିଲା ଭାରତୀୟ ଚିନ୍ତାରାଜ୍ୟରେ ଅପୂର୍ବ ଭାବ-ବିପ୍ଳବର ସମୟ । ଏହି କାଳରେ ନାନା ରାଜନୈତିକ ଆନ୍ଦୋଳନ ଭାରତୀୟ ସମାଜରେ ପ୍ରତିକ୍ରିୟା ସୃଷ୍ଟି କରିବା ପାଇଁ ପ୍ରେରଣା ପ୍ରଦାନ କରିଥିଲା । ସେମାନଙ୍କ ମଧ୍ୟରେ ମୁଖ୍ୟତଃ ସ୍ୱାମୀ ବିବେକାନନ୍ଦ, ମହାତ୍ମାଗାନ୍ଧୀ ଏବଂ କିଛିତ୍ର ପରବର୍ତ୍ତୀ କାଳରେ ମାର୍କସବାଦୀ ଆଦର୍ଶ ବୋଲି ଗ୍ରହଣ କରାଯାଇପାରେ । ଏହି ଶେଷୋକ୍ତ ମାର୍କସବାଦୀ ଆଦର୍ଶର କଥାଟି ଆଲୋଚନା କଲାବେଳେ ମହାନ ନେତା ଏବଂ ଚିନ୍ତାନାୟକ ଲେନିନ୍‌ଙ୍କୁ ସ୍ମରଣ କରିବାକୁ ହୋଇଥାଏ ।

ସ୍ୱାମୀ ବିବେକାନନ୍ଦ ତାଙ୍କର ବଜ୍ରଗମ୍ଭୀର ସ୍ୱରରେ ଭାରତୀୟ ଜନତାକୁ ଶୁଣାଇଲେ ଏହି ଅପୂର୍ବ ବାଣୀ :—

"Heaven is nearer through football than through Gita. We want men of strong biceps."

"The first step to become a patriot is to feel for the starving millions."

"I do not believe in a God who cannot give me bread here, giving me eternal bliss in heaven.

"No priestcraft, no social tyranny. More bread, more opportunity for everybody."

"The only hope of India is from the masses."

"So long as the millions live in hunger and ignorance, I hold everyman a traitor who, having been

educated at their expense, pays not the least heed to them".

ବିବେକାନନ୍ଦଙ୍କ ପରେ ଯୁଗମାନବ ମହାତ୍ମାଗାନ୍ଧୀ ଭାରତୀୟ ସମାଜକୁ ଉଦ୍‌ବୋଧନ ଦେଇ କହିଥିଲେ :—

"Capitalists (should become) trustees for the welfare of the labouring classes under them........The proper evolution would be for the labourers to raise themselves to the status of part proprietors".

"The truest test of democracy is in the ability of anyone to act as he likes so long as he does not injure the life or property of anyone else."

"The real India lies in the 700,000 villages....Today the villages are dung heaps. Tomorrow they will be like tiny gardens of Eden where dwell highly intelligent folk whom no one can deceive or exploit.

ସ୍ୱାମୀ ବିବେକାନନ୍ଦ ଏବଂ ମହାତ୍ମାଗାନ୍ଧୀଙ୍କ ଗଭୀର ମାନବଧର୍ମୀ ସମ୍ବେଦନଶୀଳତା ଭାରତୀୟ ସାହିତ୍ୟକୁ ପ୍ରେରଣା ପ୍ରଦାନ କଲା ! ଓଡ଼ିଆ ସାହିତ୍ୟରେ ପରୋକ୍ଷ ଭାବରେ ଏହି ପ୍ରଭାବ ଅନୁଭୂତ ହେଲା ବୋଲି କେତେକ ବିଶିଷ୍ଟ ଆଲୋଚକଙ୍କର ବିଶ୍ୱାସ । କାରଣ ବିଂଶ ଶତାବ୍ଦୀର ପ୍ରଥମ ଦୁଇଟି ଦଶକ ମଧ୍ୟରେ କବିମାନେ ମୁଖ୍ୟତଃ ପ୍ରକୃତିର ମନୋଜ୍ଞ ରୂପସମ୍ଭାରରେ ଅଧିକ ଆକୃଷ୍ଟ ହୋଇ ପଡ଼ିଛନ୍ତି । ମାନବ ସମାଜର ସୁଖ ଦୁଃଖ, ଅଭାବ ଅନୁଭୂତି (କେବଳ ଫକୀରମୋହନଙ୍କୁ ବାଦଦେଲେ) ଖୁବ୍ ଅଳ୍ପ ଲେଖକଙ୍କୁ ଆକୃଷ୍ଟ କରିଥିବା ଜଣାଯାଏ । ଏମାନେ ସାଧାରଣତଃ ହୋଇଛନ୍ତି ଭାବ-ସାଧନାରେ ରୋମାଣ୍ଟିକ-ଧର୍ମୀ । ଗଭୀର କଳ୍ପନାପ୍ରବଣତା ଏ ଯୁଗର କବି, ଗାଳ୍ପିକ ଏବଂ ଔପନ୍ୟାସିକମାନଙ୍କୁ ମୁଗ୍ଧ କରିଅଛି ବୋଲି ସ୍ୱୀକାର କରିବାକୁ ହେବ । ଉପନ୍ୟାସ ଏବଂ ଗଳ୍ପଗୁଡ଼ିକରେ ଜୀବନର ଯେଉଁ ରୂପାୟନ ହୋଇଅଛି, ତହିଁରେ ମାନବ ଜୀବନ ପ୍ରତି ସମ୍ବେଦନଶୀଳତାର ଅଭାବ ପଦେ ପଦେ ଅନୁଭବ କରାଯାଇଥାଏ ଜୀବନକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଅନୁଧ୍ୟାନ କରିବା ପାଇଁ ଏ ଯୁଗର ଲେଖକମାନେ ଜାଣି ନ ଥିଲେ । ସୁଖର କଥା, ପ୍ରଥମ ମହାଯୁଦ୍ଧ ଏବଂ ୧୯୧୭ ସାଲରେ ଯୋଉଥିବା ରୁଷର ଅକ୍ଟୋବର ବିପ୍ଳବ ଜରିଆରେ ଆନ୍ତର୍ଜାତିକ ସାହିତ୍ୟ ତଥା ଓଡ଼ିଆ ସାହିତ୍ୟରେ ମାର୍କସ୍‌ଙ୍କ ଆଦର୍ଶ ଏବଂ ଲେନିନ୍‌ଙ୍କ ଭାବଧାରା ପରିବେଶିତ ଏବଂ ପରିଫଳିତ ହେଲା । ଏହି ଆନ୍ଦୋଳନକୁ ସେ କାଳରେ ଚିନ୍ତା-ନାୟକଗଣ ସ୍ୱାଗତ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ପ୍ରଖ୍ୟାତ ଫରାସୀ ଦାର୍ଶନିକ ଜେ. ଲକୋଇକ୍ସ ତାଙ୍କ ମାର୍କସିଜମ୍, ଏକଜିଷ୍ଟେନ୍‌ସିଆଲିଜମ୍, ପର୍ସନାଲିଜମ୍ ପୁସ୍ତକରେ

କହିଛନ୍ତି ଯେ ମାର୍କସବାଦ କୋଟି କୋଟି ଲୋକଙ୍କ ହୃଦୟ ମନ ଜୟକରି ବସିଛି, ଏହା ଆମ ଯୁଗର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସାମାଜିକ ଆନ୍ଦୋଳନ ମାର୍କସଙ୍କର ଜନୈକ କ୍ୟାଥଲିକ୍ ସମାଲୋଚକ ଜେ. କାଲଭେଜ ମଧ୍ୟ ଲକୋଇକ୍‌ସଙ୍କ କଥାକୁ ସମର୍ଥନ କରି କହିଛନ୍ତି ଆମର ସମସାମୟିକ ଲୋକଙ୍କ ଭିତରେ ଏପରି କେହି ଅଛନ୍ତି କି ଯାହାଙ୍କ ମନରେ ମାର୍କସବାଦ ଆଲୋଡ଼ନ ସୃଷ୍ଟି କରିନାହିଁ, ଯାହାଙ୍କ ସମ୍ମୁଖରେ ଚ୍ୟାଲେଞ୍ଜ୍ ଉପସ୍ଥାପିତ କରିନାହିଁ । (ମାର୍କସବାଦ ଉତ୍ସ ଓ ସାରମର୍ମ—ପୃ ୮)

"ମାର୍କସ୍‌ବାଦୀ ଦର୍ଶନ—ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ, ଶ୍ରମିକଶ୍ରେଣୀର ଗୁରୁ କାର୍ଲମାର୍କସ (୧୮୧୮-୧୮୮୩) ଓ ଫ୍ରେଡ୍ରିକ୍ ଏଙ୍ଗେଲ୍‌ସ୍‌ଙ୍କ ସୃଷ୍ଟି । ସମଗ୍ର ଶ୍ରମଜୀବୀ ଜନସାଧାରଣଙ୍କ ନେତା ଭ୍ଲାଦମିର ଇଲିଚ୍ ଲେନିନ୍ ନୂତନ ଅବସ୍ଥାର ଉପଯୋଗୀ କରି ତା'ର ସୃଜନ-ଶୀଳ ବିକାଶ ଘଟାଇଛନ୍ତି । କାର୍ଲ ମାର୍କସ, ଫ୍ରେଡ୍ରିକ ଏଙ୍ଗେଲ୍‌ସ ଓ ଲେନିନଙ୍କ ପରି ମାନବର ଭାଗ୍ୟ ଓ ତାର ଆଧ୍ୟାତ୍ମିକ ସଂସ୍କୃତି ଉପରେ ଏତେ ବିରାଟ ପ୍ରଭାବ ପକାଇଥିବା ଭଳି ଅନ୍ୟ କୌଣସି ବ୍ୟକ୍ତି କେବେ ଜନ୍ମ ଲଭିଛି ବୋଲି ଇତିହାସ ଜାଣେ ନାହିଁ ।"

(ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ—ଅନୁବାଦ—ଶ୍ରୀ ଗୁରୁଚରଣ ପଟ୍ଟନାୟକ—ପୃ ୧୧/୧୨)

ସୋଭିଏଟ ରୁଷର ସାମ୍ୟବାଦୀ ବିପ୍ଳବ କେବଳ ଏକ ରାଜନୈତିକ ପରିବର୍ତ୍ତନ କହିଲେ ଠିକ୍ ହେବ ନାହିଁ । ଏହାର ମଧ୍ୟରେ ଗଭୀର ସାଂସ୍କୃତିକ ଏବଂ ଅର୍ଥନୈତିକ ବିପ୍ଳବ ମଧ୍ୟ ନିହିତ ରହିଅଛି । ସାହିତ୍ୟ ରାଜ୍ୟରେ ସୋଭିଏଟ ସାମ୍ୟବାଦୀଗଣ ସେଥିପାଇଁ ସାମ୍ୟବାଦୀ-ବାସ୍ତବବାଦ (socialist realism)ର ପ୍ରତିଷ୍ଠା କରିଛନ୍ତି । ସେଥିପାଇଁ ଏ ସ୍ଥଳରେ କଳା ସମ୍ପର୍କରେ ଲେନିନ୍‌ଙ୍କ ମତ ଉଦ୍ଧାର କଲେ ଅତ୍ୟନ୍ତ ସଙ୍ଗତ ହେବ । ମହାମାନବ ଲେନିନ୍ କହିଥିଲେ—

"Art belongs to the people. It must with its widest stretching root go out into the very thick of the broadest masses. It must combine the feelings, thoughts and will of the masses and uplift them".

ଗର୍କିଙ୍କ ଲିଖିତ 'ମା' ଉପନ୍ୟାସ ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇପାରେ । ଭାରତ ବିଖ୍ୟାତ ଲେଖକ ଡକ୍ଟର ମୁଲକ୍‌ରାଜ୍ ଆନନ୍ଦ ଥରେ ଆଲୋଚନା ପ୍ରସଙ୍ଗରେ କହିଥିଲେ :—"When we were not a free country we used to read Gorky's Mother and were inspired by the concept of struggle for liberty." ୧୯୩୩ ସାଲରେ ଓଡ଼ିଆ ସାହିତ୍ୟରେ ପ୍ରଥମେ ଗର୍କିଙ୍କ 'ମା' ଉପନ୍ୟାସ ନୃସିଂହଚରଣ ମହାନ୍ତି ଅନୁବାଦ କରିଥିଲେ । ଆଜି ପର୍ଯ୍ୟନ୍ତ ଏହି ଉପନ୍ୟାସର ଏକାଧିକ ଅନୁବାଦ ପ୍ରକାଶିତ ହୋଇଥିବାରୁ ଲେନିନ୍‌ଙ୍କ ପ୍ରଭାବରେ ଓଡ଼ିଆ ସାହିତ୍ୟରେ ଯେଉଁ ପ୍ରଗତିବାଦୀ ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାହାର

ପ୍ରତିକ୍ରିୟା ଅନୁମିତ ହୋଇପାରେ । ଏହି ଆନ୍ଦୋଳନ ପ୍ରାୟ ଏକ ସମୟରେ ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଆରମ୍ଭ ହୋଇଯାଇଥିଲା । ସାହିତ୍ୟ ଓ ସଂସ୍କୃତି ରାଜ୍ୟରେ ଏହାଥିଲା ଏକ ସ୍ୱାଭାବିକ ପରିଣତି ।

କେଉଁ ସ ହେନ୍ଦ୍ର ବେଳାରେ ମନୁଷ୍ୟ ଧନର ଆବିଷ୍କାର କଲା କେଜାଣି, ସେ ହେଲା ତାହାର ସମସ୍ତ ସୁଖ ଏବଂ ଦୁଃଖର ମୂଳ କାରଣ । ଧନ ହୋଇଥିଲା ମନୁଷ୍ୟର ସମସ୍ତ ପ୍ରଭାବ ଏବଂ ଐଶ୍ୱର୍ଯ୍ୟର ମୂଳକଥା । କିନ୍ତୁ ସେହି ଧନ ପୁନଶ୍ଚ ମନୁଷ୍ୟର ପ୍ରଭୁ ହୋଇ ତାହାକୁ ନିୟନ୍ତ୍ରଣ କଲା । ଏହି ବିଷୟରେ ପ୍ରାଚୀନ ଗ୍ରୀକ୍ କବି ସୋଫକ୍ଲିସ ଲେଖିଥିଲେ—

> "Of all the foul growths current in the world.
> The worst is money. Money drives man from home,
> plunders proud cities, and perverts honest minds.
> To shameful practice, godlessness and crime."
>
> —Sophocles

ସାମନ୍ତବାଦୀ ପୁଞ୍ଜିବାଦୀ-ବୁର୍ଜୁଆ-ସଂସ୍କୃତିର ଏହି ଦ୍ୱନ୍ଦ୍ୱ ମଧ୍ୟରୁ ସାମ୍ୟବାଦୀ ଆନ୍ଦୋଳନ ଜନ୍ମଗ୍ରହଣ କଲା ଏବଂ ଲେନିନ ହେଲେ ଏହି ଆଦର୍ଶର ସର୍ବଶ୍ରେଷ୍ଠ କାର୍ଯ୍ୟକାରୀ-ନିୟନ୍ତା । ଖ୍ରୀଷ୍ଟଫର କଡ଼ୱେଲ ତାଙ୍କର Illusion and Reality ପୁସ୍ତକରେ ତେଣୁ କହିଛନ୍ତି :—

"Communism is not an ideal, it is the inevitable solution of the ripening contradictions in Capitalism."

ଏହି ଦ୍ୱନ୍ଦ୍ୱ ସମ୍ପର୍କରେ କଡ଼ୱେଲ ଆହୁରି ବିଶ୍ଳେଷଣ କରି ଲେଖିଛନ୍ତି—

"On the one hand the increase of organisation in the factories; on the other hand the increase of competition for private profit between the factories. On the one hand an unparalleled development of productive forces; on the other hand a system of economy continually generating crisis which result in a restriction of production. On the one hand an increase in international communication, unity of consciousness and interweaving of production; on the otherhand an increasing nationalism and enemity. On the one hand a growing desire

for peace; on the other hand an increasing preparation for war. A broad idle capital widly searching for profit; at home idle hands vainly searching for work. At one end of society the creation of a diminishing number of Plutocrats with an income, power and purchasing capacity increasing beyond the dreams of earlier society; at the other end the growth of an army without possessions, without work, without hope to a degree unknown to any previous civilization. On the one hand an efflorscene of the sciences and the arts in a new universe of technique; on the other hand their separation into spheres whose disintegration and contradiction reduces knowledge to chaos and men to spiritual despair."

ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଶକ୍ତିଶାଳୀ ନିର୍ମାତା ଏବଂ ଉତ୍କଳ ସାହିତ୍ୟ ପତ୍ରିକାର ସ୍ୱନାମଧନ୍ୟ ସମ୍ପାଦକ ଶ୍ରୀ ବିଶ୍ୱନାଥ କର ୧୯୨୦ ଖ୍ରୀଷ୍ଟାବ୍ଦରେ ଅକ୍ଟୋବର ବିପ୍ଳବର ମାତ୍ର ତିନୋଟି ବର୍ଷ ପରେ ତାଙ୍କ ମାସିକ ପତ୍ରିକାର ସମ୍ପାଦକୀୟରେ ଯେଉଁ ଆଲୋଚନା ପ୍ରକାଶ କରିଥିଲେ, ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାହା ବୋଧହୁଏ ଗଭୀର ଆଲୋଡ଼ନ ସୃଷ୍ଟି କରିଥିବ । ଏହି ଆଲୋଚନାରେ ସେ ଲେନିନ୍ କିମ୍ବା ସାମ୍ୟବାଦୀ ଆନ୍ଦୋଳନର ନାମୋଲ୍ଲେଖ କରି ନ ଥିଲେ ହେଁ ତାଙ୍କ ଟିପ୍ପଣୀର ପ୍ରତିଟି ଧାଡ଼ିରେ ସେହି ଆଦର୍ଶର ପ୍ରତିବିମ୍ବ ପ୍ରତିଫଳିତ ହୋଇଅଛି । ସେ ଲେଖିଥିଲେ ଏହିପରି—"ଏ ସୁବିଶାଳ ପୃଥିବୀ ସମସ୍ତଙ୍କ ପାଇଁ ବକ୍ଷ ପ୍ରସାରିତ କରି ଦେଉଅଛି—ନିଜର ଅସୀମ ସମ୍ପଦର ଦ୍ୱାର ସମସ୍ତଙ୍କ ପାଇଁ ମୁକ୍ତ କରି ରଖିଅଛି । ଯେ ଯାହାର ଶକ୍ତି ଅନୁସାରେ ଉପାର୍ଜନ କର । ଭୋଗ କର ! ବିତରଣ କର । ଆନନ୍ଦିତ ହୁଅ ।" କଲ୍ୟାଣମୟୀ ବିଶ୍ୱଧାତ୍ରୀ ଚିରଦିନ ଏହି ମନ୍ତ୍ର ମାନବର କର୍ଣ୍ଣ କୁହରରେ ଉଚ୍ଚାରଣ କରି ଆସୁଅଛନ୍ତି । ତଥାପି ମାନବର ଏ କି ଦୁର୍ବୁଦ୍ଧି । ଚଉଅଡ଼େ କେବଳ କଡ଼ାକଡ଼ି, ଛଡ଼ାଛଡ଼ି, ଟଣାଟଣି, ହଣାହଣି ! 'ସ୍ୱାଧିକାର ପ୍ରମତ୍ତ' ବ୍ୟକ୍ତି ଓ ଜାତି ଅନ୍ୟକୁ ଦଳିତ, ପୀଡ଼ିତ ବଞ୍ଚିତ କରି କେବଳ ନିଜ ଉଦରର ସ୍ଫୀତି ଓ ଧନସ୍ତର ବଢ଼ାଇବାରେ ବ୍ୟସ୍ତ ! ଏଣେ ପୃଥିବୀର ଲକ୍ଷ ଲକ୍ଷ ନରନାରୀ ବୃତ୍ତିହୀନ, ବାସହୀନ, ଅନ୍ନବସ୍ତ୍ରହୀନ ଦୀନତାର ଚରମ ପଙ୍କରେ ନିମଗ୍ନ ! ଏହି ଅସ୍ୱାଭାବିକ ଅବସ୍ଥାରେ ଶାନ୍ତି ସୌଖ୍ୟର ଆଶା ସୁଦୂରପରାହତ—ନାନା ଆକାରରେ ଅଗ୍ନିକାଣ୍ଡ ଅନିବାର୍ଯ୍ୟ ଯେଉଁଠାରେ ଜୀବନ ଅଛି, ଚେତନାର, ସଞ୍ଚାର ହୋଇଅଛି, ସେହିଠାରେ ଏହାର ସୁସ୍ପଷ୍ଟ ପ୍ରକାଶ । କ୍ରମେ ଦାବାନଳ ତୁଲ୍ୟ ଏହା ପୃଥିବୀମୟ ବ୍ୟାପ୍ତ ହେଉଅଛି । ପାଶବ ବଳରେ ଏହାର ନିବାରଣ ଅସମ୍ଭବ । ବଡ଼ ବଡ଼

ଜାତିମାନଙ୍କର ରାଜନୈତିକ ଯୋଗସାଜସ ଏହାର ପ୍ରକୃତ ଲକ୍ଷ୍ୟ । ନିଜର ସୁଖଟିକୁ ବଡ଼କରି ଦେଖିବାରେ, ନିଜର ଦାବୀଟିକୁ ଅଗ୍ରଗନ୍ତି କରି ରଖିବାରେ, ନିଜର ପ୍ରଭୁତ୍ୱ ବଜାୟ ରଖିବା ଏବଂ ବୃଦ୍ଧି କରିବାର ଚେଷ୍ଟାରେ ମାନବ ସମାଜର ଏହି ଦୁରବସ୍ଥା । ଆଜି ପୃଥିବୀରେ ଯେଉଁମାନେ କ୍ଷୁଦ୍ର, ହେୟ, ଅବଜ୍ଞାତ; ସେମାନଙ୍କ ଦାବୀ ପରିପୂର୍ଣ୍ଣରୂପେ ସ୍ୱୀକୃତ ନ ହେବା ଯାଏ ରକ୍ଷା ନାହିଁ । ଏ ଅଗ୍ନି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାର ଅନ୍ୟ ଉପାୟ ନାହିଁ ।"

(ଉ: ସା: ୨୪ଶ ଭାଗ ୩ୟ ସଂଖ୍ୟା ୧୩୨୭-ପୃ ୧୨୨)

ଅବଶ୍ୟ ଏହାର ଦୁଇବର୍ଷ ପୂର୍ବରୁ ସତ୍ୟବାଦୀ-ସାହିତ୍ୟ-ଗୋଷ୍ଠୀର ମୁଖପତ୍ରରେ 'ସତ୍ୟବାଦୀ' ପତ୍ରିକାରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ 'ଭିକାରି' ନାମରେ କବିତାଟି ପ୍ରକାଶିତ ହୋଇଥାଏ । ତାହାର ମର୍ମବାଣୀ ଏହିପରି—

"ଦୁଃଖୀ ପାଇଁ ଧନେ      କାହାର ଜଗତେ
ନ କାନ୍ଦେ ଅନ୍ତର ତଳେ
ଯାହାର ଯେତିକ      ଧନ ମାନ ଶିରୀ
ପୂଜା ତାର ଏ ମହୀରେ ।"

ଏହି କବିତାରେ ଆଦର୍ଶବାଦର ଆହ୍ୱାନ ଜଣାଇ କବି ସହାନୁଭୂତିର ଉଦ୍ରେକ କରିଛନ୍ତି । ଏଥିରେ ଅବଶ୍ୟ ଭିକାରି ଜୀବନର ସଙ୍କୁଳିତ ଜୀବନକୁ ଅତ୍ୟନ୍ତ ଆବେଗପୂର୍ଣ୍ଣ ଭାବରେ କବି ଅଭିବ୍ୟକ୍ତ ଦେଇଛନ୍ତି । ସେହିପରି ପରବର୍ତ୍ତୀ କାଳରେ କାଳନ୍ଦୀଚରଣଙ୍କ 'ମୁକ୍ତାଗଡ଼ର କ୍ଷୁଧା' ଏବଂ 'ଅମରଚିତା' ଉପନ୍ୟାସ ଦ୍ୱୟରେ ଦଳିତ, ଦରିଦ୍ରମାନଙ୍କର ବାସ୍ତବ ଜୀବନର ଚିତ୍ରଣ ଦିଆଯାଇଛି ଏବଂ ସାମନ୍ତବାଦୀ ଗୋଷ୍ଠୀର ହୃଦୟ ପରିବର୍ତ୍ତନ ପାଇଁ ଏଥିରେ ଲେଖକ ଆଶା ପୋଷଣ କରି ରାଜା ଶୁଭକାନ୍ତକୁ ସେବକ ଶୁଭକାନ୍ତରେ ପରିଣତ କରିଛନ୍ତି । ସନାତନ ନେତୃତ୍ୱରେ ଲେଖକ ଯେଉଁ ବିଦ୍ରୋହର ସ୍ୱପ୍ନ ଦେଖିଛନ୍ତି; ତାହା ସେହି ପ୍ରେମର ଅଗ୍ନିରେ ହିଁ ନିର୍ବାପିତ ହୋଇଯାଇଛି । ଅଥଚ ୧୯୩୬ ସାଲରେ 'ଯୁଗବୀଣା'ର ଏପ୍ରିଲ ମାସ ସଂଖ୍ୟାରେ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ଭିକାରି' ଗଳ୍ପ ଏହି ସମ୍ପର୍କରେ ତୁଳିତ ହୋଇପାରେ । ଶ୍ରୀ ରାଉତରାୟ ଲେଖିଥିଲେ—"ରାସ୍ତାରେ ବାଲିଗୁଡ଼ିକ ନିଆଁ ଗୁଣ୍ଡା ପରି ତାତିଛି । ଧାନୁଟାଏ ପକାଇଦେଲେ ଖଇ ଫୁଟିବ । ମାତ୍ର ଭିକାରିର କଠିନ ଗୋଡ଼ ତା ଉପରେ ଚାଲିଛି । ସେ ତପ୍ତ ବାଲିରୁ ରକ୍ଷା ପାଇବା ଲାଗି ପାଦରେ କେତେଖଣ୍ଡି ଚୁଣ୍ଡାକନା ଗୁଡ଼ାଇଛି । ଯେତେବେଳେ ପାଦର ଯନ୍ତ୍ରଣା ଅସହ୍ୟ ହେଉଛି ସେତେବେଳେ ସେ ଆଉ ଚାଲି ନପାରି ରାସ୍ତାର ଏ ପାଖରୁ ସେ ପାଖକୁ ଦଉଡ଼ୁଛି । କେତେବେଳେ ପୁଣି ଡେଇଁ ଡେଇଁ ଚାଲୁଛି ।" ଏଇ ଭିକାରିଟି ଶେଷରେ ପାଣି ମନ୍ଦଏ ପାଇଁ ବୁର୍ଜୁୟା ମନୁଷ୍ୟର ଅତ୍ୟାଚାରରେ ଜୀବନ ହାରିଦେଇଛି । ଏଠାରେ ଗାନ୍ଧି-ଯୁଗର ପ୍ରେମାଭିମାନ ଅଥବା ହୃଦୟ ଜୟ କରିବାର ପ୍ରଚେଷ୍ଟା ନାହିଁ । ଶ୍ରୀ କାଳନ୍ଦୀଚରଣ 'ମାଟିର ମଣିଷ'ରେ ଏବଂ ଶ୍ରୀ ହରେକୃଷ୍ଣ ମହତାବ 'ପ୍ରତିଭା' ଉପନ୍ୟାସରେ ଏହି ଉଦ୍ୟମ

କରିଛନ୍ତି ! ଅଥଚ ଗୋଦାବରୀଶ ମିଶ୍ରଙ୍କ ଉକ୍ତିର ଭାଗ୍ୟବାଦରେ ବିଶ୍ୱାସ କରି ସମାଜକୁ ଅଭିମାନ କରିଥିବାବେଳେ ସଚ୍ଚିଦାନନ୍ଦଙ୍କ ଉକ୍ତିର ନିଜର ଦାବୀ ହାସଲ ପାଇଁ ଲଢ଼ାଇ କରି ଅତ୍ୟାଚାରୀ ସମାଜ ସମ୍ମୁଖରେ ଝାସପଡ଼ୁଛି ।

ମୋଟାମୋଟି ଭାବରେ ଏହି ପ୍ରଗତି-ବାଦୀ ଆନ୍ଦୋଳନର ମୂଳ ଉତ୍ସ ଥିଲେ ଲେନିନ୍ । ବଙ୍ଗ ସାହିତ୍ୟର ସେହି କ୍ଷଣଜନ୍ମା ତରୁଣ ବିପ୍ଳବୀ କବି ସୁକାନ୍ତ ଭଟ୍ଟାଚାର୍ଯ୍ୟ ଲେନିନ୍‌ଙ୍କୁ ସ୍ମରଣ କରି ଲେଖିଥିଲେ :—

"ଲେନିନ୍ ଭେଙ୍ଗେଛେ ରୁଷେ ଜନସ୍ରୋତେ ଅନ୍ୟାୟେର ବାଂଧ
ଅନ୍ୟାୟେର ମୁଖୋମୁଖି ଲେନିନ୍ ପ୍ରଥମ ପ୍ରତିବାଦ ।

× × ×

ଧନିକ ହାଜାର କଣ୍ଠେ ବିପ୍ଳବେର ଆଜୋ ସବର୍ଦ୍ଧନା !
ପୃଥିବୀର ପ୍ରତି ଘରେ ଘରେ
ଲେନିନ୍ ସମୃଦ୍ଧ ହୟ ସମ୍ଭାବିତ ଉର୍ବର ଜଠରେ ।
ଆଶ୍ଚର୍ଯ୍ୟ ଉଦ୍ଦାମବେଗେ ବିପ୍ଳବେର ପ୍ରତ୍ୟେକ ଆକାଶେ
ଲେନିନେର ସୂର୍ଯ୍ୟଦୀପ୍ତି ରକ୍ତେର ତରଙ୍ଗ ଭେସେ ଆସେ,
ଇତାଲୀ, ଜର୍ମାନୀ, ଜାପ ଇଂଲଣ୍ଡ, ଆମେରିକା ଚୀନ
ଯେଖାନେ ମୁକ୍ତିର ଯୁଦ୍ଧ, ସେ ଖାନେଇ କମ୍ରେଡ଼ ଲେନିନ ।"

ବାସ୍ତବରେ ଏହି ପ୍ରଗତିବାଦୀ ସାହିତ୍ୟରେ ଶୋଷକ ପ୍ରତି ଶୋଷିତର ହୁଙ୍କାର ଶୁଣିବାକୁ ମିଳିଥାଏ । ସେଠାରେ । ଆଉ ନୀରବରେ ପ୍ରବଳର ଅତ୍ୟାଚାରକୁ ଭାଗ୍ୟର ଲିଖନ ବୋଲି ମାନିବାକୁ ପ୍ରସ୍ତୁତ ନୁହେ । ସେ ନିଜର ଦାବୀ ହାସଲ କରିବାକୁ ଚାହେଁ ଅନ୍ୟାୟର ପ୍ରତିବାଦ କରି; ସେ ହସି ହସି ମରଣକୁ ବରଣ କରିପାରେ । ତେଣୁ କାଳିନ୍ଦୀ.ଚରଣଙ୍କ ସାଉକାର ହରି ମିଶ୍ର ଅଥବା କାହ୍ନୁଚରଣଙ୍କ ଚନ୍ଦ୍ରେଇ ଯୋଉଁ ନିଜର ଅପକର୍ମ ପାଇଁ ସମାଜକୁ ଭ୍ରୂକ୍ଷେପ କରି ନାହାନ୍ତି । ମାତ୍ର ଏ ଯୁଗର ଅନ୍ୟତମ ଶକ୍ତିଶାଳୀ ଔପନ୍ୟାସିକ ଗୋପୀନାଥଙ୍କ 'ପରଜା' ଉପନ୍ୟାସରେ ଦଳିତ ନିଷ୍ପେଷିତ ବଣୁଆ ମଣିଷ ମାଣ୍ଡିଆ ଜାନିର ହାତରେ ହାଣକୁରାଢ଼ିର କରାମତି ଦର୍ଶାଇଛନ୍ତି । ମାଣ୍ଡିଆ ଜାନି ସାଉକାର ଉପରେ କୁରାଢ଼ି ପାହାର ଦେଲାବେଳେ କହୁଛି—"ଅଧର୍ମ କରି ଭୂମି ନେଲୁ ସିନା ସାହୁକାର, ଭୋଗ କରିପାରିବୁ ନାହିଁ, ଭୋଗକରି ପାରିବୁ ନାହିଁ ।"

ପ୍ରଗତିବାଦ ହେଲା ଯଥାର୍ଥବାଦର ପରିପୋଷକ । ଏଥିରେ ଆଦର୍ଶ ଅପେକ୍ଷା ବାସ୍ତବ ଜୀବନର ଘଟଣାଘଟଣା ଅଧିକ ରୂପାୟିତ ହୋଇଥାଏ । ମାର୍କସ୍‌ଙ୍କ ସାମ୍ୟବାଦୀ ଆଦର୍ଶ ଏବଂ ଲେନିନ୍‌ଙ୍କ ସମାଜବାଦୀ ଆନ୍ଦୋଳନ ଦ୍ୱାରା ଏହି ଯୁଗର ସାହିତ୍ୟ ହେଲା ପ୍ରତିପାଳିତ । ଏ ଯୁଗର ଲେଖକ ଚାଷୀ ମୂଲିଆଙ୍କ ଅଧିକାର ପାଇଁ ବ୍ୟାକୁଳ । ତାହାର

ଶ୍ରମର ମୂଲ୍ୟ ଉପରେ ସାମାଜିକ ମୂଲ୍ୟବୋଧ ସ୍ୱୀକାର କରିବାକୁ ହେବ । ତେଣୁ ଓଡ଼ିଆ ସାହିତ୍ୟରେ ଶୁଣିବାକୁ ମିଳିଲା କବି ସଚ୍ଚିଦାନନ୍ଦଙ୍କ ଅମର କବିତାରେ—

"ମୂଲିଆକୁଲି ହୁଅ ରେ ଠୁଳ ଆସରେ କୃଷୀ କୁଲି
ଅନ୍ଧାରି ଦେଶ ଆଲୁଅ କରି ଦହୁଡ଼ି ଦଅ ଜାଳି ।"

ହିନ୍ଦୀ ସାହିତ୍ୟର ପ୍ରଗତିବାଦୀ କବି "ଦିନକର" ଅବିକଳ ଏହିପରି ଆହ୍ୱାନ ଜଣାଇ କୃଷକ ପ୍ରତି ସହାନୁଭୂତିଶୀଳ ହୋଇ ପଡ଼ିଛନ୍ତି । ତାଙ୍କରି ଭାଷାରେ—

"ଦେଖ କଲେଜା ଫାଡ଼ ଦେ ରହେ
କୃଷକ ଆଜ ଶୋଣିତ କୀ ଧାରେ
ଔର ଉଠୀ ଜାତୀଁ ଉନ ପର ସ୍ୱ
ବୈଭବ କୀ ଊଁଚୀ ଦୀବାରେ ।"

—ହାହାକାର

ସେହିପରି ଆଉ ଜଣେ ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ କବି ନରେନ୍ଦ୍ରଙ୍କ କବିତାରେ ଏହି ବୈପ୍ଳବିକ ବାଣୀର ଝଙ୍କାର ଶୁଣିବାକୁ ମିଳିଲା—

"ଜଗ କୋ ଜୋ ଭୋଜନ ଦେତେ ହୋ
ଆଜ ଉନ୍ହେଁ ଭୂଖା ଦେଖୋ
ଔର ଦୁସରୀ ଔର ଦେଖଲେ
ଧନ-ମଦ, ଯୌବନ-ମଦ, ବ୍ୟଭିଚାର ।"

—ପ୍ରଭାତ କବି

ଓଡ଼ିଆ ସାହିତ୍ୟରେ ୧୯୩୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ "ନୂତନ ଧର୍ମ" ଉପନ୍ୟାସରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଏହି ଦଳିତ, ଶୋଷିତମାନଙ୍କର କଥା କହିଛନ୍ତି । ଏହି ବର୍ଣ୍ଣନା କେବଳ ଫଟୋଗ୍ରାଫିକ ଚିତ୍ରଣ ନୁହେଁ, ଏହା ହେଉଛି ନିଷ୍ପେଷିତ ଜନତା ମୁହଁରେ ବିପ୍ଳବର ପାଞ୍ଚଜନ୍ୟ । ଶ୍ରୀ ମହତାବ 'ମାଗୁଣିଧର' ମୁହଁରେ କୁହାଇଛନ୍ତି— "ଆପଣ ଜାଣନ୍ତି ଦେଶ କେତେ ଗରିବ ? ଜାଣନ୍ତି ଆପଣ, ଆପଣମାନଙ୍କ ଜୁଲମରେ ନିଜ ପିଲାଝିଲାଙ୍କୁ ଉପାସ ରଖି ଲୋକେ ଆପଣଙ୍କ ପାଉଣା ଛୁଡ଼ାନ୍ତି ? କାରଣ ସେମାନେ ଡରନ୍ତି ବୋଲି । ଡର ଯେଉଁଦିନ ଭାଙ୍ଗିବ, ସେମାନେ ସଫା ଦେବେ ନାହିଁ ବୋଲି କହିଦେବେ । ଗରିବର ଶକ୍ତି ସେ ବୁଝୁନାହିଁ । ସେ ତାହା ବୁଝିଗଲେ ଜାଣନ୍ତି ତ ଗରିବ କେତେ ଶକ୍ତିମାନ । × × ମାତ୍ର ଆପଣଙ୍କ ବିଭବର ଅର୍ଥ ହେଉଛି ଶହ ଶହ ଲୋକଙ୍କ ଘରେ ଚୁଲି ନ ଜଳିବା । ଶହ ଶହଙ୍କ ଘରେ ଦୁଃଖର ନିଃଶ୍ୱାସ ବହିବା, ସେମାନେ ମୁହଁ ଖୋଲି କହି ପାରୁନାହାନ୍ତି ସତ, ମାତ୍ର ସେମାନଙ୍କର ନିଃଶ୍ୱାସରେ ବଡ଼ ଶକ୍ତି ଅଛି । ସେମାନଙ୍କର ନିଃଶ୍ୱାସ ଭଗବାନଙ୍କ ହାତରେ ହତିଆର ପରି ।"

ଯେଉଁ ଭାବଧାରାରେ ଅଗ୍ରସର ହେବାକୁ ହୁଏ, ତାହା ପ୍ରଗତିବାଦ । ଯେଉଁ ସାହିତ୍ୟରେ ସର୍ବହରାର ଚିତ୍ରଣ, ତାର ଜୀବନର ଅଭିବ୍ୟକ୍ତି ଏବଂ ଗୌରବ ପ୍ରଖ୍ୟାପନ, ଯାହାର ଲକ୍ଷ୍ୟ ହେଉଛି ଲୋକକଲ୍ୟାଣ, ତାହାକୁ ଆମେ ପ୍ରଗତିବାଦୀ ସାହିତ୍ୟ କହିପାରିବା । ଏମାନଙ୍କ ଚିନ୍ତାଧାରାରେ ବୈଜ୍ଞାନିକ ବିଶ୍ଳେଷଣ ଏବଂ ସ୍ୱାଧୀନତାର ପ୍ରବଳ ଆହ୍ୱାନ ଶୁଣିବାକୁ ମିଳେ । ଅତୀତର ରୋମାଣ୍ଟିକଧର୍ମୀ କବିତା ବିରୁଦ୍ଧରେ, ସାମନ୍ତବାଦୀ-ସମ୍ରାଜ୍ୟବାଦୀ ଭାବଧାରା ବିରୁଦ୍ଧରେ ଏହି ସାହିତ୍ୟ ହେଉଛି ପ୍ରବଳ ପ୍ରତିବାଦ । ଲେନିନ୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ୧୯୩୪ ଖ୍ରୀଷ୍ଟାବ୍ଦରେ କଂଗ୍ରେସ ସାମ୍ୟବାଦୀ ସଂସ୍ଥା ଗଠନ କରାଯାଏ । ଓଡ଼ିଶାରେ ଯେଉଁମାନେ ଏହି ଆନ୍ଦୋଳନରେ ଆଗଭର ହୋଇଥିଲେ, ସେମାନଙ୍କ ମଧ୍ୟରୁ କେତେକଙ୍କ ନେତୃତ୍ୱରେ ୧୯୩୫ ଡିସେମ୍ବର ମାସରେ 'ନବଯୁଗ ସାହିତ୍ୟ ସଂସଦ' ଗଠିତ ହେଲା । ଏହି ସଂସଦର ପ୍ରଥମ ସମ୍ମିଳନୀରେ ମୁଖ୍ୟ ସଭାପତି ଥିଲେ କାଳିନ୍ଦୀଚରଣ । ଭଗବତୀଚରଣ ପାଣିଗ୍ରାହୀଙ୍କ 'ଅର୍ଥ ଓ ପରମାର୍ଥ,' ରାମପ୍ରସାଦ ସିଂହଙ୍କ 'ବର୍ତ୍ତମାନ ସାହିତ୍ୟରେ ନୂତନ ଭାବଧାରା ଆବାହନ', ଗୁରୁଚରଣ ପଟ୍ଟନାୟକଙ୍କ 'ସମସାମୟିକ ଇତିହାସର ଗତିଧାରା' ପ୍ରଭୃତି ପ୍ରବନ୍ଧ ପଠିତ ଓ ଆଲୋଚିତ ହୋଇଥିଲା । ଏହି ସମ୍ମିଳନୀର ଆଦ୍ୟ ଉତ୍ସବରେ କବି ଅନନ୍ତ ପଟ୍ଟନାୟକଙ୍କର 'ଉଦ୍‌ବୋଧନ' ସଙ୍ଗୀତ ସଂସଦର ଆଭିମୁଖ୍ୟକୁ କିପରି ରୂପାୟିତ କରିଥିଲା, ତାହା ଏଠାରେ ପ୍ରଣିଧାନଯୋଗ୍ୟ । କବିଙ୍କର 'ଉଦବୋଧନ' ହେଲା—

"ନବୀନ ଯୁଗର ତରୁଣ ଜାଗ ରେ
ଜାଗ ବନ୍ଧନ-ହରା
ବକ୍ଷ ଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକଧାରା ।
ଛିନ୍ନ ହେଉ ରେ ବଂଧନ ରାଜି
କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉ ରେ ଜାତି ଉପଜାତି
ଖଣ୍ଡିତ ଶତ ଦେଶ ।
ମହାମାନବର ଶଙ୍ଖ ଶବଦେ
ଶମ୍ଭୁ ରେ ଦୁଃଖଜ୍ୱାଳା
ଜାଗ ବନ୍ଧନ କାରା । ୧ ।
ମରଣ ଦୁଆରେ ଚରଣ ଅରପି
ଗାଅ ରେ ଅମର ଗାନ
ପୋଛିଦିଅ ଆଜି ମାନବ ଶିରରୁଁ
ସଂଚିତ ଅପମାନ
ଲଂଘି ବନାନୀ ଶୈଳ ସାଗର
ଦୂରରେ ତମିର କାରା । ୨ ।

ସାହିତ୍ୟ ବିଭାଗରେ ରାମପ୍ରସାଦ ସିଂହ ଏହି ସାଂସ୍କୃତିକ ଆନ୍ଦୋଳନର ମୂଲ୍ୟବୋଧକୁ ବିଶ୍ଳେଷଣ କରି କହିଥିଲେ—"ମାନବକୁ ତାହାର ବର୍ତ୍ତମାନ ଅବସ୍ଥାରୁ ମୁକ୍ତି ପାଇବାକୁ ହେଲେ ଏକ ସ୍ୱାଧୀନ ସାହିତ୍ୟ ସର୍ବାଦୌ ଆବଶ୍ୟକ । ଏ ସାହିତ୍ୟରେ 'ଭଗବାନ' ସହିତ କୌଣସି ସମ୍ପର୍କ ନ ଥିବ, ଧର୍ମ ସହିତ କୌଣସି ସମ୍ବନ୍ଧ ନ ଥିବ । ମନୁଷ୍ୟ ଭାବରେ ମନୁଷ୍ୟର ସମସ୍ୟାକୁ ଧରି ଏହା ଅଗ୍ରସର ହେବ । ଏହିପରି ଏକ ସାହିତ୍ୟ ରୁଷିଆରେ ବର୍ତ୍ତମାନ ସୃଷ୍ଟି ହୋଇଛି । ଓଡ଼ିଆ ସାହିତ୍ୟକୁ ସେହି ଆଦର୍ଶ ଧରିବାକୁ ହେବ ।

ଓଡ଼ିଆ ସାହିତ୍ୟ ବର୍ତ୍ତମାନ ପରମୁଖାପେକ୍ଷୀ—ପରାଙ୍ଗପୁଷ୍ଟ ମଲଙ୍ଗ ପରି । ଏହା ଏକ ବ୍ୟର୍ଥ ଅସ୍ତିତ୍ୱ ଯେପରି ବିରାଜିତ । ଧନୀ, ଜମିଦାର, ରାଜା, ରାଜପୁତ୍ର ଯେପରି ଏହାର ଅଙ୍ଗ ଗଠିତ । ଏ ସାହିତ୍ୟ ଜନସାଧାରଣଙ୍କର ନୁହେ କିବା ଜନସାଧାରଣଙ୍କ ସହିତ ଏହାର କୌଣସି ସମ୍ପର୍କ ନାହିଁ । × × ଏହା ହୋଇପଡ଼ିଛି ଏକ ଦୁର୍ବଳ, ନିର୍ବୀର୍ଯ୍ୟ, ଭୀରୁ ମନୋଭାବପୂର୍ଣ୍ଣ କ୍ଲିଷ୍ଟ କଳ୍ପନାମୟ ସାହିତ୍ୟ । ଏହାର ପ୍ରତି ଛନ୍ଦରେ ନୀଚ ଦ୍ୱିଧାଭାବ ଫୁଟିଉଠିଛି । ଏଥିରେ ଚିନ୍ତାର ସ୍ୱାଧୀନତା ତ ନାହିଁ, କଳ୍ପନାରେ ମଧ୍ୟ ସାହସ ନାହିଁ । ଭାଷାରେ ବଳ ନାହିଁ । ଭାବରେ ଆନ୍ତରିକତା ନାହିଁ । ଏ ସାହିତ୍ୟ ଯେପରି ଜାତିର ଗର୍ବ କରିବାର କିଛି ନାହିଁ, ଏ ସାହିତ୍ୟରେ ଜାତି ଗଠନର କିଛି ସାମଗ୍ରୀ ନାହିଁ ।"

ଏହି ଆଲୋଚନାର ଦୁଇବର୍ଷ ପୂର୍ବରୁ ଶ୍ରୀ ଭଗବତୀ ପାଣିଗ୍ରାହୀ ୧୯୩୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ 'ଯୁଗବାଣୀ' ପତ୍ରିକାରେ 'ମୀମାଂସା' ଶୀର୍ଷକ ଗଳ୍ପ ରଚନା କରି ପ୍ରଗତିଧର୍ମର ଆଭିମୁଖ୍ୟକୁ ପ୍ରକାଶ କରିଥିଲେ ।

ଶ୍ରୀ ପାଣିଗ୍ରାହୀ ଲେଖିଥିଲେ—"ପ୍ରତି କଥାରେ 'ଈଶ୍ୱର' 'ଈଶ୍ୱର' ହୋଇ ଆମ ଦେଶଟା ଉଚ୍ଛନ୍ନ ହେଲା । କିନ୍ତୁ ଈଶ୍ୱରଙ୍କ ସତ୍ତା ତ କେଉଁଠି ଦେଖିବାକୁ ମିଳେ-ନାହିଁ । ସବୁ କାର୍ଯ୍ୟକୁ ବିଶ୍ଳେଷଣ କଲେ ଦେଖାଯିବ ତାର କିଛି ଗୋଟାଏ କାରଣ ଅଛି । ଆଉ ସେ କାରଣ ସହିତ ଈଶ୍ୱରର ଯେ କିଛି ସମ୍ପର୍କ ଥାଇପାରେ, ତାହା ବୁଝିହୁଏ ନାହିଁ ।"

ଏହି ନବ ସଂସ୍କୃତିର ଆବାହନ ଜଣାଇ କବି ମାନସିଂ ଲେଖିଥିଲେ—

"ମାନବର ଦୁଃଖ କଷ୍ଟ ଜଗତର ତ୍ରାସ
କ୍ରମେ କ୍ରମେ ନିଏ ମୋର ଈଶ୍ୱର ବିଶ୍ୱାସ ।"

ଶ୍ରୀ ମାୟାଧର ମାନସିଂ ସଂଶୟବାଦୀ ହୋଇଛନ୍ତି । କିନ୍ତୁ ପ୍ରଗତିଧର୍ମୀ କବି ଅନନ୍ତ ପଟ୍ଟନାୟକଙ୍କ ମନରେ ଏ ସମ୍ପର୍କରେ କୌଣସି ଦ୍ୱନ୍ଦ୍ୱର ସୂଚନା ମିଳେ ନାହିଁ । ସେ ଲେଖିଥିଲେ—

"ଈଶ୍ୱର ସେ ବିଶ୍ୱର କେ ? କି ଯାଏ ଆସେ ତାହାର ସାଥେ
ତାହାର ଲାଗି ଅନ୍ଧଭକ୍ତି ବୁଲୁରେ କାହା ରକ୍ତ ହାତେ ?

× × × ×

ଝଞ୍ଜା ଉଠେ ଆକାଶେ ଯେବେ ବନ୍ୟା ଆସେ ପ୍ରଖରେ ଛୁଟି
ଗୋଟିକ ପରେ ଗୋଟିଏ ଯେବେ ସଉଧ ଶିର ପଡ଼ଇ ଲୁଟି
ପ୍ରେୟସୀ ଏଡ଼ି ପ୍ରେମିକ ଦୁଃଖେ
ଶୁଅଇ ଯେବେ ମୃତ୍ୟୁ ବୁକେ
ପୁତ୍ରହରା ରମଣୀ ଯେବେ ଧରଣୀତଳେ ପଡ଼େରେ ଲୁଟି
ଈଶ୍ୱର ତୋ ମଉଜେ ରହେ ଆସଇ ନାହିଁ ଶିଳାରୁ ଉଠି ।"

୧୯୩୭ ଜୁନ୍ ସଂଖ୍ୟା 'ଆଧୁନିକ' ପତ୍ରିକାରେ ପ୍ରକାଶିତ ବାବାଜି ଯମୁନା ଦାସଙ୍କ ଲିଖିତ "ଜୟ ଭଗବାନ" କବିତା ପାଠ କଲେ ଏହି ଭାବନାରେ ପାଠକ ଅଧିକ ଅନୁପ୍ରାଣିତ ହୁଏ । ସେଥିରେ ଥିଲା :—

"ଭଗବାନ ନାମେ ମୂଢ଼ ଦୁର୍ବଳ ଧନୀନ୍ଦନ ମୂଢ଼ତର
ନାମର ପୀୟୂଷ ପାନକରି ଏଣେ ଦେହମସ୍ତ ଜର୍ଜର ।
ଧନବନ୍ତ ଖଟି ଲହୁ ପାଣି କରି ପେଟ ନ ପୂରଇ ତାର
ଚିରକାଳ ଖାଲି ମୁଣ୍ଡର ଝାଳ ତୁଣ୍ଡେ ମାରିବା ସାର !
ଯୁଗେ ଯୁଗେ ସେ ଯେ ପତିତ ପିଷ୍ଟ ଧରାର ପାତାଳେ ପଡ଼ି
ଅଭାବ କରିଛ ଅନ୍ଧ ବଧିର ମୁଖେ ତେମ୍ଭୁ ହରି ହରି !
ଉପାୟ ଚିନ୍ତା କାହା ଲୋଡ଼ା ଆଉ ଦେବତାରେ ରଖେ ଲୟ
ମୁକତି ବିଧାନ କରୁଥାଅ ତାର ଜୟ ଭଗବାନ ଜୟ ।"

ଥରେ ଲେନିନ୍ ଲେଖିଥିଲେ :—

Notwithstanding all the laws emancipating women, she continues to be a domestic slave, because petty house work crushes, strangles, stultifies and degrades her, chains her to the kitchen and the nursery, and she wastes her labour on barbarously unproductive petty, nerve racking, stultifying and crushing drudgery. The real emancipation of women, real communism, will begin only where and when an all out struggle begins (led by proletariate wielding the state power) against this petty

housekeeping, or rather when its wholesale transformation into a largescale socialist economy begins."
( On the emancipation of women, P. 61 )

ଓଡ଼ିଶାର ସାମାଜିକ ଜୀବନରେ ଏବଂ ସାହିତ୍ୟ ରାଜ୍ୟରେ ନାରୀ ଚରିତ୍ରର ଭୂମିକା ପରୀକ୍ଷା କଲେ ଲେନିନ୍‌ଙ୍କର ମହାନ୍ ବାଣୀର ପ୍ରତିଧ୍ୱନି ଉପଲବ୍ଧି କରାଯାଇଥାଏ । ସେହିପରି ରାଜକନ୍ୟା ନନ୍ଦିକା "ସୁତାରେ ପିତାଙ୍କ ପୂର୍ଣ୍ଣ ଅଧିକାର, ଭଣେ ଯେଉଁ ଶାସ୍ତ୍ର ତାକୁ ନମସ୍କାର" କହିଲେ ସୁଦ୍ଧା ସ୍ୱାଧୀନ ଭାବରେ ପତି ବରଣ କରିବାର ସତ୍ ସାହସ ତା'ର ହୋଇନାହିଁ । ନନ୍ଦକିଶୋରଙ୍କ 'କନକଲତା' ଉପନ୍ୟାସରେ ରାଜେନ୍ଦ୍ର ସନ୍ନ୍ୟାସ ବରଣ କରି ପଲ୍ଲୀପୁନଃପ୍ରତିଷ୍ଠା ହୋଇଛି ସିନା, ଦୁଃଖିନୀ ବିଧବାର ଅଶ୍ରୁମୋଚନ କରିପାରି ନାହିଁ । ମାତ୍ର ୧୯୩୬ ଖ୍ରୀଷ୍ଟାବ୍ଦରେ କାହ୍ନୁଚରଣ 'ନଷ୍ଟନୀଡ଼' ଉପନ୍ୟାସରେ ଦୁଃଖିନୀ ବାଲ୍ୟବିଧବା ହାରାମଣିର ଜୀବନ ବିଶ୍ଳେଷଣ କରି ଘୋଷଣା କରିଛନ୍ତି—"ନାରୀ ପଶୁ ନୁହେଁ । ପଶୁଠାରୁ ହୀନ ନିର୍ଜୀବ ପଦାର୍ଥ ନୁହେଁ । ସେ ଦାସୀ ନୁହେଁ, କେବଳ ସେବା କରି ସହସ୍ର ଯାତନା ସହି ନୀରବ ରହିବା ତାର କର୍ମ ନୁହେ, ତାର ହୃଦୟ ଅଛି, ମନ ଅଛି, ବୁଦ୍ଧି ଯୁକ୍ତି ମଧ୍ୟ ଠିକ୍‌ଏ ଅଛି । ଉପଦେଶ ଦେବାର, ମନ୍ତ୍ରଣା ଦେବାର କ୍ଷମତା ଅଛି, ଶେଷକୁ ପ୍ରତିବାଦ କରିବାର ମଧ୍ୟ ଅଧିକାର ଅଛି ।"

ବାସ୍ତବିକ ସବୁଜ କବି ଅନ୍ନଦାଶଙ୍କରଙ୍କ ଭାଷାରେ ସେହି ମମତାର ସ୍ୱର ଶୁଣିବାକୁ ମିଳିଥିଲା ।

"ଜନନୀ ଭଗିନୀ କନ୍ୟା ପ୍ରାଣପ୍ରିୟା ଜୀବନ-ସଙ୍ଗିନୀ
ଦାସୀ ନୁହ, ଦାସୀ ନୁହ, ନୁହ ତୁମ୍ଭେ ରୁଦ୍ଧ ବିହଙ୍ଗିନୀ
ଉଚ୍ଚ ସ୍ୱରେ କହି ଉଠ, 'ମୁକ୍ତ ମୁହିଁ' ମୁକ୍ତ ମୋ ଜୀବନ
ମୁକ୍ତ ମୋର ପ୍ରେମ ଆଜି, ତମ ପ୍ରେମେ ଲଭିବ ମିଳନ ।"

ସୋଭିଏଟ୍ ରୁଷରେ ମହାମାନବ ଲେନିନ୍‌ଙ୍କ ନେତୃତ୍ୱରେ ଏକ ସମାଜବାଦୀ ସମାଜ ପ୍ରତିଷ୍ଠା କରାଯାଇଛି । ସେଠାରେ ବ୍ୟକ୍ତିଗତ ମାଲିକାନାକୁ ପ୍ରଶ୍ରୟ ଦିଆଯାଇନାହିଁ । ସମାଜରେ ଯାବତୀୟ ଭେଦ ଭାବ ଏବଂ ଶୋଷଣକୁ ଲୋପ କରିବା ପାଇଁ ଉଦ୍ୟମ କରାଯାଇଛି । ଆଜି ପୃଥିବୀର ବିଭିନ୍ନ ଦେଶରେ ସାଧାରଣ ଜନତା ଏହି ସମାଜବାଦୀ ବ୍ୟବସ୍ଥାର ସ୍ୱପ୍ନ ଦେଖୁଛନ୍ତି । ଆଧୁନିକ ଯୁଗର ଓଡ଼ିଆ ସାହିତ୍ୟ ଏବଂ ସାଂସ୍କୃତିକ ଆନ୍ଦୋଳନରେ ଏହି ଆଦର୍ଶର ପ୍ରତିଫଳନ ଅବଶ୍ୟ ହୋଇଅଛି । ଗଳ୍ପ, ଉପନ୍ୟାସ, ନାଟକ, କାବ୍ୟ କବିତାରେ ଏହି ସାମ୍ୟବାଦର ବିଗ୍ରହ ଉଦୟ ହେଲେ ଆପେ ଆପେ ଲେନିନ୍‌ଙ୍କର ମହାନ୍ ବ୍ୟକ୍ତିତ୍ୱ ଏବଂ ତ୍ୟାଗପୂତ ଜୀବନର କାହାଣୀ ସ୍ମରଣ ହୋଇଥାଏ । ତେବେ ଏହି ପ୍ରସଙ୍ଗରେ କାହ୍ନୁଚରଣଙ୍କ 'ଶାସ୍ତି' ଉପନ୍ୟାସର କେତୋଟି

ବାକ୍ୟ ଉଦ୍ଧାର କରି ଆଲୋଚନାର ଉପସଂହାର କରିବ । ଶାସ୍ତି ଉପନ୍ୟାସରେ କାହ୍ନୁଚରଣ ସନେଇ କରିଆରେ ସ୍ୱପ୍ନ ଦେଖିଛନ୍ତି—"ଏଇ ଗ୍ଛଇ ତଳେ ଯିଏ ଯେଉଁଠୁ ଆସି ଆଶ୍ରା ନେବେ, ସମସ୍ତେ ଖାଇବେ ଏଇଠି । ଏ ଘର ସଭିଙ୍କର । ଏଠି ଜାତଭେଦ, ଧର୍ମଭେଦ, ବର୍ଣ୍ଣଭେଦ ରହିବ ନାହିଁ । ସମସ୍ତେ ଦେହରୁ ଝାଳ ନଗାଡ଼ି ପରିଶ୍ରମ କରିବେ । ମା' ଧରିତ୍ରୀର ଗ୍ଛଡ ଚିରି ଖାଦ୍ୟ କାଢ଼ିବେ । ସେ ଖାଦ୍ୟ ସମସ୍ତେ ଖାଇବେ । କେହି କାହାର ଧର୍ମ ଉପରେ, ରୁଚି ଉପରେ ବାଧା ଦେବେ ନାହିଁ । ସମସ୍ତେ ସମସ୍ତଙ୍କୁ ସମ୍ମାନ ଦେଖାଇବେ, ଭଲ ପାଇବେ । ଦୁନିଆର ଲୋକେ ଯାହାକୁ ଘୃଣା କରି, ଗୋଇଠା ମାରି, ଦୂରକୁ ଠେଲି ଦେବେ ସେ ଆସି ଏଇଠି ଆଶ୍ରା ନେବ । ଏଇ କୁଡ଼ିଆ ତଳେ ନୂଆ ଦୁନିଆ ଗଢ଼ିବା ଆମେ ରହିମ୍, ନୂଆ ସମାଜ ଗଢ଼ିବା, ମଣିଷ ସମାଜ ।" × × ×

"ଏ ଘର ହେବ ମଣିଷର, ମୂଲିଆର, ନ ଥିଲାର । ନିଜର ମନ ବୁଝିବାକୁ, ନିଜର ଆନନ୍ଦ ପାଇଁ ଯିଏ ଯାହାର ଦେବତା ଘେନି ବସୁ, କେହି କାହାର ରୁଚିରେ ବାଧା ଦେବେ ନାହିଁ । ଶକ୍ତି ଅନୁଯାୟୀ ସଭିଏଁ କରିବେ କାମ । ଯାହା ଭେଇବେ, ସମସ୍ତେ ବାଣ୍ଟି ଖାଇବେ ।"

# ଯୁଦ୍ଧ-ସମାଜ ଓ ସାହିତ୍ୟ

ଋଗ୍‌ବେଦ ଚତୁର୍ଥ ସୂକ୍ତ ଓ ଅଷ୍ଟମ ବର୍ଗର ଅଷ୍ଟମ ପଦରେ କୁହାଯାଇଛି—

ଅସ୍ୟ ପୀତ୍ୱା ଶତକ୍ରତୋ ଘନୋ ବୃତ୍ରାଣାମଭବଃ
ପ୍ରାବୋ ବାଜେଷୁ ବାଜିନମ୍ ।” ।୮।

ଏହାର ଅର୍ଥ ଏହିପରି ପ୍ରଦତ୍ତ ହୋଇଅଛି । “ଯେମନ୍ତ ଏହି ମୂର୍ତ୍ତିମାନ୍ ସୂର୍ଯ୍ୟଲୋକ ଜଳରସକୁ ପାନ କରି ମେଘର ଅଙ୍ଗରୂପ ଜଳବିନ୍ଦୁମାନଙ୍କୁ ବର୍ଷାଇ ସମସ୍ତ ଓଷଧି ଆଦି ପଦାର୍ଥମାନଙ୍କୁ ପୁଷ୍ଟ କରି ସମସ୍ତଙ୍କୁ ରକ୍ଷା କରୁଅଛି, ତେମନ୍ତ ଅସଂଖ୍ୟ କର୍ମକାରୀ ତୁମ୍ଭେ ଶୂର ବୀରମାନେ ସମସ୍ତ ରୋଗ ଆଉ ଧର୍ମବିରୋଧୀ ଦୁଷ୍ଟ ଶତ୍ରୁମାନଙ୍କୁ ନାଶ କରି ଏହି ଜଗତର ରକ୍ଷାକାରୀ ହୁଅ ଏବଂ ଏହିରୂପେ ଦୁଷ୍ଟମାନଙ୍କ ସଙ୍ଗରେ ଯୁଦ୍ଧରେ ପ୍ରବର୍ତ୍ତିମାନ ଧାର୍ମିକ ଆଉ ଶୂର ବୀର ପୁରୁଷଙ୍କୁ ସର୍ବଦା ଉତ୍ତମ ରୂପେ ରକ୍ଷା କର । ଅର୍ଥାତ୍ ଯେମନ୍ତ ମନୁଷ୍ୟ ଦୁର୍ଜନ ସଙ୍ଗେ ଧର୍ମରୂପକ ଯୁଦ୍ଧ କରି ବିଜୟ ଲାଭ କରେ, ଏବଂ ଅନ୍ୟ ଲୋକର ଜୟଲାଭ ନ ହୁଏ ତେମନ୍ତ ପରମେଶ୍ୱର ଧର୍ମଯୁଦ୍ଧକାରୀ ମନୁଷ୍ୟମାନଙ୍କର ସହାୟ ହୁଅନ୍ତି । ଅନ୍ୟ ଲୋକଙ୍କର ହୁଅନ୍ତି ନାହିଁ ।”

(ଋଗ୍‌ବେଦ ସଂହିତା—୧ମ ଖଣ୍ଡ—ଶ୍ରୀ ରାମଶଙ୍କର ରାୟ—୧୯୦୮ ପୃ ୩୧)

ପୁନଶ୍ଚ ଋଗ୍‌ବେଦର ସପ୍ତମ ସୂକ୍ତ ଦ୍ୱିତୀୟ ଅନୁବାକ ଚତୁର୍ଦ୍ଦଶବର୍ଗରେ ଭଗବାନଙ୍କୁ ପ୍ରାର୍ଥନା କରାଯାଇଛି ଏହିପରି—

ଇନ୍ଦ୍ର ବାଜେଷୁ ନୋଽବ ସହସ୍ରପ୍ରଧନେଷୁ ଚ
ଉଗ୍ର ଉଗ୍ରାଭି ରୂତିଭିଃ ।୪।

ହେ ପରମୈଶ୍ୱର୍ଯ୍ୟଦାତା ଜଗଦୀଶ୍ୱର ! ସବୁ ପ୍ରକାରରେ ଅନନ୍ତ ପରାକ୍ରମବାନ ତୁମେ ଅସଂଖ୍ୟ ଧନ ଓ ଚକ୍ରବର୍ତ୍ତୀ ରାଜ୍ୟଲାଭ ହେତୁକ ମହାଯୁଦ୍ଧ ଓ ସଂଗ୍ରାମରେ ଅସଂଖ୍ୟ ସୁଖପ୍ରଦ ଓ ଉତ୍ତମ ଉତ୍ତମ ପଦାର୍ଥମାନଙ୍କର ପ୍ରାପ୍ତି ତଥା ପଦାର୍ଥମାନଙ୍କର ବିଜ୍ଞାନ ଆଉ ସୁଖ ପ୍ରବେଶଦ୍ୱାରା ଆମ୍ଭମାନଙ୍କୁ ରକ୍ଷାକର । ପରମେଶ୍ୱରଙ୍କ ସ୍ୱଭାବ ଏହି ଯେ ଧାର୍ମିକ ଯୋଦ୍ଧୃପୁରୁଷ ପ୍ରତି କୃପା କରନ୍ତି, ମାତ୍ର ଅଳସ ଲୋକଙ୍କ ପ୍ରତି କରନ୍ତି ନାହିଁ ; ଏଥି ଯେଉଁ ଲୋକ ଜିତେନ୍ଦ୍ରିୟ, ବିଦ୍ୱାନ, ନିରପେକ୍ଷ, ଶରୀର ଆଉ ଆତ୍ମାର ବଳଦ୍ୱାରା ପୁରୁଷାର୍ଥୀ ତଥା ନିରଳସ ହୋଇ ଧର୍ମ ଭାବରେ ବଡ଼ ବଡ଼ ଯୁଦ୍ଧମାନଙ୍କୁ ଜୟ କରି ପ୍ରଜାଙ୍କୁ ନିରନ୍ତର ପାଳନ କରେ ସେ ମହାଭାଗ୍ୟଶାଳୀ ହୋଇ ସୁଖୀ ହୁଏ ।”

(ଋଗ୍‌ବେଦ ସଂହିତା-୧ମ ଖଣ୍ଡ-ଶ୍ରୀ ରାମଶଙ୍କର ରାୟ-୧୯୦୮—ପୃ ୬୧)

ପୃଥିବୀର ପ୍ରାଚୀନତମ ସାହିତ୍ୟ ଭାରତୀୟ ଆର୍ଯ୍ୟମାନଙ୍କର ଆଦିଗ୍ରନ୍ଥ ବେଦରେ ସେ କାଳର ସାମାଜିକ ଜୀବନ ସମ୍ପର୍କରେ ବହୁ ମୂଲ୍ୟବାନ ସୂଚନା ରହିଅଛି । ପ୍ରଥମରୁ ଯେଉଁ ଦୁଇଟି ଶ୍ଳୋକର ଉଦ୍ଧାର କରାଗଲା, ସେଥିରୁ ଜଣାଯାଉଅଛି ଯେ ସାମାଜିକ ଜୀବନରେ ସମର ଅତ୍ୟନ୍ତ ପ୍ରାଧାନ୍ୟ ଲାଭ କରିଥିଲା । ଯୁଦ୍ଧ ବିନା ସେ କାଳର ଜୀବନର ଜୟଯାତ୍ରା କଳ୍ପନା କରାଯାଇ ପାରୁ ନ ଥିଲା । ମନୁଷ୍ୟର ଶରୀର ଏବଂ ଆତ୍ମାର ବଳ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉ ଥିବାରୁ ଆର୍ଯ୍ୟଋଷି ଏହି ପୁରୁଷାର୍ଥୀମାନଙ୍କୁ ଯୁଦ୍ଧରେ ଜୟଲାଭ କରିବା ପାଇଁ ବିଶ୍ୱନିୟନ୍ତାଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରି ଅଛନ୍ତି । ଶୂରବୀରମାନେ ଯେପରି ଦୁଷ୍ଟମାନଙ୍କୁ ନିପାତ କରି ଅତ୍ୟନ୍ତ ସୁଖମୟ ଜୀବନଯାପନ କରିବେ, ସେଥିପାଇଁ ମଧ୍ୟ ଭଗବାନଙ୍କ କୃପା ଭିକ୍ଷା କରାଯାଇଛି । ଏଣୁ ଯୁଗେ ଯୁଗେ ଯୁଦ୍ଧର ଅଭିଯାନ ମାଧ୍ୟମରେ ହିଁ ସାମାଜିକ ପ୍ରଗତିର ପରିକଳ୍ପନା ହୋଇଅଛି ।

ବହୁକାଳ ପର୍ଯ୍ୟନ୍ତ ମନୁଷ୍ୟ ଶିକାରୀ ଏବଂ ଯାଯାବରର ଜୀବନ ଯାପନ କରୁଥିଲା । ଜୀବନର ପ୍ରଧାନ ମୂଲ୍ୟବୋଧ ଥିଲା ରଣ ଓ ମୃଗୟା । ଜୀବନ ସଂଗ୍ରାମ ଥିଲା ଅତ୍ୟନ୍ତ କଠୋର । କ୍ରମେ ମନୁଷ୍ୟ ଔପନିବେଶିକ ଜୀବନକୁ ବରଣ କରିବାକୁ ବାଧ୍ୟ ହେଲା । ଶିକାରୀ ଜୀବନ ପରିତ୍ୟାଗ କରି ସେ ନଗର ନିର୍ମାଣ କରି ଶିଖିଲା ଏବଂ ବିଶାଳ କୃଷି ସଭ୍ୟତାର ଅଧିକାରୀ ହେଲା । ଅଧିକାର ସାବ୍ୟସ୍ତ ପାଇଁ ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ପ୍ରବଳ ସଂଗ୍ରାମ ଆବଶ୍ୟକ ହେଉଥିଲା । ତେଣୁ ଅତୀତର ଏହି ସଂଗ୍ରାମମୁଖୀ ଜୀବନର ପ୍ରତିଚ୍ଛବି ସାହିତ୍ୟରେ ରୂପାୟିତ ହେବା ସ୍ୱାଭାବିକ ।

ପ୍ରାଚୀନ ପଣ୍ଡିତଗଣ ସାହିତ୍ୟ ଶବ୍ଦର ସଂଜ୍ଞା ନିରୂପଣ କରି ସେଥିପାଇଁ କହିଅଛନ୍ତି—"ସହିତୟୋଃ ଶବ୍ଦାର୍ଥୟୋଃ ଭାବଃ ସାହିତ୍ୟମ୍ ।" ଅର୍ଥାତ୍ ଶବ୍ଦ ଓ ଅର୍ଥର ମିଶ୍ରଣଦ୍ୱାରା ଯେଉଁ ଭାବ ଜାତ ହୁଏ, ତାହା ହେଉଛି ସାହିତ୍ୟ । ସାହିତ୍ୟ ଶବ୍ଦର ଆକ୍ଷରିକ ଅଭିବ୍ୟକ୍ତି ହେଲା ମିଳନ । ଏହି ମିଳନ ହେଉଛି ମନୁଷ୍ୟ ସହିତ ସମାଜର, ଅତୀତ ସହିତ ବର୍ତ୍ତମାନର । ସାହିତ୍ୟର ପ୍ରଧାନ ଅବଲମ୍ବନ ହେଲା ଭାଷା । ଭାଷାକୁ ଆଧାର କରି ସାହିତ୍ୟ ପ୍ରକାଶିତ ହୁଏ । ସାମାଜିକ ଜୀବନ ବିନା ଭାଷା ଅସମ୍ଭବ । ସମାଜ ଓ ସାହିତ୍ୟ ସେଥିପାଇଁ ଅତ୍ୟନ୍ତ ନିବିଡ଼ ଭାବରେ ସଂପୃକ୍ତ । ବୋଧହୁଏ ଏହି କାରଣରୁ ପୃଥିବୀର ପ୍ରତ୍ୟେକ ସମାଜରେ ଯେତେ ସାହିତ୍ୟ ଅତୀତରେ ସୃଷ୍ଟି ହୋଇଥିଲା, ତହିଁରେ ସେକାଳ ମଣିଷର ପୁରୁଷକାର ଏବଂ ସାମରିକ ଅଭିଯାନର କାହାଣୀ ପ୍ରଧାନ ଅବଲମ୍ବନ । ପୃଥିବୀର ଚାରିଗୋଟି ମୂଲ୍ୟବାନ ସାହିତ୍ୟ—ରାମାୟଣ, ମହାଭାରତ, ଇଲିଅଡ୍, ଓଡ଼େସୀ ଯୁଦ୍ଧର ଭୂମିକା ଉପରେ ହିଁ ଆଧାରିତ । ଏହି ମହାନ ମହାକାବ୍ୟ କେବଳ ଯୁଦ୍ଧର ଇତିହାସ ନୁହେଁ, ଏଗୁଡ଼ିକରେ ତତ୍କାଳୀନ ସଂଗ୍ରାମଶୀଳ ଜୀବନର ପ୍ରତିକ୍ରିୟା ଏବଂ ଦାର୍ଶନିକ ଅନୁଚିନ୍ତା ଅତ୍ୟନ୍ତ ରସାଳ ଭାବରେ ଚର୍ଚ୍ଚିତ ହୋଇ ସର୍ବ-ଯୁଗମୟୀ ପ୍ରେରଣାର ଉତ୍ସ ହୋଇଅଛି । ମହାଭାରତ ଯୁଦ୍ଧରେ ଭାଇବନ୍ଧୁ ଜ୍ଞାତି ସୋଦରମାନଙ୍କୁ ଯୁଦ୍ଧଭୂମିରେ ଦର୍ଶନ କରି ମହାବୀର ଅର୍ଜ୍ଜୁନ ଯେତେବେଳେ ସଂଗ୍ରାମ-

ବିମୁଖ ହୋଇପଡ଼ିଲେ, ସେତେବେଳେ ତାଙ୍କୁ ଉତ୍ତେଜିତ କରିବା ପାଇଁ ପୃଥିବୀର ମହାନ ସାହିତ୍ୟ ଭଗବତ ଗୀତା ଜନ୍ମଗ୍ରହଣ କଲା । ଏକ ମହାନ ସଂଗ୍ରାମର ଅନୁଲିପି ହିଁ ଶ୍ରୀକୃଷ୍ଣଙ୍କ ମୁଖରେ ଗୀତାତତ୍ତ୍ୱକୁ ବ୍ୟାଖ୍ୟାନ କରିଅଛି ।

ଗୀତାର ଏକାଦଶ ଅଧ୍ୟାୟରେ ଭଗବାନ ଶ୍ରୀକୃଷ୍ଣ କହିଅଛନ୍ତି—

କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ,
ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ ।
ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ,
ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ ।୩୨।
ତସ୍ମାତ୍ ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ
ଜିତ୍ୱା ଶତ୍ରୂନ୍ ଭୁଙ୍କ୍ଷ୍ୱ ରାଜ୍ୟଂ ସମୃଦ୍ଧଂ ।
ମୟୈବୈତେ ନିହତାଃ ପୂର୍ବମେବ
ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ ।୩୩।

ଏଠାରେ ଭଗବାନ କହୁଛନ୍ତି—ସେ ଭୀଷଣ କାଳସ୍ୱରୂପ । ଲୋକଙ୍କୁ ସଂହାର କରିବାପାଇଁ ସେ ଇହଲୋକରେ ପ୍ରବୃତ୍ତ ଅଛନ୍ତି । ତୁମେ ନ ମାରିଲେ ମଧ୍ୟ ଯେଉଁ ଯୋଦ୍ଧାମାନେ ଏବେ ପ୍ରତିପକ୍ଷରେ ବଞ୍ଚି ରହିଅଛନ୍ତି, ସେମାନେ କେହି ରହିବେ ନାହିଁ । ସମସ୍ତଙ୍କର କ୍ଷୟ ଅବଶ୍ୟମ୍ଭାବୀ । ଅତଏବ ଯୁଦ୍ଧରେ ପ୍ରବୃତ୍ତ ହୁଅ । ଯୁଦ୍ଧବିନା ଅନ୍ୟ ଗତି ନାହିଁ । ଦେବତାମାନଙ୍କ ସାହାଯ୍ୟରେ ଅଜେୟ ଶତ୍ରୁମାନଙ୍କୁ ପରାଜିତ କରି ଯଶସ୍ୱୀ ହୁଅ ଏବଂ ଐଶ୍ୱର୍ଯ୍ୟସମ୍ପନ୍ନ ରାଜ୍ୟ ଭୋଗକର । ସମସ୍ତଙ୍କୁ ଭଗବାନ ମାରୁଅଛନ୍ତି । ତୁମେ କେବଳ ନିମିତ୍ତ ହୁଅ । ସ୍ୱର୍ଗତ ସଂସ୍କାରକ ବୈରାଗୀ ଚରଣ ମିଶ୍ର ଉପରୋକ୍ତ ଶ୍ଳୋକ ଦ୍ୱୟର ଏକ ଚମତ୍କାର ବ୍ୟାଖ୍ୟା କରି କହିଅଛନ୍ତି—ଯଶ ଲଭ କର ଓ ସମୃଦ୍ଧ ରାଜ୍ୟ ଭୋଗ କର । ଗୀତାର ଏହି ନୂତନ ଶିକ୍ଷା ବିସ୍ମୟଜନକ ଏବଂ ଜନସାଧାରଣଙ୍କ ଧାରଣାର ସମ୍ପୂର୍ଣ୍ଣ ବିପରୀତ ଅଟେ । ଜନସାଧାରଣଙ୍କର ଧାରଣା ଏହିକି ତ୍ୟାଗ ହିଁ ଧର୍ମ ଏବଂ ଭୋଗ କରିବା ହେଉଛି ଅଧର୍ମ । ଭୋଗ କରିବା କଥାଟିକୁ ଲୋକ ଯେପରି ବୁଝନ୍ତି ଶ୍ରୀକୃଷ୍ଣଙ୍କର ଉପଦେଶର ଅର୍ଥ ତାହା ନୁହେଁ । ଭୋଗ ନ ଥାଇ ଯେ ତ୍ୟାଗ, ତାହା ଯେପରି କେବଳ ଦୁଃଖଦାୟକ ଅଟେ, ତ୍ୟାଗ ନ ଥାଇ ଯେ ଭୋଗ ତାହା ମଧ୍ୟ ସେହିପରି ଦୁଃଖଦାୟକ ଅଟେ । ଭୋଗ ଓ ତ୍ୟାଗ ମଧ୍ୟରେ ସର୍ବଦା ଘନିଷ୍ଠ ସମ୍ବନ୍ଧ ରଖିବା ପ୍ରୟୋଜନ । ଏହି ଉଭୟ ମଧ୍ୟରେ ଭୋଗ ହେଉଛି ପ୍ରଧାନ । ସେଥିପାଇଁ ଶ୍ରୀକୃଷ୍ଣ ବାରମ୍ବାର କହିଅଛନ୍ତି "ଭୋଗକର ଅର୍ଥାତ୍ ସର୍ବଦା କାଜକର ଏକମାତ୍ର ଲକ୍ଷ୍ୟ ସେହି ଆନନ୍ଦ ଭୋଗକର । ମାତ୍ର କର୍ମର ଫଳ ପ୍ରତି ଆସକ୍ତ ନ ରହି ଭୋଗକର । ମମତା ଦୋଷରୁ ମୁକ୍ତ ହୋଇ ପ୍ରତ୍ୟେକ କର୍ମକୁ ସମସ୍ତ ବିଶ୍ୱର କଲ୍ୟାଣ ଅଭିପ୍ରାୟରେ ସମ୍ପନ୍ନ କରି ଭୋଗ କର । ରାଗ ଦ୍ୱେଷରୁ ବିମୁକ୍ତ ହୋଇ ଭୋଗ କର । ଏହାହିଁ ଶ୍ରୀକୃଷ୍ଣଙ୍କର ଉପଦେଶ ।

(ଗୀତା—ବୈରାଗୀ ଚରଣ ମିଶ୍ର—୨ୟ ସଂସ୍କରଣ—ପୃ ୨୦୧)

ଭାରତୀୟ ପରମ୍ପରାରେ ଯୁଦ୍ଧକୁ ଅତ୍ୟନ୍ତ ପବିତ୍ର ଘଟଣା ଭାବରେ ଗ୍ରହଣ କରାଯାଇଛି । ରଣକ୍ଷେତ୍ର ହେଉଛି ପବିତ୍ର ତୀର୍ଥଭୂମି । ଯୁଦ୍ଧରେ ଜୟଲାଭ କଲେ ରାଜ୍ୟଲାଭ ଏବଂ ମୃତ୍ୟୁବରଣ କଲେ ସ୍ୱର୍ଗ ଲାଭ ହୁଏ ବୋଲି କଥିତ ହୋଇଅଛି । ଯେଉଁମାନେ ଯୁଦ୍ଧକୁ ଡରି ଭୀରୁ କାପୁରୁଷ ପରି ଜୀବନ ଧାରଣ କରନ୍ତି, ସେମାନଙ୍କର ଜୀବନ ଅତ୍ୟନ୍ତ ହୀନ ପ୍ରତିପାଦିତ ହୋଇଥାଏ । ସେଥିପାଇଁ ମହାକବି ସେକ୍‌ସପିୟର ଲେଖିଥିଲେ— Cowards die many times before their death. ଭାରତୀୟ ସଂସ୍କୃତିର ମହାନ ପ୍ରବକ୍ତା 'ଭାଗବତ'ର ବାଣୀ ହେଲା—

ମୃତ ପ୍ରାଣୀଙ୍କୁ ନ ସୁମରି
ଏ ଜୀବ ନୁହଇ କାହାରି ।
ବୀର ମରଣ ରିପୁ ମୁଖେ
ଲଭେ ଅକ୍ଷୟ ସ୍ୱର୍ଗ ସୁଖେ ।

ଆଦିମ କାଳରୁ ଶିଳ୍ପବିପ୍ଳବର ଅଭ୍ୟୁତ୍ଥାନ ପର୍ଯ୍ୟନ୍ତ ସମାଜ ଓ ସାହିତ୍ୟରେ ଏହି ବୀରମାନଙ୍କର ଅପୂର୍ବ ସାହସିକତା, ଦେଶପ୍ରେମ ଏବଂ ଆତ୍ମୋତ୍ସର୍ଗର କାହାଣୀ ବର୍ଣ୍ଣିତ ହୋଇଅଛି ଏବଂ ସମାଜରେ ଗଭୀର ପ୍ରେରଣା ସୃଷ୍ଟି କରି ଆସିଅଛି । ଶିଳ୍ପ ଉଦ୍ୟମ ଫଳରେ ଯୁଦ୍ଧର ଗତି ଏବଂ ରୀତିରେ ପରିବର୍ତ୍ତନ ହୋଇଗଲା । ଆଧୁନିକ ଯୁଦ୍ଧରେ ବୀରର ବୀରତ୍ୱ ଅପେକ୍ଷା ଯନ୍ତ୍ରର କାରସାଦି ଅଧିକ ସ୍ୱୀକୃତ ହେଲା । ତେଣୁ ପ୍ରାଚୀନ କାଳର ଯୁଦ୍ଧରେ ବୀରତ୍ୱର ଯେଉଁ ମହିମା କୀର୍ତ୍ତିତ ହୋଇଅଛି, ତାହା ଏ ଯୁଗରେ ସମ୍ପୂର୍ଣ୍ଣ ଅସମ୍ଭବ । ଇଂରେଜୀ ସାହିତ୍ୟରେ 'ନାଇଟ୍' ମାନଙ୍କର ଦୁଃସାହସିକତା ସମ୍ପର୍କୀୟ ବିବରଣୀ ପାଠ କଲେ ଏବେ ମଧ୍ୟ ପାଠକ ଉଦ୍‌ବୁଦ୍ଧ ହୋଇଥାଏ ଭାରତୀୟ ପୁରାଣ ଏବଂ ଇତିହାସରେ ଅସଂଖ୍ୟ ବୀରମାନଙ୍କର ଅଲୌକିକ କାହାଣୀ କେବଳ ରୋମାଞ୍ଚକର ନୁହେଁ, ବିସ୍ମୟ ଉତ୍ପାଦକ ମଧ୍ୟ ।

ମହାଭାରତରେ କଳିଙ୍ଗ ବାହିନୀର ବୀରତ୍ୱ ସମ୍ପର୍କରେ ମହାକବି ବ୍ୟାସଦେବ ଯଥେଷ୍ଟ ପ୍ରଶଂସା କରିଅଛନ୍ତି । କଳିଙ୍ଗ ବାହିନୀର ସାହସିକତା ଏବଂ ରଣକୌଶଳ ଅତୁଳନୀୟ । କଳିଙ୍ଗରାଜା ଶ୍ରୁତାୟୁ ମହାଭାରତ ଯୁଦ୍ଧରେ କୁରୁକ୍ଷେତ୍ରରେ କୌରବମାନଙ୍କ ପକ୍ଷରେ ଯୁଦ୍ଧ କରିଥିଲେ । ସେହି କାଳରୁ ଆରମ୍ଭ କରି ମୁସଲମାନ ରାଜତ୍ୱକାଳ ପର୍ଯ୍ୟନ୍ତ ଓଡ଼ିଶା ଭୂମିରେ ଅସଂଖ୍ୟ ଯୁଦ୍ଧ ହୋଇଅଛି ଏବଂ ଓଡ଼ିଆ ପାଇକ ବିଶାଳ ସାମ୍ରାଜ୍ୟ ଗଠନରେ ବାରମ୍ବାର୍ ସଫଳତା ଅର୍ଜନ କରିଅଛି । ଖାରବେଲଙ୍କ ଦିଗ୍‌ବିଜୟ, ଅଶୋକଙ୍କ ବିଖ୍ୟାତ କଳିଙ୍ଗଯୁଦ୍ଧ ମହାରାଜା, କପିଳେନ୍ଦ୍ରଙ୍କ ଦିଗ୍‌ବିଜୟ ପ୍ରଭୃତି ଘଟଣାବଳୀ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଅଛି । ଏପରି କି ମରହଟ୍ଟା ରାଜତ୍ୱକାଳରେ କ୍ଷୁଦ୍ର ଢେଙ୍କାନାଳ ରାଜ୍ୟ ମରହଟ୍ଟା ବାହିନୀ ବିରୁଦ୍ଧରେ ଯୁଦ୍ଧଘୋଷଣା କରି ଯେଉଁ ସାହସିକତା, ସ୍ୱାଧୀନତା, ପ୍ରେମ ଏବଂ ଦେଶପ୍ରେମର ପରିଚୟ ପ୍ରଦାନ କରିଥିଲା ତାହାର ସାହିତ୍ୟିକ ରୂପାୟନ ହେଉଛି ବ୍ରଜନାଥ ବଡ଼ଜେନାଙ୍କର 'ସମରତରଙ୍ଗ' । ଏହି ଲେଖକ ବ୍ରଜନାଥ ଯୁଦ୍ଧ ପ୍ରତି କାତର ହେଉଥିବା ଲୋକମାନଙ୍କୁ ନିନ୍ଦା କରି ଲେଖିଛନ୍ତି—

ବୋଲି ଅଙ୍ଗରେ କର୍ପୂର ଚନ୍ଦନ
ମଣ୍ଡି ହୋଇଥିବ ଦିବ୍ୟ ରତନ ।
ଘରେ ଥିବ ଶତପତି ସମ୍ପତ୍ତି;
ରକତ ଦେଖି ଲୁଲୁକେ ଯା ଛାତି ।
ସେ ମନୁଷ୍ୟ ସ୍ଥାନ;
ଭୋଗ ନୋହେ ତାର ରୋଗ ସମାନ ।"

ଓଡ଼ିଶା ହେଉଛି ପାଇକମାନଙ୍କର ଦେଶ । ଏହି ଉଡ୍ର ପାଇକମାନଙ୍କ ନାମାନୁସାରେ ଏ ଦେଶର ନାମ ଓଡ଼ିଶା ହୋଇଅଛି । ଏମାନେ ଶାନ୍ତି କାଳରେ ଲଙ୍ଗଳ ଧରି ଶସ୍ୟ ଉତ୍ପାଦନ କରନ୍ତି ଏବଂ ଯୁଦ୍ଧ ସମୟରେ ରଣହୁଙ୍କାର ଦେଇ ପ୍ରାଣବଳି ଦେବାକୁ ଅଗ୍ରସର ହୁଅନ୍ତି । ତେଣୁ ଆମର ପଲ୍ଲୀ ସାହିତ୍ୟରେ 'ଦମର ବୋଲି' 'ପାଏକ ବେଶ' 'ଯୁଦ୍ଧ' ସମ୍ପର୍କରେ ବହୁ ଲୋକଗୀତ ଦେଖିବାକୁ ମିଳେ । ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର 'ଉତ୍କଳ ଗାଉଁଲିଗୀତ' ପୁସ୍ତକରେ ଏହି ବିଷୟରେ ପ୍ରଥମେ ଆଲୋଚନା କରିଥିବା ଜଣାଯାଏ । ସେଥିରୁ ଜଣାଯାଏ ଯେ ସେକାଳର ପାଇକଗଣ ଶିକ୍କୁଲି, ଚକ୍ର, ଚମୁଟା, ଗଦା, ମୁଦୁଗର କୋଦାଳ, ପନଖା, ଭାଲି, ଲୁହା, ଲଙ୍ଗୁର, ଦାଉଲି, ସାବେଳି, ବର୍ଚ୍ଛା, ଖଣ୍ଡା, କଟାରି, ଧନୁଶର, କୁନ୍ତ, ଛେଲି, କାତି, ତରବାରି, ସୁନାଚିର, ଖାମଣା, ପ୍ରଭୃତି ସାହାଯ୍ୟରେ ରଣକୌଶଳ ପ୍ରଦର୍ଶନ କରୁଥିଲେ । ଏ ଦେଶରେ ସର୍ବତ୍ର ଅଖଡ଼ାଶାଳ ଥିଲା, ଏବଂ ସେଠାରେ ଯୁବକମାନେ ଅତ୍ୟନ୍ତ ନିପୁଣତାର ସହିତ ଯୁଦ୍ଧବିଦ୍ୟା ଶିକ୍ଷା କରୁଥିଲେ । ପାଇକମାନଙ୍କର ବେଶଭୂଷା ସମ୍ପର୍କରେ ଗାଉଁଲି ଗୀତରୁ ଏହିପରି ପରିଚୟ ମିଳିଥାଏ—

ଆଡ଼ମେ ଆଡ଼ ବନ୍ଧ କଙ୍କଣ କୌସୁମି
ହେଲେଟି ଧୁମାଧୁମି
ହସ୍ତମେ ରସବାଡ଼ି ଚୈତନ୍ୟ ମୁଦ୍ରିକ
ଗଜମେ ଭୀମ
ଭୁଜମେ ଭୁଜ
ଜାନୁମେ ଜାନୁଘଣ୍ଟି
ବାହାମେ ବାଘ ମୁହିଁ ବାହୁଟି
ପାଦେ ପାମେଖି କୁନ କୁନ ବାଜେ ।
ସିଂହ ମିରଗା କନ୍ଧେ ବିରାଜେ
ଅଖଣ୍ଡ ବିଭୂତି କପୋଳକୁ ସାଜେ
ମଥାମେ ଖୋଲିର ପାଗ କଟୀମେ କଟାରି
ଶିରମେ କଲାଟିପା ସିନ୍ଦୂର ଶିରି ।

ସାହିତ୍ୟ ହେଉଛି ଯୁଗେ ଯୁଗେ ସମାଜର ପ୍ରତିନିଧି । ଓଡ଼ିଆ ସାମରିକ ଜୀବନର ଏହି ବିଚିତ୍ର ଲୀଳା ତାହାର ସାହିତ୍ୟରେ ମଧ୍ୟ ପ୍ରତିଫଳିତ ହୋଇଅଛି । ଓଡ଼ିଆ ସାହିତ୍ୟର

ଆଦିକବି ସାରଳା ଦାସ କିଜେ ଖଣ୍ଡାୟତ କୁଳରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କ କାଳରେ ଉତ୍କଳବାସୀ କପିଳେନ୍ଦ୍ରଙ୍କ ନେତୃତ୍ୱରେ ବହୁ ଗୌରବମୟ ଯୁଦ୍ଧରେ ବ୍ୟାପୃତ ରହିଥିଲେ । ତେଣୁ ତାଙ୍କ ରଚିତ ସାରଳା ମହାଭାରତରେ ସୂର୍ଯ୍ୟବଂଶ ରାଜତ୍ୱ କାଳର ଓଡ଼ିଆ ବୀରତ୍ୱର କାହାଣୀ ପୁରାଣର ଆଖ୍ୟାୟିକା ଛଳରେ ବର୍ଣ୍ଣିତ ହୋଇଅଛି । ଯୁଦ୍ଧରେ କ୍ଷତ୍ରୀୟମାନେ ମୁକ୍ତିଲାଭ କରନ୍ତି ବୋଲି ଭାବନା ବଦ୍ଧମୂଳ ଥିଲା । କବି ଲେଖିଛନ୍ତି—

ପୁଣ୍ୟ ମାସ ମଧ୍ୟେ ମାଘ ସଂସାରେ ପ୍ରସିଦ୍ଧି ।
ଯାଗ ଯଜ୍ଞ ତୀର୍ଥ ଧର୍ମ ମାଘ ମାସ ମଧ୍ୟେ
ଶକ୍ତି ସହେ ଝାସ ଦେବା ଅବା ମାର ଯୁଦ୍ଧେ ।
ମରଲେ ବୈକୁଣ୍ଠ ବାସ ତରଲେ ମଙ୍ଗଳ
ଏହି ମାସେ ସମରକୁ କର ଅନୁକୂଳ । (ଭୀଷ୍ମ ପର୍ବ)

ଏକ ମାଙ୍ଗଳିକ ମୁହୂର୍ତ୍ତରେ ଯୁଦ୍ଧ ଯାତ୍ରାର ଆୟୋଜନ ହେଉଥିଲା । କେଉଁ ଶକୁନଗୁଡ଼ିକ ବୀରମାନଙ୍କ ପକ୍ଷରେ ଅନୁକୂଳ ଥିଲା, ତାର ସବିଶେଷ ବିବରଣୀ ମହାଭାରତରେ ଲିପିବଦ୍ଧ ହୋଇଅଛି ଅର୍ଜୁନ ଯୁଦ୍ଧଯାତ୍ରା କାଳରେ ନିମ୍ନଲିଖିତ ସଙ୍କେତଗୁଡ଼ିକ ଦେଖି ଯୁଦ୍ଧରେ ନିଶ୍ଚୟ ଜୟଲାଭ କରିବେ ବୋଲି ଅନୁଭବ କରିପାରିଥିଲେ—

"ଏମନ୍ତ କାଳେ ଉତ୍ତର ଦିଗେ ହସ୍ତୀ ଛିଙ୍କି
ଶୁଭେ ନାରୀ ଡାକ ଦଧିମଙ୍ଗଳ ତହିଁକି ।
ବାମରେ ଯୋଗିନୀ ଆଗ୍ନେୟ କୋଣେ କଲେ ସ୍ଥିତି
ଈଶାନେ ଉଦୟ ହେଲେ ମହାଲକ୍ଷ୍ମୀ ମୂର୍ତ୍ତି ।
ଶ୍ରୀୟା ନାମରେ ବିଖ୍ୟାତ ଏକ ଗୋପାଙ୍ଗଣୀ
ସମ୍ମୁଖରେ ଡାକିଲା ଆସି ଦଧିଭାଣ୍ଡ ଘେନି ।
ଯମୁନା ନଦୀ ମଧ୍ୟରୁ ଡେଇଁ ମାଛ ଏକ
ସମ୍ମୁଖରେ ପଡ଼ିଲା ଯାଇ ଦେଖିଲେ ପ୍ରତ୍ୟକ୍ଷ ।
ଶଙ୍ଖଚିଲ ଡାକଇଏ ପଶ୍ଚିମ ମୂରତି
ଭଦଭଦଳିଆ ପକ୍ଷୀ ରମ୍ଭାବୃକ୍ଷେ ସ୍ଥିତି ।
ସର୍ବ ଅନୁକୂଳ ହିନୁ ଆଗେ ହୁଏ ଦୃଷ୍ଟି
ଅଦ୍ଭୁତେ ଆକାଶରୁ ହେଲା ପୁଷ୍ପ ବୃଷ୍ଟି ।

× × ×

ଅମୃତବେଳେ ମାହେନ୍ଦ୍ର ଯୋଗକୁ ସେ ଘେନି
ନନ୍ଦିଘୋଷ ରଥରେ ବିଜୟ ଫାଲଗୁନି ।

(ଭୀଷ୍ମ ପର୍ବ)

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଆଦରସର ପ୍ରାଧାନ୍ୟ ଥିଲେ ହେଁ ଆଲଙ୍କାରିକ-ମାନଙ୍କ ନୀତି ନିର୍ଦ୍ଦେଶକୁ ଅନୁସରଣ କରି କବିମାନେ କାବ୍ୟର ନାୟକମାନଙ୍କୁ ବୀର ପୁରୁଷ ରୂପରେ ଚିତ୍ରଣ କରିଛନ୍ତି । ତେବେ ସୂର୍ଯ୍ୟବଂଶ ରାଜତ୍ୱ କାଳରି ସାହିତ୍ୟରେ ପୁରାଣର ବର୍ଣ୍ଣନା ମାଧ୍ୟମରେ କେବଳ ସମର ପ୍ରସଙ୍ଗ ନୁହେଁ, ତହିଁରେ ସମାଜର ଯେଉଁ ଜୀବନ-ଜିଜ୍ଞାସା ଏବଂ ବୈପ୍ଳବିକ ଅନୁଚିନ୍ତା ପ୍ରକଟିତ ହୋଇଅଛି, ତାହା ପରବର୍ତ୍ତୀ କାବ୍ୟଯୁଗର ସାହିତ୍ୟରେ ଦୁର୍ଲ୍ଲଭ କହିଲେ ଚଳେ । ଏ ଯୁଗର ବିଶାଳ ସାହିତ୍ୟରେ ସମ୍ଭୋଗ ଶୃଙ୍ଗାରର ସୀମାତୀତ ବର୍ଣ୍ଣନାବିଳାସ ଲକ୍ଷ୍ୟ କରି ଅତି ସହଜରେ ତତ୍କାଳୀନ ସାମାଜିକ ଜୀବନର ଅବସାଦ ଏବଂ ଉଚ୍ଛୃଙ୍ଖଳତାକୁ ଅନୁମାନ କରାଯାଇ ପାରିବ । ବାସ୍ତବିକ ତାହା ଥିଲା ଏକ ପରାଧୀନ କାଳର ସାହିତ୍ୟ । ଓଡ଼ିଆ ଜାତିସ୍ୱ ଜୀବନ ଏହି ସମୟରେ ଏକପ୍ରକାର ସଙ୍କୁଚିତ ହୋଇ ଯାଉଥିଲା । ତେବେ ପରାଧୀନ ଜୀବନର ନିରଳସ ଯାତ୍ରାପଥରେ ବେଳେବେଳେ ଯେଉଁ ଉନ୍ମାଦନା ଏବଂ ଅବିଚାର ବିରୁଦ୍ଧରେ ବିଦ୍ରୋହ ପ୍ରକାଶିତ ହୋଇଥିଲା, ତାହାର ସାହିତ୍ୟିକ ରୂପାୟନ ହେଉଛି ସମରତରଙ୍ଗ, ମହାଯାତ୍ରା ପ୍ରଭୃତି ଅଳ୍ପ କେତୋଟି ଉଜ୍ଜ୍ୱଳ ସୃଷ୍ଟି ।

ଏହି କାରଣରୁ ଯୁଦ୍ଧ ଓ ସମାଜ ଏବଂ ସମାଜ ଓ ସାହିତ୍ୟର ସମ୍ପର୍କ ଅତ୍ୟନ୍ତ ନିବିଡ଼ । ଯୁଦ୍ଧ ଚିରକାଳ ଥିଲା ଏବଂ ରହିବ । ସାମାଜିକ ପ୍ରଗତିକୁ ପରିପୁଷ୍ଟ ଏବଂ ପ୍ରାଣବନ୍ତ କରିବା ପାଇଁ ଯୁଦ୍ଧ ଏକାନ୍ତ ଭାବେ ଦାୟୀ । ତେବେ ଅତୀତରେ ଯୁଦ୍ଧ ଥିଲା ବ୍ୟକ୍ତି ଓ ସମାଜ ପକ୍ଷରେ ଏକ ପ୍ରେରଣାର ଉତ୍ସ । ଉନ୍ମାଦନା, ଦେଶପ୍ରେମ, ଆତ୍ମତ୍ୟାଗ, ସତ୍ୟନିଷ୍ଠା, ଧର୍ମାନୁମୋଦିତ ଆଚାର ବିଚାର ଯୁଦ୍ଧର ଥିଲା ମୁଖ୍ୟ ପ୍ରାଣଧର୍ମ । ଆଧୁନିକ ଯୁଗର ଯୁଦ୍ଧରେ ମନୁଷ୍ୟ ପରିବର୍ତ୍ତେ ଯନ୍ତ୍ରର ଭୂମିକା ଅଧିକ ସ୍ୱୀକୃତ ହେଉଥିବାରୁ ସାହିତ୍ୟ ଅଥବା ସମାଜରେ ଯୁଦ୍ଧର ସେ ଅନୁପ୍ରେରଣା ନାହିଁ । ଯୁଦ୍ଧ ଆଜି ଏକ ଦୁଃସ୍ୱପ୍ନରେ ପରିଣତ ହୋଇଅଛି । ଅତୀତରେ ଯେତେ ଯୁଦ୍ଧ ହୋଇଅଛି, ପ୍ରତ୍ୟେକରେ ଅସୁର ବିରୁଦ୍ଧରେ ଦେବତାର, ଅସତ୍ୟ ବିରୁଦ୍ଧରେ ସତ୍ୟଧର୍ମର ଜୟଜୟକାର ବିଘୋଷିତ ହୋଇଅଛି । ମାତ୍ର ଆଧୁନିକ ଯୁଦ୍ଧରେ କେବଳ ଅସୁର ଶକ୍ତିର ପ୍ରାଧାନ୍ୟ ସ୍ୱୀକୃତ ହୋଇଅଛି । ତେଣୁ ଆଧୁନିକ ସାହିତ୍ୟରେ ସାମ୍ପ୍ରତିକ ଯୁଗର ଯୁଦ୍ଧର ପ୍ରତିକ୍ରିୟା ପ୍ରତିଫଳିତ ଏବଂ ବିଶ୍ଳେଷିତ ହେବା ସ୍ୱାଭାବିକ । ମାତ୍ର ସାହିତ୍ୟରେ ଯୁଦ୍ଧର ସେହି ନୈତିକ ପ୍ରେରଣା ଅଥବା ଆଲୋଡ଼ନ-ଧର୍ମୀ ବିଚାର ଆଉ ସମ୍ଭବ ନୁହେଁ ।

# ଓଡ଼ିଆ ଗୀତନାଟ୍ୟ ଓ ଯାତ୍ରା

## ଓଡ଼ିଶାରେ ପ୍ରଥମ ନାଟକ ଅଭିନୟ—

ଆଲୋଚକମାନଙ୍କ ମତରେ 'କାଞ୍ଚିକାବେରୀ'ର ଲେଖକ ରାମଶଙ୍କର ରାୟ ଓଡ଼ିଆ ନାଟ୍ୟସାହିତ୍ୟର ପିତା । ସେ ପ୍ରଥମ ନାଟ୍ୟକାର ନ ହେଲେ ହେଁ ତାଙ୍କ ରଚିତ 'କାଞ୍ଚି କାବେରୀ' ଓଡ଼ିଆ ଭାଷାରେ ପ୍ରଥମ ନାଟକର ସମ୍ମାନ ଲାଭ କରିଅଛି । ଏହି ନାଟକର ପ୍ରସ୍ତାବନାରେ ନଟ ମୁଖରେ ଲେଖକ କୁହାଇଛନ୍ତି—''ବନ୍ଧୁବର ! ଆମ୍ଭେ କହିଥିଲୁ ସତ୍ୟ, ତାହା ଓଡ଼ିଆରେ ପ୍ରଥମ ନାଟକ । ଓଡ଼ିଆ ଭାଷା ଏ ପର୍ଯ୍ୟନ୍ତ ସୁଦ୍ଧା ନାଟକୋଚିତ ରୂପେ ମାର୍ଜିତ ହୋଇଛି କି ନା ତାହା ଜଣା ନାହିଁ । ତୁମ୍ଭେ ଏତେ ଶୀଘ୍ର ମୋ ନାଟକର ଅଭିନୟ ଦେଖାଇବାକୁ କିପରି ସାହସ କଲ ?'' ୧୮୮୧ ସାଲରେ ଏହି ନାଟକଟି ପ୍ରଥମେ ଅଭିନୀତ ହୋଇଥିଲା । ରାମଶଙ୍କରଙ୍କ ପୂର୍ବରୁ ଓଡ଼ିଆ ନାଟକ ନ ଥିଲା କହିଲେ ଚଳେ । ଅବଶ୍ୟ ଏ ଦେଶରେ ସଂସ୍କୃତନାଟକ ଅଭିନୟର ପରମ୍ପରା ଥିଲା । ମାତ୍ର ରାମଶଙ୍କରଙ୍କ ଅବ୍ୟବହିତ ପୂର୍ବରୁ ଯେଉଁ କେତେଖଣ୍ଡି ପୁସ୍ତକ ନାଟକ ନାମରେ ପ୍ରକାଶିତ ହୋଇଛି ତାହା ଖାଣ୍ଟି ନାଟକ ଭାବରେ ସ୍ୱୀକୃତ ହେବାରେ ସନ୍ଦେହ ଅଛି । ଅଧ୍ୟାପକ କାହ୍ନୁଚରଣ ମିଶ୍ର ତାଙ୍କ ''ସାହିତ୍ୟ ସମୀକ୍ଷା'' ପୁସ୍ତକରେ 'ପଦ୍ମାବତୀ ହରଣ'କୁ ପ୍ରଥମ ଓଡ଼ିଆ ନାଟକ ବୋଲି ମତବ୍ୟକ୍ତ କରିଛନ୍ତି । ଏହି ନାଟକର ଲେଖକ ଢେଙ୍କାନାଳର ପିଠଉପସ୍ଥି ଖଡ଼ଗପ୍ରସାଦ । ନାଟକଟି ୧୮୭୪ ମସିହାରେ ରଚିତ ଓ ଅଭିନୀତ ହେବାର ପ୍ରମାଣ ମିଳିଅଛି । (୧) ଅଧ୍ୟାପକ ମିଶ୍ର କେବଳ ଅନୁମାନ କରି 'ପଦ୍ମାବତୀ ହରଣ'କୁ ନାଟକ ଆଖ୍ୟା ଦେଇଅଛନ୍ତି । ତାହା ନ ହେଲେ ଏହି ଘଟଣାର ଅଳ୍ପକାଳ ପରେ ସେ କାଳର ବିଖ୍ୟାତ ସାପ୍ତାହିକ ପତ୍ରିକା ''ବାଲେଶ୍ୱର ସମ୍ବାଦ ବାହିକା'', 'ଗୋପୀନାଥ ବଲ୍ଲଭ ନାଟକ'କୁ ପ୍ରଥମ ନାଟକ ବୋଲି କହି ନ ଥାନ୍ତେ । 'ବାବାଜୀ' ନାଟକର ଆଲୋଚନା ପ୍ରସଙ୍ଗରେ ଜନୈକ ପତ୍ରପ୍ରେରକ ଲେଖିଥିଲେ—'ଉତ୍କଳରେ ନାଟକର ନାମ ନ ଥିଲା । ବାବାଜୀ ନାଟକ ବାହାରିବାରୁ ନାଟକର ଚର୍ଚ୍ଚା ଲାଗିଲା, × × × ଆମ୍ଭେ ବାବାଜୀ ନାଟକକୁ ସର୍ବାଙ୍ଗସୁନ୍ଦର ନାଟକ ସ୍ୱରୂପ ଘେନି ନାହୁଁ କିମ୍ବା ଏପରି ଆଶା କରାଯାଇ ନ ପାରେ । କୌଣସି ଦେଶରେ କୌଣସି ଭାଷାରେ ପ୍ରଥମତଃ ସର୍ବାଙ୍ଗ ସୁନ୍ଦର ନାଟକ ବାହାରି ନାହିଁ × × × ବାବାଜୀ ନାଟକ ଉତ୍କଳରେ ନାଟକର ବାଟ

୧ । ସାହିତ୍ୟ ସମୀକ୍ଷା (୧୯୫୯)—ପୃ ୭୧-୭୨

ଅଛେ ।” (୨) ଏହି ସମ୍ପର୍କରେ “ଉତ୍କଳଦୀପିକା”ର ମତ ଉଦ୍ଧାର କରି କୁହାଯାଇଛି ଯେ ନାଟକ ଲେଖିବାର ପ୍ରକୃତ ସମୟ ଓଡ଼ିଶାରେ ଉପସ୍ଥିତ ହୋଇ ନ ଥିବା ସତ୍ତ୍ୱେ ବାବାଜୀ ନାଟକର ପ୍ରଣେତା ଯେ ସାହସ ଉପରେ ନିର୍ଭର କରି ନାଟକ ଲେଖି, ନାଟକ ଲେଖିବାର ବାଟ ଦେଖାଇ ଅଛନ୍ତି, ଏଥିରେ ସେ ଧନ୍ୟବାଦର ପାତ୍ର । ତେବେ “ଗୋପୀନାଥବଲ୍ଲଭ ନାଟକ” ଅପେକ୍ଷା ବାବାଜୀ ନାଟକ ଉତ୍କୃଷ୍ଟ ଅଟେ । (୩) ଏ ତ ଗଲା ପ୍ରଥମ ଓଡ଼ିଆ ନାଟକର କଥା । ଓଡ଼ିଶାରେ ପ୍ରଥମେ କେବେ ନାଟକ ଅଭିନୟ ପ୍ରଦର୍ଶିତ ହୋଇଥିଲା, ସେଥିରେ ମଧ୍ୟ ମତଦ୍ୱୈଧ ଅଛି । ଅଧ୍ୟାପକ ମିଶ୍ର “ପଦ୍ମାବତୀ ହରଣ” ନାଟକ ପୁରୀର ରାଜା ରାମଚନ୍ଦ୍ର ଦେବ (୧୮୧୭—୧୮୫୬)ଙ୍କ ସମୟରେ ଅଭିନୀତ ହୋଇଥିଲା ବୋଲି ମତ ବ୍ୟକ୍ତ କରିଛନ୍ତି । ଏହାକୁ ନାଟକ ଭାବରେ ଗ୍ରହଣ କରିଥିଲେ ୧୮୭୮ ସାଲରେ ବଙ୍ଗଳା ନାଟକର ଅଭିନୟକୁ ଲକ୍ଷ୍ୟ କରି ତାହା ଓଡ଼ିଶାର ପ୍ରଥମ ନାଟକ ଅଭିନୟ ବୋଲି ମତପ୍ରକାଶ କରାଯାଇ ନ ଥାନ୍ତା । ସେ କାଳରେ କଟକର ବିଖ୍ୟାତ ବାବୁ ଗୋପାଳଚନ୍ଦ୍ର ଘୋଷଙ୍କ ବୈଠକଖାନାରେ ସରସ୍ୱତୀ ପୂଜା ଉପଲକ୍ଷେ 'ରାମାଭିଷେକ' ନାଟକର ଅଭିନୟ ପ୍ରଦର୍ଶିତ ହୋଇଥିଲା । ପ୍ରଧାନତଃ ଶିକ୍ଷିତ ଭଦ୍ରବ୍ୟକ୍ତି ଏହି ନାଟକର ଅଭିନୟରେ ଅଂଶଗ୍ରହଣ କରିଥିଲେ । ଏହି ଘଟଣାର କିଛିକାଳ ପୂର୍ବରୁ ବାଲେଶ୍ୱର ଓ କଟକର ପାଦ୍ରୀମାନଙ୍କ ଯତ୍ନରେ କେତେକ ଥର ନାଟକାଭିନୟ କେବଳ ନାମକୁ ମାତ୍ର କରାଯାଇଥିଲା । ପ୍ରକୃତ ପକ୍ଷେ 'ରାମାଭିଷେକ' ହିଁ ଓଡ଼ିଶାରେ ପ୍ରଥମ ନାଟକ ଭାବରେ ଅଭିନୀତ । (୪ ଓଡ଼ିଆ ନାଟ୍ୟସାହିତ୍ୟର ପିତା ରାମଶଙ୍କର ଏହି ବଙ୍ଗଳା ନାଟକର ଅଭିନୟ ଦେଖି ତନ୍ମୟ ହେବା ସଙ୍ଗେ ସଙ୍ଗେ ଓଡ଼ିଆରେ ନାଟକର ଅଭାବ ଦୃଷ୍ଟେ ବଙ୍ଗଳା ନାଟକ ଅଭିନୀତ ହେଲା ବୋଲି ଦୁଃଖିତ ହୋଇଥିଲେ । ଏହି ଘଟଣାର ପ୍ରତିକ୍ରିୟା ହିଁ ତାହାଙ୍କୁ ଓଡ଼ିଆ ନାଟକ ଲେଖାରେ ବ୍ରତୀ କରାଇଥିଲା । (୫

**ଓଡ଼ିଆ ନାଟକ ସୃଷ୍ଟିରେ ପ୍ରତିକୂଳ ଅବସ୍ଥା—**

ରାମଶଙ୍କର ରାୟ ନାଟକ ରଚନା କରିବାପାଇଁ ତତ୍କାଳୀନ କୋଟପଦାର ମହାନ୍ତଙ୍କ ଠାରୁ ଯଥେଷ୍ଟ ପ୍ରେରଣା ଲାଭ କରିଥିଲେ । ସ୍ଥାୟୀ ରଙ୍ଗମଞ୍ଚର ଅଭାବରେ ଦୃଶ୍ୟକାବ୍ୟ ଲିଖିତ ହେବା ସମ୍ଭବ ନୁହେଁ । ବହୁ କାଳ ପର୍ଯ୍ୟନ୍ତ ସ୍ଥାୟୀ ରଙ୍ଗମଞ୍ଚର ଅଭାବରେ ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶ ସ୍ତିମିତ ହୋଇଗଲା । ତେଣୁ ସେ କାଳରେ ଓଡ଼ିଶାର ରାଜା ମହାରାଜା, ଧନୀ ଜମିଦାର ନିଜର ଉତ୍ସବ ଉଦ୍ଦେଶ୍ୟରେ କଲିକତାରୁ ବଙ୍ଗଳା ଥିଏଟରଦଳକୁ ନିମନ୍ତ୍ରଣ କରୁଥିବାର ପ୍ରମାଣ ମିଳେ । ଢେଙ୍କାନାଳର ନାବାଳକ

୨ । 'ସମ୍ବାଦ ବାହିକା'—୭।୨।୭୮ (ପୃ ୨୪)
୩ । ଏକନ
୪ । ସମ୍ବାଦ ବାହିକା—୧୪।୨।୧୮୭୮ (ପୃ ୨୭)
୫ । ରାମଶଙ୍କର ଗ୍ରନ୍ଥାବଳୀ—୧୯୩୦—ପ୍ରସ୍ତାବନା

ରାଜା ସୁରପ୍ରତାପ ବାହାଦୁରଙ୍କ ବ୍ରତୋପନୟନ ଉପଲକ୍ଷେ କଲିକତାରୁ ଥିଏଟରଦଳ ଆସି ଅଭିନୟ ପ୍ରଦର୍ଶନ କରିଥିଲେ । (୬) ଏହି ସମୟରେ ବାଲେଶ୍ୱରଠାରେ ନାସନେଲ ଥିଏଟର ଦଳ ଗଠିତ ହୋଇଥିଲା । ଏମାନଙ୍କ ଦ୍ୱାରା ପ୍ରଥମ କରି ପର୍ମିଟ୍ ପଡ଼ିଆରେ ବଙ୍ଗଭାଷାରେ 'ପାପର ପରିଣାମ ନାଟକ ଅଭିନୀତ ହୋଇଥିଲା । (୭) ଦୁଃଖର କଥା ଯେ ସେକାଳରେ ଓଡ଼ିଆ ନାଟକର ଆଦର ନ ଥିଲା । ବଙ୍ଗଳା ନାଟକର ଅଭିନୟ ପାଇଁ ଶିକ୍ଷିତ ଓ ସଭ୍ରାନ୍ତ ଲୋକେ ଆଗ୍ରହ ପ୍ରକାଶ କରୁଥିଲେ । ଏପରିକି ଯେଉଁ କେତେଗୋଟି ଓଡ଼ିଆ ନାଟକ ନାମରେ ପ୍ରକାଶିତ ଓ ଅଭିନୀତ ହେଉଥିଲା, ତାହା ମଧ୍ୟ ବଙ୍ଗଳା ନାଟକ ଦ୍ୱାରା କମ୍ ପ୍ରଭାବିତ ହେଉ ନ ଥିଲା । 'କାଞ୍ଚିକାବେରୀ' ନାଟକ ରଚନାର କୋଡ଼ିଏ ବର୍ଷ ପରେ ମଧ୍ୟ ଓଡ଼ିଆ ନାଟକରେ ବଙ୍ଗଳା ଗୀତ ସଂଯୋଜନା ହୋଇ ଅଭିନୀତ ହେଉଥିବାରୁ ବିଶିଷ୍ଟ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜ କ୍ଷୁବ୍ଧ ହୋଇ ଏକ ଲେଖା ପ୍ରକାଶ କରିଥିଲେ । (୮) ସେ ଲେଖିଥିଲେ ଯେ ଦୀର୍ଘ ପନ୍ଦରବର୍ଷଧରି କୋଠପଦାର ସ୍ଥାୟୀ ରଙ୍ଗମଞ୍ଚ ଓଡ଼ିଶାର ଏକମାତ୍ର ଓଡ଼ିଆ ଥିଏଟର । ନାନା ଘାତ ପ୍ରତିଘାତ ମଧ୍ୟରେ ମହାନ୍ତ ରଘୁନାଥ ପୁରୀ ଏହି ରଙ୍ଗମଞ୍ଚକୁ ବଞ୍ଚାଇ ରଖିଥିଲେ ଏବଂ ଓଡ଼ିଆ ନାଟକ ଅଭିନୟ ପାଇଁ ଉତ୍ସାହ ପ୍ରଦାନ କରୁଥିଲେ । କିନ୍ତୁ ବେଳେ ବେଳେ ଓଡ଼ିଆ ନାଟକର ଅଭାବରେ ସେ ମଧ୍ୟ ବଙ୍ଗଳା ନାଟକର ଅନୁବାଦ କରି ଅଭିନୟ କରିବାକୁ ବାଧ୍ୟ ହେଉଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ମଧ୍ୟ ଏ ଦୁଃଖ ଦୂର ହୋଇ ନ ଥିଲା । (୯) ପୁନଶ୍ଚ ବାଲେଶ୍ୱର ସହରରେ ଗୋଟିଏ ନାଟ୍ୟଶାଳା ସ୍ଥାପିତ ହୋଇଥିଲା । ଏହାର ୪/୫ ବର୍ଷର କାର୍ଯ୍ୟକାଳ ମଧ୍ୟରେ କେବଳ ବଙ୍ଗଳା ନାଟକ ଅଭିନୀତ ହେଉଥିଲା ଏବଂ ବଙ୍ଗ ଦେଶର ଓସ୍ତାଦ ଏହି ନାଟ୍ୟଶାଳାକୁ ପରିଚାଳନା କରୁଥିଲେ । ଏଠାରେ 'ନବସମ୍ବାଦ' ଦୁଃଖିତ ହୋଇ ଓଡ଼ିଆ ନାଟକର ପ୍ରଚାର ପାଇଁ ଧ୍ୟାନ ଦେବାକୁ ଆବେଦନ କରିଥିଲେ—ଆମ୍ଭେମାନେ ଆଶାକରୁ ଉତ୍କଳ ଭାଷାରେ ଯେଉଁ ୫ । ୭ । ୧୦ ଖଣ୍ଡ ନାଟକ ମୁଦ୍ରିତ ଏବଂ ପ୍ରକାଶିତ ହୋଇଅଛି ସେଗୁଡ଼ିକ ଏଠା ନାଟ୍ୟଶାଳାରେ ଅଭିନୀତ ହେଲେ ଉତ୍କଳ ଭାଷାର ଏବଂ ଉତ୍କଳର ଗୌରବ ବୃଦ୍ଧି ହୁଅନ୍ତା × × × । ଈଦୃଶ ଅବସ୍ଥାରେ ଆପଣା ଭାଷା ଆପଣା ଦେଶର ମୁଖ ଉଜ୍ଜ୍ୱଳ କରିବା ଯେବେ ଉତ୍କଳୀୟମାନେ ନ୍ୟାଯ୍ୟ ଏବଂ ବିଚାରସଙ୍ଗତ ମନେ କରିବେ, ତେବେ ଓଡ଼ିଆ ନାଟକ ଯାହାକି ମୁଦ୍ରିତ ହୋଇଅଛି, ସେଥିରେ ଅଭିନୟ କରି ଓ କରାଇ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର ହେବେ । (୧୦) ମୋଟ ଉପରେ ଓଡ଼ିଆ ଭାଷାରେ ମୌଳିକ ଓ

---

୬ । ଓଡ଼ିଆ ଓ ନବ ସମ୍ବାଦ—୧୩।୪।୯୮

୭ । ଓଡ଼ିଆ ଓ ନବ ସମ୍ବାଦ—୪।୧।୯୯

୮ । ଓଡ଼ିଆ ଓ ନବ ସମ୍ବାଦ—୨୧।୨।୧୯୦୦

୯ । ଉତ୍କଳ ସାହିତ୍ୟ ୧୯୦୩-ଷଷ୍ଠଭାଗ ୧୨ଶ ସଂଖ୍ୟା ପୃ ୬୮୨

୧୦ । ଓଡ଼ିଆ ଓ ନବ ସମ୍ବାଦ—୬।୧।୧୯୦୯

ବଳିଷ୍ଠ ନାଟ୍ୟ ସାହିତ୍ୟର ସୃଷ୍ଟିପାଇଁ ବହୁକାଳ ପର୍ଯ୍ୟନ୍ତ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇପାରି ନ ଥିଲା ।

**ଓଡ଼ିଆ ନାଟକର ପୂର୍ବାବସ୍ଥା—**

ଆଲୋଚନାରୁ ଜଣାଯାଉଛି ଯେ ଓଡ଼ିଆ ନାଟକର ସୃଷ୍ଟି ଅଧିକକାଳର ନୁହେଁ । ତେବେ ନାଟକର ଅଭାବରେ ଏ ଦେଶର ଜନସାଧାରଣ ସେମାନଙ୍କର ମନୋରଞ୍ଜନ ଉଦ୍ଦେଶ୍ୟରେ ଅବଶ୍ୟ କୌଣସି ଉପାୟ ଆବିଷ୍କାର କରିଥିଲେ । ସଭ୍ୟ ସମାଜ କଥା ଛାଡ଼ିଦେଲେ ବି ଯେଉଁମାନେ ବଣ ଜଙ୍ଗଲରେ ଅସଭ୍ୟ ବର୍ବର ଭାବରେ ଜୀବନଯାପନ କରନ୍ତି, ସେମାନଙ୍କ ମଧ୍ୟରେ ଅବସର ବିନୋଦନ ପାଇଁ ନାନାପ୍ରକାର ନୃତ୍ୟ, ବାଦ୍ୟ ଓ ଅଭିନୟର ପ୍ରଚଳନ ଅଛି । ଯେ କାଳରେ ଜୀବନ ଥିଲା ସରଳ ଏବଂ ନିରାଡ଼ମ୍ବର । ଲୋକେ ଅବସର କାଳରେ ନାନାପ୍ରକାର ସଙ୍ଗୀତାନୁଷ୍ଠାନ କରି ଆମୋଦିତ ହେଉଥିଲେ । ନାଟକ ରଚିତ ହେବା ପୂର୍ବରୁ ପୃଥିବୀର ପ୍ରତ୍ୟେକ ଜାତି ଏଭଳି ଉପାୟ ଉଦ୍ଭାବନ କରିଥିଲେ । ତେଣୁ ପ୍ରଥମ କାଳର ନାଟକଗୁଡ଼ିକ କେବଳ ସଙ୍ଗୀତମୟ ହେବା ସ୍ୱାଭାବିକ । କେବଳ ଭାରତୀୟ ନୁହେଁ ଇଂରେଜୀ ସାହିତ୍ୟର ପ୍ରାଚୀନ ନାଟକ ମଧ୍ୟ ପଦ୍ୟାତ୍ମିକା । "The conventional form of early drama was prevailing poetic" (୧୧) କେବଳ ସେତିକି ନୁହେଁ, ସେକାଳରେ ସମାଜର ଆଧ୍ୟାତ୍ମିକତାର ପ୍ରଭାବ ଯଥେଷ୍ଟ ଅନୁଭୂତ ହେଉଥିଲା । ଧର୍ମମନ୍ଦିରରେ ନାନା ଉତ୍ସବ ଉଦ୍ଦେଶ୍ୟରେ ଅଭିନୟ ପ୍ରଦର୍ଶିତ ହେଉଥିଲା । ତେଣୁ ସେକାଳର ନାଟକ ଧର୍ମାନୁଭାବ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଆନନ୍ଦ ମଧ୍ୟ ପ୍ରଦାନ କରୁଥିଲା ।

ଓଡ଼ିଶାରେ ମଧ୍ୟ ପ୍ରଥମାବସ୍ଥାରେ ଲୋକରଞ୍ଜନ ପାଇଁ ଯାତ୍ରା, ଲୀଳା ଓ ସୁଆଙ୍ଗର ପ୍ରଚଳନ ଥିବା ଜଣାଯାଏ । ଏଗୁଡ଼ିକ-ପ୍ରଧାନତଃ ପଦ୍ୟାତ୍ମିକା ଏବଂ ଦୈବୀ କଥାବସ୍ତୁରେ ପରିପୂର୍ଣ୍ଣ । ଜନସାଧାରଣଙ୍କ ଆରାଧ୍ୟ ରାଧାକୃଷ୍ଣ ଅଥବା ରାମ ସୀତାଙ୍କୁ କେନ୍ଦ୍ର କରି ବହୁ ଲୀଳା ଓ ଯାତ୍ରା ସୃଷ୍ଟି ହେଉଥିଲା । ଯାତ୍ରାର ଅଭ୍ୟୁଦୟ ପୂର୍ବରୁ 'ଚମ୍ପୂ' ସାହିତ୍ୟ ଭଳି ପଦ୍ୟାକାରରେ କଥୋପକଥନ ରୀତି ନିଶ୍ଚୟ ପ୍ରଚଳିତ ଥିବ । ପଲ୍ଲୀ ସଂସାରରେ ଏବେ ମଧ୍ୟ ସାଙ୍ଗୀତିକ ସଂଳାପ ମାଧ୍ୟମରେ ବହୁ ନାଚ ଗୀତର ପରିଚୟ ମିଳୁଅଛି । ଉଦାହରଣ ସ୍ୱରୂପ—'ଦୋଳୀ ଗୀତ'ର ଉଦ୍ଧାର କରାଯାଇପାରେ--(୧୨)

ସ୍ତ୍ରୀ—ହାତୀ ଭଙ୍ଗେ ବରଡ଼ାଳ

ହିନତାରେ କର ମୋ ସଙ୍ଗେ ଗୋଳ

ମୋ ସଙ୍ଗେ ଗୋଳ ଗୋ

ହସିବେ ସଙ୍ଗିନୀ ଦଳ ।

---

୧୧ । 'Dictionary of World Literature'—Edited by Joseph. T. Shipley.

୧୨ । ପଲ୍ଲୀଗୀତି ସଞ୍ଚୟନ (୧୯୫୪) ଅଧ୍ୟାପକ କୁଞ୍ଜବିହାରୀ ଦାସ—ପୃ ୨୦୧-୨

ପୁ—ବଣରେ ଫୁଟିଲା ମଲ୍ଲୀ
କାହାଠୁ ଶିଖିଛୁ ଏ ବାଙ୍କ ଚାଲି
ଏ ବାଙ୍କ ଚାଲି ଲୋ
ଖେଳୁଚୁ ବାର୍କିଶିଆଲି ।

ସେ କାଳର ପଲ୍ଲୀସଙ୍ଗୀତରେ ଯେଉଁ ସଲାପ ଥିଲା, ତାହା ହୁଏତ 'ଗୀତନାଟ୍ୟ' ସଲାପର ପୂର୍ବରାଗ ହୋଇପାରେ । କାରଣ ପଲ୍ଲୀ ଗୀତର ପରମ୍ପରା ଅତ୍ୟନ୍ତ ପ୍ରାଚୀନ । ଗଦ୍ୟ ସଲାପ ମାଧ୍ୟମରେ ଅଭିନୟ ବହୁ ପରେ ଆରମ୍ଭ ହୋଇଥିଲା । ସଙ୍ଗୀତ ସାହାଯ୍ୟରେ ରସାନୁଭୂତ ଥିଲା ସେ କାଳର ପ୍ରଧାନ ଉପାଦାନ । ପଲ୍ଲୀ ସମାଜରେ ପ୍ରଚଳିତ ଦଣ୍ଡନାଟ, ଶବର ଶବରୀ ଗୀତ କିମ୍ବା ଧାଙ୍ଗଡ଼ା ଧାଙ୍ଗିଡ଼ୀ ଗୀତ ପ୍ରଭୃତିରେ ଏହି ସାଙ୍ଗୀତିକ ସଲାପ ସଂଯୋଜିତ ହୋଇଥିବା ଜଣାଯାଏ ।

**ଗୀତନାଟ୍ୟ ଓ ଯାତ୍ରା—**

ଯାତ୍ରାର ଉତ୍ପତ୍ତି ଏବଂ ବିକାଶ ସମ୍ପର୍କରେ ଅଜିତକୁମାର ଘୋଷ ବଙ୍ଗଳା ନାଟକର ଇତିହାସ ପୁସ୍ତକରେ ବିସ୍ତୃତ ଆଲୋଚନା କରିଛନ୍ତି । ତାଙ୍କ ମତରେ ଏହା ବହୁ ପ୍ରାଚୀନ କାଳରୁ ରହି ଆସିଅଛି । ପ୍ରଥମେ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଦେବତାମାନଙ୍କ ସହିତ ଯାତ୍ରା କଲାବେଳେ ଦେବତାଙ୍କ ମହାତ୍ମ୍ୟ ପ୍ରଖ୍ୟାପନ କରି ଯେଉଁ ନାଚ ଗାନ ହୋଇଥାଏ ଏହା ହିଁ 'ଯାତ୍ରା' । ତେଣୁ ପ୍ରଥମେ ଯାତ୍ରା ବୋଇଲେ ଉତ୍ସବ ଉପଲକ୍ଷେ ଗମନ ବୁଝାଉଥିଲା—ଯେପରି ଦୋଳଯାତ୍ରା, ଗୋଷ୍ଠଯାତ୍ରା ଅଥବା ରଥଯାତ୍ରା । କାଳକ୍ରମେ କେଉଁଆଡ଼େ ନ ଯାଇ ଗୋଟିଏ ସ୍ଥାନରେ ବସି ଅଭିନୟ କରିବା ହେଲା ଯାତ୍ରା । ଏହା କେବଳ ଦେବଲୀଳାରେ ପର୍ଯ୍ୟବସିତ ହେଉଥିଲା । ଏହି ପ୍ରାଚୀନ ଦେବଲୀଳାତ୍ମକ ଯାତ୍ରାରୁ ଆଧୁନିକ ଯାତ୍ରା ଓ ଲୀଳାର ଉଦ୍ଭବ ହୋଇଅଛି । ଅବଶ୍ୟ ଯୁଗରୁଚି ଅନୁସାରେ ଏଥିରେ ନାନା ରଙ୍ଗ ଓ ତାମସା ଯୋଡ଼ି ଦିଆଯାଇଅଛି । ତାଙ୍କ ମତରେ ଚୈତନ୍ୟଙ୍କ ବୈଷ୍ଣବ-ଧର୍ମ ପ୍ରଚାର ସଙ୍ଗେ ସଙ୍ଗେ କୃଷ୍ଣଯାତ୍ରା ବିଶେଷ ଭାବରେ ଲୋକପ୍ରିୟ ହୋଇ ଉଠିଲା । ଭକ୍ତି ରସର ଆଧିକ୍ୟ ସାଧାରଣତଃ ଯାତ୍ରା ମଧ୍ୟରେ ଅନୁଭୂତ ହୁଏ । ଅବଶ୍ୟ ଅତିରିକ୍ତ ଆଧ୍ୟାତ୍ମିକତା, ଗୀତ ଏବଂ ଭକ୍ତିର ଆତିଶଯ୍ୟ ଯାତ୍ରାର ନାଟକୀୟତ୍ୱ ନଷ୍ଟ କଲେ ହେଁ, ଜନସାଧାରଣ ସେହି ସଙ୍ଗୀତର ରସାସ୍ୱାଦନ କରି ଅପୂର୍ବ ସନ୍ତୋଷ ଲାଭ କରୁଥିଲେ । ଚୈତନ୍ୟଙ୍କ ପରବର୍ତ୍ତୀ କାଳରେ ଏହି କୃଷ୍ଣଲୀଳା ସବୁ 'କାଳୀୟଦଳନ' ନାମରେ ବିଶେଷ ପରିଚିତ ହୁଏ ଏବଂ ଅଷ୍ଟାଦଶ ଶତାବ୍ଦୀରେ ଏହାର ବହୁଳ ପ୍ରଚାର ହୁଏ । ଊନବିଂଶ ଶତାବ୍ଦୀରେ କ୍ରମଶଃ ଆଦି ଯାତ୍ରାର ରୂପାନ୍ତର ହୁଏ । ଏଥିରେ ନାଟକୀୟ ଉପାଦାନ ପ୍ରବେଶ କରାଇ ଅଧିକ ଲୋକରଞ୍ଜନ ପାଇଁ ଉଦ୍ୟମ କରାଯାଏ । ଏହି କାଳରେ ଭରତଙ୍କ 'ବିଦ୍ୟାସୁନ୍ଦର' ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲା ।

ପ୍ରାଚୀନ ବଙ୍ଗଳା ସାହିତ୍ୟରେ ଶକ୍ତି ପୂଜାକୁ ଅବଲମ୍ବନ କରି ଯାତ୍ରାର ପ୍ରଚଳନ ଥିଲା ବୋଲି ମତ ବ୍ୟକ୍ତ କରାଯାଏ । "The ancient Jatra were preva-

lent in Bengal were about the cult of Sakti worship and dealt mainly with the death of Sambhu, Nisambhu and other Asuras." (୧୩) ପ୍ରଥମ କାଳର ଶକ୍ତି ପୂଜା ଯାତ୍ରା ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲେ ହେଁ କୃଷ୍ଣଲୀଳାହିଁ ଯାତ୍ରାର ପ୍ରଧାନ ଉପାଦାନ । ପଶ୍ଚିମ ଭାରତରେ ପ୍ରଚଳିତ ରାସଲୀଳା ଏହି ଶ୍ରେଣୀର ବୋଲି ଅଧ୍ୟାପକ ହୋରେସ ହେମାନ୍ ଉଇଲସନ୍ ମତ ପ୍ରକାଶ କରିଛନ୍ତି । ଜୟଦେବଙ୍କ ଗୀତଗୋବିନ୍ଦ ପ୍ରାଚୀନ ଭାରତୀୟ ନାଟ୍ୟଗୀତର ଏକ ଉଜ୍ଜ୍ୱଳ ଉଦାହରଣ । ଏହି ସମ୍ପର୍କରେ P. Guhathakhurta ତାଙ୍କ 'The Bengali Drama' ନାମକ ପୁସ୍ତକରେ ତୁଳନାତ୍ମକ ବିଚାର କରିଅଛନ୍ତି । ଆମର ଯାତ୍ରା ସହିତ ଇଂରେଜି ନାଟକ ସାହିତ୍ୟର mystery ଏବଂ miracle play ତୁଳନୀୟ । mystery ଶ୍ରେଣୀର ନାଟକଗୁଡ଼ିକରେ ପୁରାଣରେ ଅଥବା ଧର୍ମ ଶାସ୍ତ୍ରର କଥାବସ୍ତୁ ଗ୍ରହଣ କରାଯାଇଥାଏ ଏବଂ miracles ନାଟକଗୁଡ଼ିକର ପ୍ରଧାନ ପ୍ରେରଣା ହେଉଛି ମହାପୁରୁଷମାନଙ୍କର ଜୀବନୀ ।

ଉପରୋକ୍ତ ଆଲୋଚନାରୁ ଓଡ଼ିଆ ଯାତ୍ରା ଓ ଲୀଳାର ଅଭ୍ୟୁଦୟର ଇତିହାସ ମଧ୍ୟ ଅନୁମାନ କରାଯାଇପାରେ । ଏ ଦେଶର ସମାଜରେ ଆଧ୍ୟାତ୍ମିକତାର ପ୍ରେରଣା ଯଥେଷ୍ଟ ବେଶି । ପୁନଶ୍ଚ ଆମର ସମାଜ ବହୁକାଳ ଧରି ପୁରାଣ ସାହିତ୍ୟର ପରମ୍ପରାରେ ପରିବର୍ଦ୍ଧିତ । ତେଣୁ ପ୍ରଥମେ ରାମାୟଣ ଓ ମହାଭାରତର କଥାବସ୍ତୁ ଲୀଳାକାରରେ ଓଡ଼ିଆ ଭାଷାରେ ବହୁ କାଳରୁ ଅଭିନୀତ ହୋଇ ଆସୁଥିବା ସ୍ୱାଭାବିକ । ଅବଶ୍ୟ ସେ କାଳର ଲେଖା ଓ ଲେଖକଙ୍କ ସମ୍ପର୍କରେ ବର୍ତ୍ତମାନ କୌଣସି ଧାରଣା କରିବା ସମ୍ଭବ ନୁହେଁ । ତେବେ ଏହି ଲୀଳା ଓ ଯାତ୍ରାଗୁଡ଼ିକରେ କୃଷ୍ଣଙ୍କ ଜୀବନର ନାନା ଘଟଣା ନାନା ରୂପରେ ଅଭିନୀତ ହେଉଥିଲା ।

**ଯାତ୍ରାର ବୈଶିଷ୍ଟ୍ୟ—**

ଆଧୁନିକ ଚଳଚିତ୍ର ଓ ନାଟକ ଯୁଗରେ ଧାରାବାହିକ ଭାବରେ ଯାତ୍ରା, ଗୀତିନାଟ୍ୟ ଓ ଲୀଳାର ପରମ୍ପରା ଗଢ଼ି ଆସିଅଛି । ଏ ଦେଶର ଅଧିକାଂଶ ଲୋକ ପଲ୍ଲୀ ଅଧିବାସୀ ଏବଂ ସେମାନଙ୍କ ଭାଗ୍ୟରେ ନଗର ଜୀବନର ସୌଖୀନ କଳାବିଳାସ ଭୋଗ କରିବାର ସୁଯୋଗ ନ ଥାଏ । ତେଣୁ କାଳ କାଳ ଧରି ଏହି ଯାତ୍ରା, ଲୀଳା ଓ ସୁଆଙ୍ଗ ସେମାନଙ୍କ କର୍ମକ୍ଲାନ୍ତ ଜୀବନରେ ଆମୋଦ ପ୍ରଦାନ କରିଅଛି ।

ଯାତ୍ରାର କଥାବସ୍ତୁ ପୁରାଣରୁ ଗୃହୀତ । ତେଣୁ ତାହା ଲୋକ ସାଧାରଣଙ୍କର ଅତ୍ୟନ୍ତ ପରିଚିତ । ଲୋକେ ପରିଚିତ କଥାବସ୍ତୁର ଅଭିନୟ ଦେଖି ଆତ୍ମହରା ହେବା ସ୍ୱାଭାବିକ । ଯାତ୍ରାର କଥାବସ୍ତୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ତାହା ସାଧାରଣତଃ 'ମୃତ୍ୟୁ' ଏବଂ 'ମିଳନ' ଏହିଭଳି ଦୁଇଭାଗରେ ବିଭକ୍ତ; ତେଣୁ 'ରାବଣ ବଧ' 'କଂସ ବଧ' ଅଥବା

---

୧୩ । 'The Indian Stage' Vol. 1
Hemendranath Dasgupta—P. 112

'ଉଷା ପରିଣୟ' 'ସୁଭଦ୍ରା ହରଣ' ରୁକ୍ମୁଣୀ ବିବାହ' ଇତ୍ୟାଦି ଲୋକପ୍ରିୟ କଥାବସ୍ତୁ ଗୁଡ଼ିକ ହିଁ ଯାତ୍ରା ମାଧ୍ୟମରେ ପରିବେଷିତ ହୋଇଥାଏ । ଯାତ୍ରା ଅଥବା ଲୀଳାରେ କୌଣସି ରଙ୍ଗମଞ୍ଚର ଆବଶ୍ୟକତା ପଡ଼େ ନାହିଁ । ଖୋଲା ସ୍ଥାନରେ ଏଗୁଡ଼ିକର ଅଭିନୟ ପ୍ରଦର୍ଶନ ହୋଇଥାଏ । ଗଦ୍ୟ ଅପେକ୍ଷା ପଦ୍ୟର ପ୍ରଭାବ ଅଧିକ ଅନୁଭୂତ ହେଉଥିଲା । ଅନେକ ସମୟରେ ସାମାଜିକ ଜୀବନର ପ୍ରସିଦ୍ଧ ପୂଜାପାର୍ବଣ ସମ୍ପର୍କରେ କାହାଣୀ, ଲୋକପ୍ରିୟ ପାଲା ଅଥବା ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କର କଥାବସ୍ତୁ ମଧ୍ୟ ଯାତ୍ରାଗୁଡ଼ିକରେ ଆଦୃତ ହେଉଥିଲା । ବନ୍ଧୁ ନାୟକଙ୍କ 'କପଟପାଶା' ବାଞ୍ଛାନିଧି ସାହୁଙ୍କ 'ତଅପୋଇ ବା ଝୁଡ଼ୁରୁକୁଣୀ ସୁଆଙ୍ଗ', ବନ୍ଧୁ ନାୟକଙ୍କ 'ବିଦ୍ୟାଧର ପାଲା' 'ତାରାବତୀ ହରଣ ସୁଆଙ୍ଗ', ବୈଷ୍ଣବ ପାଣିଙ୍କ 'ଲାବଣ୍ୟବତୀ ବା ଚନ୍ଦ୍ରଭାନୁ ପରିଣୟ' ପ୍ରଭୃତି ଉଲ୍ଲେଖଯୋଗ୍ୟ । କେତେକ ପ୍ରାଚୀନ ଲେଖକ ବୁଢ଼ୀ ମା କାହାଣୀକୁ ଅବଲମ୍ବନ କରି ମଧ୍ୟ ଯାତ୍ରା ରଚନା କରିଅଛନ୍ତି । ବାନାମ୍ବର ଦାସଙ୍କ 'ସାହସୀ ରାଜକୁମାର ଗୀତାଭିନୟ' କିମ୍ବା ବୈଷ୍ଣବ ପାଣିଙ୍କ 'ଚନ୍ଦ୍ରହାସ ଗୀତାଭିନୟ' ଏହି ଶ୍ରେଣୀର ।

'ଚମ୍ପୂ' ସାହିତ୍ୟରେ ଯେପରି ସଙ୍ଗୀତରେ ସଂଳାପ ସଂଯୋଜନା ପ୍ରାଧାନ୍ୟ ଲାଭ କରିଥାଏ, ସେହିପରି ପ୍ରଥମ କାଳର ଯାତ୍ରା ବା ସୁଆଙ୍ଗ ଗୁଡ଼ିକରେ କେବଳ ପଦ୍ୟର ପ୍ରାଧାନ୍ୟ ଦେଖାଯାଉଥିଲା । ପ୍ରତ୍ୟେକ ନାୟକ ନାୟିକା ପ୍ରବେଶ ଗୀତଦ୍ୱାରା ନିଜ ନିଜର ପରିଚୟ ପ୍ରଦାନ କରୁଥିଲେ । ଅବଶ୍ୟ ପରକାଳରେ ଉନ୍ନତ ଧରଣର ନାଟ୍ୟରୀତି ପ୍ରବର୍ତ୍ତନ ଫଳରେ ଦୃଶ୍ୟ ଓ ଅଙ୍କର ସର୍ଜ୍ଜିକରଣ ଏବଂ ଗଦ୍ୟରେ ସଂଳାପଯୁକ୍ତ ହେବାରୁ ପ୍ରବେଶ ଗୀତ ଉଠାଇ ଦିଆଗଲା । ଉଦାହରଣ ସ୍ୱରୂପ ପ୍ରାଚୀନ କବି ଭିକାରୀ ନାୟକଙ୍କ ବିରଚିତ ଚନ୍ଦ୍ରାବତୀ ହରଣ ସୁଆଙ୍ଗରେ ରାଜା ଦୁର୍ଯ୍ୟୋଧନ ପ୍ରବେଶ ଗୀତ ଗାଇ ଗାଇ ଦର୍ଶକମାନଙ୍କ ନିକଟକୁ ଆସିଅଛନ୍ତି—

"ଦେଖ ଦୁର୍ଯ୍ୟୋଧନ ରାଜା ଧୀରେ ଆସନ୍ତି ହୋ ।
ପାତ୍ରମନ୍ତ୍ରୀମାନେ ତାଙ୍କ ସଙ୍ଗେ ଚାଲନ୍ତି ହୋ ।"

ରଙ୍ଗମଞ୍ଚ ଏବଂ ଦୃଶ୍ୟପଟର ଅଭାବରେ ଲୋକେ ଏହି ପ୍ରକାର ଅଭିନୟ ଦେଖିବାରେ ଅଭ୍ୟସ୍ତ ଥିଲେ । ସେହିପରି ଭାନୁମତୀ ରାଣୀ ବାହାରିଲା ବେଳେ—

"ବାହାର ହୋଇଲେ ଦେଖ ଭାନୁମତୀ ରାଣୀ,
ଯୁବା ଝିଅ ଘରେ ରଖି କରନ୍ତି ଭାଲେଣି ।"

ଏଭଳି ସଙ୍ଗୀତ ସଂଯୋଜନା ଦ୍ୱାରା କେବଳ ଚରିତ୍ରର ପରିଚୟ ଜଣାଯାଏ ନାହିଁ; ଘଟଣା ତଥା କଥାବସ୍ତୁର ସମ୍ପୃକ୍ତି, ଚରିତ୍ରର ବେଶଭୂଷା ଇତ୍ୟାଦି ସମ୍ପର୍କରେ ମଧ୍ୟ ସୂଚନା ଦିଆଯାଏ । ଲୋକପ୍ରିୟ ରାଗରାଗିଣୀ ଦ୍ୱାରା ଗାନ କରାଯାଉଥିବାରୁ ଶ୍ରୋତାଗଣ ମୁଗ୍ଧ ହୋଇ ଉପଭୋଗ କରନ୍ତି । ପୁନଶ୍ଚ ହାସ୍ୟରସର ଅବତାରଣା ପାଇଁ ଦୁଆରୀ, ସୂପକାର, ସ୍ତ୍ରୀ ପୁରୁଷ ସଂଘର୍ଷର ଅବତାରଣା କରାଯାଇଥାଏ ।

"ବିଦ୍ୟାଧର ପାଲି ବା ତାରାବତୀ ହରଣ" ସୁଆଙ୍ଗରେ ଦ୍ୱାରୀ ଆସିବା ଗୀତ ଏହିପରି—

"ଆସଇ ମୁଁ ଦୁଆରୀ ହୁଣ୍ଡା ଲୋ,
ଉକୁଣି ମୁଣ୍ଡା । ପଦ ।

ମୁଣ୍ଡରେ ପଗଡ଼ି ଦେଇଅଛୁ ଭିଡ଼ି
ଝାଉଛୁ କାଣ୍ଡିଆ କୁଣ୍ଡା ଲୋ ॥"

ସେହିପରି 'ସାହସୀ ରାଜକୁମାର ଗୀତାଭିନୟ'ରେ କେବଳ ହାସ୍ୟରସର ଅବତାରଣା ପାଇଁ ସ୍ତ୍ରୀ ପୁରୁଷ ଫାର୍ସର ଅବତାରଣା କରାଯାଇଛି ।

ସ୍ତ୍ରୀ—ନିର୍ଲଜ୍ଜ ମୁହଁକୁ ଲାଜ ମାଡ଼ୁନାହିଁ,
କାହିଁକି ଡାକୁଛୁ ଚୁଲିପଯା ?
ପୁ—ପୂରୁବ କଥା କି ଗଲି ପାଶୋରି
ବୁଢ଼ା ଦେଖି ନ କରୁଛୁ ଖାତିର,
ସ୍ତ୍ରୀ—ପତର ଚଟାକୁ କି କଥା କହିବି
ଘର ଗୁଡ଼ି କରୁ ପରେ ଆଶା ॥

ପ୍ରାୟ ପ୍ରତ୍ୟେକ ଯାତ୍ରା ଅଥବା ସୁଆଙ୍ଗରେ ଫାର୍ସ ସଂଯୋଜିତ ହୋଇଥାଏ । ବିଷୟବସ୍ତୁ ସହିତ ଏହାର କୌଣସି ସମ୍ପର୍କ ନାହିଁ । କେବଳ ବିଶ୍ରାମ ଏବଂ ହାସ୍ୟରସ ସୃଷ୍ଟି ପାଇଁ ଅଭିନୟ ମଧ୍ୟରେ ଏପରି ପ୍ରସଙ୍ଗର ଅବତାରଣା କରାଯାଏ । ବେଳେ ବେଳେ ଅତ୍ୟନ୍ତ ରୁଚିବିଗର୍ହିତ ସଂଳାପ ସଂଯୋଜିତ ହେଲେହେଁ ଲୋକେ ତାହା ଆନନ୍ଦରେ ଗ୍ରହଣ କରିଥାନ୍ତି ।

ଉନ୍ନତ ଧରଣର ନାୟକ ନାୟିକାମାନଙ୍କ ମୁହଁରେ ଅତ୍ୟନ୍ତ ଗାଉଁଲି ସଂଳାପ ଯୋଡ଼ି ଦେଇ ଯାତ୍ରା ଲେଖକଗଣ ରସ ସଞ୍ଚାର କରିଥାନ୍ତି । ଯେପରି "କପଟପାଶା" ସୁଆଙ୍ଗରେ ଚିତ୍ରରଥ ଗନ୍ଧର୍ବଠାରୁ ପାଣ୍ଡବଗଣ ଦୁର୍ଯ୍ୟୋଧନକୁ ଉଦ୍ଧାର କରି ତାହାକୁ ଭର୍ତ୍ସନା କରୁଅଛନ୍ତି—

"ଆରେ ଠାଉଁଆ ଧାକଡ଼,
ଖୋଜୁଥିଲୁ ତୁହି ମାଡ଼
ବୋପା ତୋର ନେଉଥିଲି
ଠୁଙ୍କି ଦେଇଥାନ୍ତା କଲା,
ମରିଥାନ୍ତୁ ତୁହିରେ,
ଧର୍ମବଳୁ ଆସିଲୁ ଉଦ୍ଧାର
ହୋଇରେ ।"

ହାସ୍ୟରସ ସୃଷ୍ଟି ପାଇଁ ଅତ୍ୟନ୍ତ ବିକୃତ ଭାଷାର ବ୍ୟବହାର ଆଧୁନିକ ରୁଚିସମ୍ମତ ନ ହେଲେହେଁ ସେ କାଳର ଯାତ୍ରାମାନଙ୍କରେ ଏହାର ଭୂରି ଭୂରି ଉଦାହରଣ ମିଳେ ।

ରଙ୍ଗମଞ୍ଚର ଉନ୍ନତି ଓ ନାଟ୍ୟ ସାହିତ୍ୟର ବହୁଳ ପ୍ରଚାର ପରେ ଯାତ୍ରା ଓ ଗୀତିନାଟ୍ୟରେ ମଧ୍ୟ ପ୍ରଭୂତ ଉନ୍ନତି ସମ୍ଭବ ହୋଇଥିଲା । ଏ ସମ୍ପର୍କରେ କେବଳ ବୈଷ୍ଣବଚରଣ ପାଣିଙ୍କ ଗୀତିନାଟ୍ୟଗୁଡ଼ିକର ଆଲୋଚନା କଲେ ସ୍ତମ୍ଭିତ ହେବାକୁ ପଡ଼େ । ତାଙ୍କର ସଙ୍ଗୀତ ଯେପରି ଲୋକପ୍ରିୟ, ସଂଳାପ ସଂଯୋଜନା ମଧ୍ୟ ଅନେକ ସମୟରେ ସେହିପରି ମାର୍ଜିତ ଓ ଉନ୍ନତ ଧରଣର । ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଲିଖିତ ହୋଇଥିବାରୁ ସେହି ରଚନାଗୁଡ଼ିକ ସାଧାରଣତଃ ସଙ୍ଗୀତ ବହୁଳ । ଏହି ସଙ୍ଗୀତଗୁଡ଼ିକ ନାନା ବୃତ୍ତ ଏବଂ ଲୋକପ୍ରିୟ ରାଗ ରାଗିଣୀରେ ରଚିତ ହୋଇଥିବାର ଦେଖାଯାଏ । ପ୍ରତ୍ୟେକ ଚରିତ୍ର ସଙ୍ଗୀତରେ ଭାବ ପ୍ରକାଶ କଲେ ମଧ୍ୟ ପ୍ରବେଶ ଗୀତ କ୍ରମଶଃ ଉଠାଇ ଦିଆଯାଇ ସମ୍ପୂର୍ଣ୍ଣ ନାଟକୀୟ ମର୍ଯ୍ୟାଦା ରକ୍ଷା କରିବାପାଇଁ ଉଦ୍ୟମ ହୋଇଥିଲା । ଚରିତ୍ର ଗୁଡ଼ିକ ଗୀତରେ ଭାବ ପ୍ରକାଶ କଲେ ମଧ୍ୟ ଗୀତରେ ଅମିତ୍ରାକ୍ଷର ଛନ୍ଦ ଦ୍ୱାରା ଅଥବା ଗଦ୍ୟରେ ଭାବକୁ ବୁଝାଇ ଦେଉଥିଲେ । ବୈଷ୍ଣବ ପାଣି ଦୃଶ୍ୟର ସର୍ଜ୍ଜ‌ନାକରଣ ସଙ୍ଗେ ସଙ୍ଗେ ସ୍ୱଗତୋକ୍ତିର ମଧ୍ୟ ଅବତାରଣା କରିଥିଲେ । ଯେଉଁ ଘଟଣାରେ ଅଭିନୟ ସମ୍ଭବ ନୁହେଁ, ତାହାକୁ ଆକାଶବାଣୀ ଅଥବା ନିୟତି ନିର୍ଦ୍ଦେଶ ବୋଲି ପ୍ରଚାର କରୁଥିଲେ (ନେପଥ୍ୟେ) ଆଢୁଆଳରେ ଥାଇ । ସଂସ୍କୃତ ନାଟକ ଭଳି ପ୍ରସ୍ତାବନାରେ ନଟ ନଟୀର ଅବତାରଣା ଦ୍ୱାରା ବିଷୟ ପ୍ରବେଶ ପାଇଁ ଉଦ୍ୟମ ହେଉଥିଲା । ବିଦୂଷକ, ଦ୍ୱାରୀ, ସ୍ତ୍ରୀ ପୁରୁଷ ଫାର୍ସ ଇତ୍ୟାଦିର ଅବତାରଣାରେ ହାସ୍ୟରସ ଫୁଟାଇବା ପାଇଁ ଯତ୍ନ କରାଯାଉଥିଲା । ନାନା ଅଲୌକିକ ଘଟଣା ପ୍ରଚାର କରିବା ପାଇଁ ଯାତ୍ରା ଲେଖକମାନେ କୁଣ୍ଠିତ ହେଉ ନ ଥିଲେ । ଦେବତାମାନେ ସାଧାରଣ ନରମାନଙ୍କ ଭଳି ବ୍ୟବହାର କରୁଥିଲେ । ପାଣି କବିଙ୍କ 'ଗଙ୍ଗା ଭଗୀରଥ ସୁଆଙ୍ଗ'ରେ ଐରାବତ ହସ୍ତୀ ଗୀତ ବୋଲିବାର ବର୍ଣ୍ଣନା ଅଛି । ଏହା ଲୋକେ ଶୁଣି ଅସଙ୍ଗତ ମଣନ୍ତି ନାହିଁ । ଉଦାହରଣ—

"ଦେଖ ଦେଖ ଆରେ ରଜା
କାହିଁ ଅଛି ମୋ ଭାରିଜା ଦେ'ଚହ୍ନାଇ ।
ବାଜନ୍ତେ ଦନ୍ତ ମୋହର
ଗିରିଗର୍ଭୁଁ ବାହାର ହୋଇ
ଆସନ୍ତେ ମୁଁ ମୋହିନେବି
ତା' ମନ ମନାଇ ।"

କଥାବସ୍ତୁ ଅଥବା ସଙ୍ଗୀତ ସଂଯୋଜନା ଦ୍ୱାରା ଜନସାଧାରଣ ଯେତିକି ଆମୋଦିତ ହେଉଥିଲେ, ଆଧ୍ୟାତ୍ମିକ ଘଟଣାବଳୀର ଅଭିନୟ ଦ୍ୱାରା ତାହାର ଆଦର୍ଶରେ ସେତିକି ଅନୁପ୍ରାଣିତ ହେଉଥିଲେ । ଅନେକ ସମୟରେ ବହୁ ଲୋକ-ଶିକ୍ଷା-ମୂଳକ

ସୂଚନା ମଧ୍ୟ ଯାତ୍ରାମାନଙ୍କରେ ଦିଆଯାଇଥାଏ । ଯେପରି ବୈଷ୍ଣବ ପାଣିଙ୍କ 'ଚନ୍ଦ୍ରହାସ ଗୀତାଭିନୟ'ରେ ଦୁଷ୍ଟବୁଦ୍ଧି ମନ୍ତ୍ରୀର ଆକସ୍ମିକ ବିପଦ ପଡ଼ିବାରୁ ସେ ଅନୁତାପ କରିଛନ୍ତି—

"ପର ପାଇଁ ଖଣା ଖୋଳିବାରୁ
ଜଣାଗଲା ଶୂନ୍ୟ ହେଲା ସଦନ,
ପଡ଼ିଲି ସେ ଖାଲେ ଲେଖାଥିଲା ଭାଲେ
କରୁଅଛୁ ଏବେ ବସି କ୍ରନ୍ଦନ ।"

ଅନେକ ସମୟରେ ସାମାଜିକ ଜୀବନର ପ୍ରତିଛବି ମଧ୍ୟ ଦେଖିବାକୁ ମିଳେ । ଦୂତର ଅବତାରଣା ଜରିଆରେ ହାସ୍ୟରସର ଉଦ୍ରେକ କରିବା ସଙ୍ଗେ ସଙ୍ଗେ ଲେଖକ ତତ୍କାଳୀନ ଓଡ଼ିଶାର ସମାଜଚିତ୍ର ପ୍ରଦାନ କରିଛନ୍ତି ।

"ପୋଡ଼ିଗଲା ଓଡ଼ିଶା ଦେଶ ହୋ
ଗ୍ରୁଡ଼ି ଯାଉଅଛୁ ନିଜର ବାସ ।ପଦ।
ଯେତେ ନୂଆ କଥା ଦେଖୁଛୁ ଆଖିରେ,
ବାକି ନାହିଁ ସାକ୍ଷୀ ଅଛୁ ଅଶେଷ ।
କେହି କାହା କୁଳ-ଧରମ କରମ
ନ ରଖିଲେ ଶୁଣି ମାଡ଼ୁଛୁ ହସ ହୋ ॥
ପୁଣି ସେ ବ୍ରାହ୍ମଣ ଜାତି ପଣ ପଣ
ଦକ୍ଷିଣ ଦେଶରେ ରଖିଲେ ନିଶ ।
ନାକରେ ଚଷମା ଦେଇ ବୁଲୁଛନ୍ତି
ବରଷ ନୋହୁଣୁ ବଂଶ ପଚଶ ହୋ ॥
ଜାଣି କର୍ମକାଣ୍ଡ ବାହାରିଲେ ଗଣ୍ଡ
ଝିଅଙ୍କୁ ଦାଣ୍ଡରେ ଭଣ୍ଡରେ ବସ ।
ଦୋଷ ଦେଖାଇଲେ ରୋଷ ପ୍ରକାଶନ୍ତି
କାଢ଼ିଛନ୍ତି ଗୋଷ୍ଠୀ ନୂଆ ଭବିଷ ହୋ ॥"

"ସାହସୀ ରାଜକୁମାର ଗୀତାଭିନୟ"ରେ ବନ୍ଦୋବସ୍ତ ସମ୍ପର୍କରେ ଜନସାଧାରଣଙ୍କ ପ୍ରତିକ୍ରିୟା ଅତି ଚମତ୍କୃତ ଭାବରେ ଗୀତନାଟ୍ୟ ମାଧ୍ୟମରେ ପ୍ରକାଶିତ ହୋଇଅଛି ।

"ସରିଗଲା ଭାଇ ସେଟଲମେଣ୍ଟ ରେ
ଯାହା ହୁଏ ମନ ଭିତରେ
କେ ହୋଇଲା ଧନୀ, କା'ର ସର୍ବହାନି
ଦେଖି ପ୍ରଜାକୁଳ କାତର ।

ଧନ୍ୟ ସେ ଅମୀନ୍, କି ବର୍ଣ୍ଣିବି ଗୁଣ
କରୁଥିଲେ କେତେ ଘୃତର
ଅଢ଼ାଇ ଧନକୁ କରିଣ ବଢ଼ାଇ
କାହାକୁ ନ କଲେ ଖାତର ।”

## ଓଡ଼ିଆ ଯାତ୍ରା ଓ ବଙ୍ଗଳା ନାଟକ—

ଓଡ଼ିଆ ନାଟକ ସୃଷ୍ଟିର ପ୍ରଥମ କାଳରେ ବଙ୍ଗଳା ନାଟକର ପ୍ରଭାବ କିପରି ଅନୁଭୂତ ହେଉଥିଲା, ତାହା ପୂର୍ବରୁ ସୂଚିତ ହୋଇଅଛି । ଓଡ଼ିଆ ନାଟକର ଅଭାବରେ ସେ କାଳରେ ବଙ୍ଗଳା ନାଟକ ଅନୂଦିତ ହୋଇ ଅଭିନୀତ ହେଉଥିଲା ବୋଲି କୁହାଯାଇଛି । ସେହିପରି ଉତ୍କଳର ପଲ୍ଲୀ-ସଂସାରରେ ଊନବିଂଶ ଶତାବ୍ଦୀରେ ବହୁବାର ବଙ୍ଗଳା ଯାତ୍ରା ଓ ଗୀତିନାଟ୍ୟ ଅଭିନୀତ ହୋଇ ଲୋକପ୍ରିୟତା ଅର୍ଜନ କରିବାର ପ୍ରମାଣ ଅଛି । ସେ କାଳରେ ଓଡ଼ିଆ ଭାଷା ବଦଳରେ ବଙ୍ଗ ଭାଷାର ପ୍ରଚଳନ ପାଇଁ ଚକ୍ରାନ୍ତ ସଫଳ ହୋଇ ନଥିଲେ ହେଁ, ବଙ୍ଗ ଭାଷା ଓ ସାହିତ୍ୟ ବହୁତ ପ୍ରଭାବ ବିସ୍ତାର କରି ପାରିଥିଲା । ୧୮୭୮ ସାଲ ବେଳକୁ “ବାଲେଶ୍ୱର ସମ୍ବାଦ ବାହିକା”, ‘ଦର୍ପଣ’ ଏବଂ “ଉତ୍କଳ ଦୀପିକା”—ଏହିଭଳି ତିନି ଗୋଟି ସାପ୍ତାହିକ ପତ୍ରିକା ଓଡ଼ିଶାରେ ପ୍ରକାଶ ପାଉଥିଲା । ‘ଦର୍ପଣ’ର ଭାଷା ବଙ୍ଗଳା ପ୍ରଭାବିତ ହେଉଛି ବୋଲି ‘ବାହିକା’ ତାଙ୍କର ୨୭।୬।୭୮ ଓ ୧୧।୭।୭୮ ତାରିଖ ସଂଖ୍ୟାରେ କଠୋର ଭାବରେ ସମାଲୋଚନା କରିଥିଲେ । ପୁନଶ୍ଚ ସେହି ସମୟରେ ବାଲେଶ୍ୱରର ଅନେକ ଶିକ୍ଷିତ ଓଡ଼ିଆ ଯୁବକ କଥୋପକଥନ କରିବା ସମୟରେ ବଙ୍ଗଳା ଭାଷାର ଅନେକ ଶବ୍ଦ ମିଶାଇ କହୁଥିବାରୁ ଏହା ଅତ୍ୟନ୍ତ ଦୋଷାବହ ବୋଲି ସେହି ପତ୍ରିକାରେ ଗଭୀର କ୍ଷୋଭ ପ୍ରକାଶ କରାଯାଇଥିଲା । ପୁନଶ୍ଚ ବଙ୍ଗଳା ଯାତ୍ରାର ଲୋକପ୍ରିୟତା ଲକ୍ଷ୍ୟ କରି ୧୭।୧୦।୭୮ ତାରିଖ ‘ବାହିକା’ରେ ଜଣେ ପତ୍ରପ୍ରେରକ ଲେଖିଥିଲେ—ମୁଁ ଦେଖି ଦୁଃଖିତ ହେଲି କେତେକ ଓଡ଼ିଆ ଯାତ୍ରାଦଳ ଆସିଥିଲେ । ବଙ୍ଗଳା ଯାତ୍ରାକାରୀଙ୍କ ଆଡ଼ମ୍ବର ଆଉ ଅସ୍ଫାଳନ ସମ୍ମୁଖରେ ତିଷ୍ଠି ନପାରି ଅପ୍ରସ୍ତୁତ ହୋଇ ଫେରି ଯାଇଅଛନ୍ତି । ହା ! ଓଡ଼ିଶ୍ୟା ମାତଃ, ତୁମ୍ଭର ଅଦୃଷ୍ଟରେ କି ଏହା ଥିଲା ! !’ ମୋଟ ଉପରେ ଉତ୍କଳୀୟ ସାମାଜିକ ଜୀବନରେ ବଙ୍ଗଳା ଯାତ୍ରା ଦଳର ଯଥେଷ୍ଟ ପ୍ରଭାବ ଲକ୍ଷ୍ୟ କରି ସେ କାଳର ଲେଖକଗଣ ବଙ୍ଗଳା ଯାତ୍ରାର ଅନୁକରଣ ଓ ଅନୁସରଣ କରିବାକୁ ଆଦୌ ପଶ୍ଚାତ୍ପଦ ହୋଇ ନ ଥିବେ । ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଅତ୍ୟନ୍ତ ସୁଖ୍ୟାତି ଅର୍ଜନ କରିଥିବା କବି ବୈଷ୍ଣବ ପାଣିଙ୍କ ରଚନା ମଧ୍ୟ ଏ ଦୋଷ ଓ ପ୍ରଭାବରୁ ମୁକ୍ତ ନୁହେଁ । ଏଠାରେ ଉଦାହରଣ ସ୍ୱରୂପ ବଙ୍ଗୀୟ ପ୍ରସିଦ୍ଧ ଲେଖକ ଅମୃତଲାଲ ବସୁଙ୍କ ‘ହରିଶ୍ଚନ୍ଦ୍ର’ ନାଟକ ଏବଂ ବୈଷ୍ଣବ ପାଣିଙ୍କ ‘ହରିଶ୍ଚନ୍ଦ୍ର’ ଗୀତିନାଟ୍ୟର ତୁଳନା କରାଯାଇ ପାରେ ।

ପ୍ରଥମ ଅଙ୍କ—ତୃତୀୟ ଗର୍ଭାଙ୍କ
(ହରିଶ୍ଚନ୍ଦ୍ର ଓ ରୋହିତର ପ୍ରବେଶ)

ରାଜା—କେନ ବାବା, ଆଜ ଆଚାର୍ଯ୍ୟେର କାଛେ ପଡ଼ତେ ଯାଓନି ?
ରୋହିତ—ଆଜ ଦ୍ୱାଦଶୀ—ପଡ଼ା ନାଇଁ ।
ରାଜା—ତୋମାର ଚୋଖ ଛଲ ଛଲ କରଛେ କେନ ? କି ହୟେଛେ ।
ରୋହିତ—ଆଜ ମା ଆମାର ଉପର ରାଗ କରେଛେନ ।
ରାଜା—କେନ ରାଗ କରେଛେନ ?
ରୋହିତ—ଆମି ବଲେଛିଲେମ, "ଆମି ଛୋଟ ଘୋଡ଼ାୟ ଆର ଚଡ଼ବୋନା । ଏକଟା ବଡ଼ ଘୋଡ଼ା କିନେ ଦାଓ"—ମା ବଲ୍ଲେନ, "ଦୁଃଖିନୀର ପୁତ୍ର ।"
ରାଜା—(ସ୍ୱଗତ) ଏ ଶ୍ଳେଷ ପୁତ୍ରକେ ନୟ—ଆମାକେ । (ପ୍ରକାଶ୍ୟେ) ଆମି କାଲଇ ତୋମାକେ ବଡ଼ ଘୋଡ଼ା କିନେ ଦେବ ।
ରୋହିତ—ହ୍ୟାଁ ବାବା, ଆମି ରାଜପୁତ୍ର, ଆମି ଦୁଃଖିନୀର ପୁତ୍ର କେନ ହତେ ଯାବ ?
ରାଜା—ରାଣୀ ବୋଧହୟ ତଖନ କାହାରଓ ଉପରେ ବିରକ୍ତ ଛିଲେନ । ଅନ୍ୟମନସ୍କେ କି ବଲେଛେନ । ତୁମି ଦୁଃଖ କରୋନା—ଯାଓ ଖେଲା କର ଗିୟେ । ଆମି ରାଣୀକେ ବଲବୋ ତିନି ତୋମାୟ ଆର କିଛୁ ବଲବେନ ନା ।
ରୋହିତ—ଦେଖ ବାବା, ଆମର ବଡ଼ ଘୋଡ଼ା ଚାଇ, ଛୋଟ ଘୋଡ଼ାୟ ଚଡ଼ବୋ ନା ।
ରାଜା—ଆଚ୍ଛା, ତୁମି ଏଖନ ଖେଲା କର ଗେ ।

(ହରିଶ୍ଚନ୍ଦ୍ର—ଅମୃତଲାଲ ବସୁ)

ବୈଷ୍ଣବ ପାଣିଙ୍କ ହରିଶ୍ଚନ୍ଦ୍ର ଗୀତନାଟ୍ୟରେ କେବଳ ସଙ୍ଗୀତର ସଂଯୋଜନାଟି ଛାଡ଼ିଦେଲେ ଗଳ୍ପାଂଶ ପ୍ରାୟ ଉଦ୍ଧାର କରି ଆଣିଲାପରି ଜଣାଯାଉଛି ।

ବୈଷ୍ଣବ ପାଣିଙ୍କ 'ହରିଶ୍ଚନ୍ଦ୍ର'ର

**ପ୍ରଥମ ଅଙ୍କ—ଦ୍ୱିତୀୟ ଦୃଶ୍ୟ**

[ ରାଜା ରୋହିତଙ୍କୁ ଘେନି ପ୍ରବେଶ ]

ରାଜା—କହ ବତ୍ସ, ଆଜ କିପାଁ ଚାଟଶାଳେ ଯାଇନାହୁଁ ପଢ଼ି ?

ଗୀତ—

କହ କହ ବାପ କିପାଁ
ଯାଇ ନାହୁଁ ପଢ଼ି ପାଠ
କ୍ରୋଧ କରି କି ଆଚାର୍ଯ୍ୟେ
ତୋତେରେ ମାଇଲେ ଛାଟ ।
ଆଜି ହାଟକ ବରନ
ହୋଇଛୁ ଝଟକ ସ୍ୱାନ

ଗୁରୁ ଗୃହ ଏ ବାଟକୁ
ପଢ଼ଇ କ ବେଶୀ ବାଟ ।

ରୋହିତ—ପିତଃ । ସହସା ଦୁଃଖ-କାଳିମା-ନୀରଦ ଆସି ଛାଙ୍କି ପକାଇଛୁ ମୋର ସୁଖ ତପନକୁ ।

ଗୀତ—

ଆଜି ପ୍ରଭାତୁ ଜନକ ଅନେକ ମନରେ ଭାଳି । ଯାଇଥିଲି ଜନନୀଙ୍କ ନିକଟେ କରିବି ଅଳି । [ ପଦ ] × × ଜଣାଇଲି ହୃଦଭାବ । ବଡ଼ ଘୋଡ଼ା କିଣିଦେବ । ଲୋଡ଼ାନାହିଁ ଶ୍ରେଷ୍ଠ ଅଶ୍ୱ ମାଗିଲି ଆଗେ ଓଗାଳି । ୨ । କି ଭାବି ଭାଷିଲେ ମାତ । ତୁ ଅଟୁ ଦୁଃଖିନୀ ସୁତ । ସେହି ବାକ୍ୟ ବାଣାଘାତେ ମୋ ଦମ୍ଭ ଯାଇଛି ଟଳି । ଦୁଃଖିନୀ ବାଳକ କପାଁ ମୁଁ ହେବି କହିଲେ ବାପା । ବଇ କହେ କାହିଁ ପାଇଁ ହେଲି ଦରିଦ୍ର ଭଳି ।

ରାଜା—ଧୈର୍ଯ୍ୟ ଧର ବାପ ରେ ରୋହିତ । କାଲି ହେବ ଶ୍ରୀପଞ୍ଚମୀ, ବସନ୍ତ ଉତ୍ସବ କାମଦେବ ପୂଜା ନୂଆ ଅଶ୍ୱ କିଣିଦେବି ନିଜେ । (ସ୍ୱଗତ) ମୁହିଁ ଯାଇନାହିଁ ଅନ୍ତଃପୁରେ ଗତ ରଜନୀରେ, ସେ ହେତୁ କୁପିତା ମହାରାଣୀ ଛଳବାଣୀ ଭଣିଲେ ସେ ଯାହା ବୁଝେଁ ତାହା ରୋହିତାଶ୍ୱ ପ୍ରତି । ସେହି ବାକ୍ୟବାଣ, ବାଜେ ବକ୍ଷେ ଶତ ଶେଳସମ (ପ୍ରକାଶ୍ୟେ) ବତ୍ସ ।

ଆଜ ଯାଇ ମାତାଙ୍କୁ ତୋ
କରିଦେବି ମନା ।
ନ କହିବେ ଆଉ ଦିନେ
ତୋତେ ସେହି କଥା ।

**ଯାତ୍ରାର ପତନ—**

ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଲୋକରୁଚିରେ ମଧ୍ୟ ପରିବର୍ତ୍ତନ ହେଲା । ଚଳଚିତ୍ରର ବହୁଳ ପ୍ରଚାର ଏବଂ ଆଧୁନିକ ରଙ୍ଗମଞ୍ଚର ବିକାଶ ଫଳରେ ପଲ୍ଲୀ ସଂସାରରେ ମଧ୍ୟ ତାହାର ପ୍ରଭାବ ପଡ଼ିଲା । ଜନସାଧାରଣ ଯାତ୍ରାର, ଅଶ୍ଳୀଳ, ଅରୁଚିକର କଥା ପସନ୍ଦ କଲେନାହିଁ । ପୂର୍ବାପେକ୍ଷା ଜୀବନ-ସଂଗ୍ରାମ ଅତ୍ୟନ୍ତ ଜଟିଳ ହୋଇ ପଡ଼ିଲା । ଯେଉଁମାନେ ପଲ୍ଲୀ-ସଂସାରର ଯାତ୍ରା, ଗୀତିନାଟ୍ୟର ପୃଷ୍ଠପୋଷକତା କରୁଥିଲେ, ସେମାନଙ୍କର ପ୍ରଭାବ ହ୍ରାସ ହୋଇଗଲା । ରାସ୍ତାଘାଟ ଓ ପରିବହନର ଉନ୍ନୟନ ଫଳରେ ପଲ୍ଲୀ ଓ ନଗର ଜୀବନ ମଧ୍ୟରେ ନିବିଡ଼ ସମ୍ପର୍କ ପ୍ରତିଷ୍ଠିତ ହେଲା । ସଭ୍ୟତାର ପ୍ରସାର ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ଅଭାବବୋଧ ବୃଦ୍ଧିଲାଭ କରିବାରୁ ଜନସାଧାରଣ ଯାତ୍ରା, ମେଳା, ମହୋତ୍ସବ ଉଦ୍ଦେଶ୍ୟରେ ପୂର୍ବଭଳି ଅର୍ଥ ବିନିଯୋଗ କରିବାକୁ କୁଣ୍ଠିତ ହେଲେ । ଅବକାଶ ସମୟରେ ପଲ୍ଲୀର ଶିକ୍ଷିତ ଲୋକେ ସାମୟିକ ରଙ୍ଗମଞ୍ଚ ପ୍ରତିଷ୍ଠା କରି ସୌଖୀନ କଳାକାରମାନଙ୍କ ଜରିଆରେ ନାଟକ ପ୍ରଦର୍ଶନ କରାଇବା ଦ୍ୱାରା ଯାତ୍ରା ପ୍ରତି ଲୋକେ କ୍ରମଶଃ ବୀତସ୍ପୃହ ହେଲେ । ଏହିଭଳି ବିଭିନ୍ନ କାରଣ ଯାତ୍ରାର ପ୍ରଭାବ ହ୍ରାସ ପାଇଁ ମୁଖ୍ୟତଃ ଦାୟୀ । ତେବେ ମଧ୍ୟ ଉତ୍କଳର ପଲ୍ଲୀ-ସଂସାରରେ ଗୀତିନାଟ୍ୟ ଅଥବା ଯାତ୍ରା ଆହୁରି ଅନେକ କାଳ ମନୋରଞ୍ଜନର ଏକମାତ୍ର ମାଧ୍ୟମ ହୋଇ ରହିବ ବୋଲି ଆଶା କରାଯାଏ ।

# ଓଡ଼ିଆ ସାହିତ୍ୟ ଓ ପତ୍ରପତ୍ରିକା

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା । ଇଂରେଜ ଶାସନର ପ୍ରଥମ କାଳରେ ଓଡ଼ିଶାରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରାଯାଇ ଏକ ନୂତନ ଯୁଗର ସୂତ୍ରପାତ ହୋଇଥିଲା । ଇଂରେଜୀ ସାହିତ୍ୟ ଓ ଶାସନ ସମ୍ପର୍କରେ ଆସି ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ଅଦ୍ଭୁତ ପରିବର୍ତ୍ତନ ସମ୍ଭବ ହୋଇଥିଲା । ଏହି ଯୁଗରେ ନାନା ବିପ୍ଳବାତ୍ମକ ପରିବେଷ୍ଟନୀ ମଧ୍ୟରେ ସାମାଜିକ ଜୀବନର ବହୁଳ ଚର୍ଚ୍ଚା କରାଯାଇଥିଲା । ଫଳରେ ଓଡ଼ିଶାରେ ପତ୍ରପତ୍ରିକାର ଅଭ୍ୟୁଦୟ ପାଇଁ ପଥ ପରିଷ୍କୃତ ହୋଇଯାଇଥିଲା । ଏହି ଯୁଗ ପୂର୍ବରୁ ସାମାଜିକ ଚେତନା ସେତେ ସ୍ପଷ୍ଟ ନ ଥିଲା । ତେଣୁ ସାହିତ୍ୟ କେବଳ ପଦ୍ୟମୟ ହୋଇ ରହିଥିଲା । କାରଣ ପଦ୍ୟ ହେଉଛି ସମାଜର ପ୍ରକାଶିତ କଳ୍ପନା । ଅନ୍ୟ ପକ୍ଷର ଗଦ୍ୟ ହେଉଛି ସାମାଜିକ ଜୀବନର ଆଲୋଚନା ଓ ଏହି ଆଲୋଚନା ସହିତ ସମ୍ବାଦପତ୍ରର ଜନ୍ମ ଇତିହାସ ଅତି ନିବିଡ଼ । ସମ୍ବାଦପତ୍ର ହେଉଛି ଏହି ଅଭ୍ୟୁଦୟର ମୂଳ କାରଣ । ପୁନଶ୍ଚ ସମ୍ବାଦପତ୍ରର ପ୍ରଚାର ଫଳରେ ହିଁ ସମୃଦ୍ଧ ଗଦ୍ୟ ଭାଷାର ପ୍ରଚଳନ ସମ୍ଭବ ହୋଇଅଛି । ପ୍ରାଚୀନ ସାହିତ୍ୟ ପରି ଆଧୁନିକ ସାହିତ୍ୟ ପଦ୍ୟ-ପ୍ରଧାନ ନ ହୋଇ ଗଦ୍ୟ-ପ୍ରଧାନ ହୋଇଅଛି । ତେଣୁ ଆଧୁନିକ ସାହିତ୍ୟର ଆଲୋଚନା କଲାବେଳେ ସମ୍ବାଦପତ୍ରର ଆଲୋଚନା ମଧ୍ୟ ସ୍ୱତଃ ହେବା ସ୍ୱାଭାବିକ ।

ସାଧାରଣ ଆଲୋଚକଗଣ ସାହିତ୍ୟ ଆଲୋଚନା କଲାବେଳେ ସାମ୍ବାଦିକମାନଙ୍କର ଗୁରୁତ୍ୱ ଉପଲବ୍ଧି କରନ୍ତି ନାହିଁ । ମାତ୍ର ଇତିହାସ ଆଲୋଚନାରୁ ଜଣାଯାଏ ଯେ ସମ୍ବାଦପତ୍ର ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମଦାତା । କେବଳ ସାହିତ୍ୟିକ ନୁହଁନ୍ତି, ଚିରସ୍ମରଣୀୟ ସାମ୍ବାଦିକମାନଙ୍କର ଅକ୍ଳାନ୍ତ ପ୍ରଚେଷ୍ଟା ଓ ଅଦମ୍ୟ ଉତ୍ସାହ ବଳରେ ହିଁ ଆଧୁନିକ ଓଡ଼ିଆ ସାହିତ୍ୟ ନାନା ପ୍ରତିକୂଳ ଅବସ୍ଥା ଅତିକ୍ରମ କରି ପ୍ରଗତି-ପଥରେ ଅଗ୍ରସର ହୋଇଅଛି ।

ଏ ପ୍ରଶ୍ନର ଆଲୋଚନା କଲାବେଳେ ଆଧୁନିକ ସମ୍ବାଦପତ୍ର ଓ ସାମ୍ବାଦିକମାନଙ୍କୁ ସାମୂହିକ ଭାବରେ ଗ୍ରହଣ କରାଯାଇ ପାରିବ ନାହିଁ । କାରଣ ଆଜି ସମାଜ ସେବାର ଆଦର୍ଶ ଓ ପରିସର ଯଥେଷ୍ଟ ବ୍ୟାପକ ହୋଇ ପଡ଼ିଥିବାରୁ ସମ୍ବାଦପତ୍ର ଓ ସାମ୍ବାଦିକ-ମାନଙ୍କର କାର୍ଯ୍ୟ ମଧ୍ୟ ବିଭିନ୍ନ-ମୁଖୀ ହେବା ସ୍ୱାଭାବିକ । ଏ ଦେଶରେ ସମ୍ବାଦପତ୍ରର ଅଭ୍ୟୁଦୟ କାଳରେ ଯେଉଁମାନେ ସାମ୍ବାଦିକ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ,

ସେମାନେ ଥିଲେ ଅସାଧାରଣ । ସେମାନଙ୍କ ଯୋଗ୍ୟତା ସମ୍ପର୍କରେ ନିମ୍ନୋକ୍ତ ଉକ୍ତିଟି ବିଚାରକୁ ନିଆଯାଇପାରେ—

"To be a journalist in those days was to be a writer either of political leading articles or of fanciful scholarly, light essays newspaper men who did not actually write were not considered to be journalists This distinction, by the way, is still observed in the United States" (Practical knowledge for all—Sir John Hammerton, Vol. III P. 438)

ମୋଟ ଉପରେ ସାମ୍ବାଦିକ ଜଣେ ବିଶିଷ୍ଟ ଲେଖକ ହେବା ଉଚିତ । ନଚେତ୍ ସାମ୍ବାଦିକ ହେବାର ଯୋଗ୍ୟତା ତାଙ୍କର ନାହିଁ ବୋଲି ବିବେଚନା କରାଯିବ । ଏବେ ମଧ୍ୟ ଯୁକ୍ତରାଷ୍ଟ୍ର ଆମେରିକାରେ ସାମ୍ବାଦିକ ମନୋନୟନ ବେଳେ ଏହି ଯୋଗ୍ୟତା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯାଏ । ଅବଶ୍ୟ ଓଡ଼ିଶାରେ ତାହା କଠୋର ଭାବରେ ବର୍ତ୍ତମାନ ଅନୁସୃତ ହେଉନାହିଁ ।

ଓଡ଼ିଶାରେ ଆଧୁନିକ ସାମ୍ବାଦିକତାର ଅଭ୍ୟୁଦୟ ହେବା ପୂର୍ବରୁ ଓଡ଼ିଆ ସାହିତ୍ୟର ଅବସ୍ଥା କିଣ ଥିଲା ତାହା ଓଡ଼ିଆ ସାମ୍ବାଦିକତାର ପିତା ଗୌରୀଶଙ୍କରଙ୍କର ଜୀବନୀ ପାଠକଲେ ସ୍ପଷ୍ଟ ଅନୁମାନ କରାଯାଇପାରେ । ସେତେବେଳେ ପ୍ରାଚୀନ ଓଡ଼ିଆ କାବ୍ୟ-ସାହିତ୍ୟକୁ ଅଶ୍ଳୀଳ ବୋଲି ଶିକ୍ଷିତ ସମାଜ ପରିତ୍ୟାଗ କରିଥିଲେ ଏବଂ ତାହା ପାଠ୍ୟପୁସ୍ତକ ହେବାର ଯୋଗ୍ୟତା ହରାଇ ବସିଥିଲା । ଏପରିକି ଗୃଣକ୍ୟଙ୍କ ନୀତି ଶ୍ଳୋକ ମଧ୍ୟ ଅଶ୍ଳୀଳ ବୋଲି ଦୂଷିତ ହୋଇଥିଲା । ସେତେବେଳେ ଓଡ଼ିଶାରେ ମୁଦ୍ରାଯନ୍ତ୍ର ବହୁଳ ପ୍ରଚାର ହୋଇ ନ ଥିଲା । ମିସନାରୀମାନଙ୍କ ପ୍ରଯତ୍ନରେ ମିସନ ଛାପାଖାନା ସ୍ଥାପିତ ହୋଇ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ପୁସ୍ତକ ଏବଂ ପାଦ୍ରୀମାନଙ୍କ କୃତ ଓଡ଼ିଆ ପୁସ୍ତକ ପ୍ରକାଶ କରୁଥିଲେ । ସେହି ସବୁ ପୁସ୍ତକ ସେ କାଳରେ ପାଠ୍ୟପୁସ୍ତକ ଭାବରେ ପ୍ରଚଳିତ ଥିଲା । ପୁନଶ୍ଚ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଅଭାବ ଉପଲବ୍ଧି କରି ବଙ୍ଗଳାଭାଷା ସ୍କୁଲମାନଙ୍କରେ ପାଠ୍ୟ ଭାବରେ ପ୍ରବର୍ତ୍ତିତ କରାଗଲା । ଓଡ଼ିଆ ଭାଷାକୁ ଲୋପ କରି ବଙ୍ଗଳା ସାହିତ୍ୟକୁ ଏ ଦେଶରେ ଚଳାଇ ଦେବାପାଇଁ ପ୍ରବଳ ଉଦ୍ୟମ ହୋଇଥିଲା । ଏହି ଜାତୀୟ ସଙ୍କଟ ସମୟରେ କର୍ମଯୋଗୀ ଗୌରୀଶଙ୍କର, ବିଚଦାନନ୍ଦ, ନନ୍ଦକିଶୋର ଦାସ, ଫକୀରମୋହନ ନୀଳମଣି ବିଦ୍ୟାରତ୍ନ, ମଧୁସୂଦନଙ୍କ ଭଳି ଲେଖକ ଓ ସାମ୍ବାଦିକ ସମ୍ବାଦପତ୍ର ପ୍ରକାଶ କରି ଓଡ଼ିଆ ସାହିତ୍ୟ ଓ ଭାଷାକୁ ପ୍ରତିଷ୍ଠିତ କରିବା ପାଇଁ ବଦ୍ଧପରିକର ହୋଇ ନ ଥିଲେ ଓଡ଼ିଆ ଭାଷା ଲୋପ ପାଇଯାଇଥାଆନ୍ତା । ଯାହାହେଉ ଦେଶର ଏକ ଶୁଭକ୍ଷଣରେ ୧୮୬୫ ସାଲର ଅଗଷ୍ଟ ମାସରେ ଗୌରୀଶଙ୍କରଙ୍କ ସୁଯୋଗ୍ୟ ସମ୍ପାଦନାରେ 'ଉତ୍କଳ ଦୀପିକା' ପ୍ରକାଶିତ ହେଲା । ଏହି ବିଖ୍ୟାତ ପତ୍ରିକା ଜନ୍ମଲାଭ କଲାପରେ ଉତ୍କଳରେ ନବଯୁଗର

ଆରମ୍ଭ ହେଲା ବୋଲି କହିବାକୁ ହେବ । ସାହିତ୍ୟ, ଶିକ୍ଷା, ବାଣିଜ୍ୟ ଓ ସାମାଜିକ ସଂସ୍କାର ପ୍ରଭୃତି ପ୍ରତ୍ୟେକ ଦିଗରେ "ଦୀପିକା" ବହୁକାଳ ଧରି ଉତ୍କଳରେ ଅଗ୍ରଣୀ ହୋଇଥିଲା । ଦୀପିକାର ଲୋକପ୍ରିୟତା ଆଉ କୌଣସି ପତ୍ରିକାର ଭାଗ୍ୟରେ ଘଟି ନାହିଁ । ଆଧୁନିକ କାଳର ଆଦର୍ଶରେ ଦୀପିକା ଓ ଅନ୍ୟ ପତ୍ରିକାଗୁଡ଼ିକ ସାହିତ୍ୟ ପତ୍ରିକା ନ ହେଲେ ହେଁ ସେମାନେ ସାଧାରଣ ସମ୍ବାଦପତ୍ର ନ ଥିଲେ । 'ଦୀପିକା' 'ନବସମ୍ବାଦ' 'ସମ୍ବାଦ ବାହିକା' 'ଉତ୍କଳ ହିତୈଷିଣୀ' ଭଳି ସେ କାଳର ବିଖ୍ୟାତ ସମ୍ବାଦପତ୍ରଗୁଡ଼ିକ ସାହିତ୍ୟ ସୃଷ୍ଟିରେ ଯେପରି କାର୍ଯ୍ୟ କରିଛନ୍ତି, ତାହା ଆଧୁନିକ ଯେ କୌଣସି ପ୍ରତିଷ୍ଠିତ ସାହିତ୍ୟିକ ପତ୍ରର ଗୌରବଠାରୁ ମଧ୍ୟ ଗରୀୟାନ । କାରଣ ସେହି ପ୍ରାଚୀନ ପତ୍ରିକା-ଗୁଡ଼ିକର ଜୀର୍ଣ୍ଣ ପୃଷ୍ଠା ଆଲୋଚନା କଲେ ବର୍ତ୍ତମାନ ଜଣାଯାଏ ଯେ ସେମାନେ ଦେଶର ଏକ ନୈରାଶ୍ୟଜନକ ମୁହୂର୍ତ୍ତରେ ଆଶାର ସଞ୍ଚାର କରିଥିଲେ ଓ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିଥିଲେ ।

କଟକର 'ଦୀପିକା' ସେତେବେଳେ ଓଡ଼ିଶାର ଏକମାତ୍ର ପତ୍ରିକା । ଏତିକବେଳେ ଓଡ଼ିଆ ସାହିତ୍ୟ ଓ ସମାଜର ଉନ୍ନତିକଳ୍ପେ ଯୁଗସ୍ରଷ୍ଟା ଫକୀରମୋହନ ଓ ଅନ୍ୟ କେତେଜଣ ବିଶିଷ୍ଟ ସମାଜସେବୀଙ୍କ ଉଦ୍ୟମରେ ୧୮୬୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ପ୍ରଥମ ଛାପାଖାନା ପ୍ରତିଷ୍ଠିତ ହେଲା । ଫକୀରମୋହନଙ୍କ ଆତ୍ମଜୀବନୀ ପାଠକଲେ ଏ ସମ୍ପର୍କରେ ନାନା କୌତୂହଳୋଦ୍ଦୀପକ ସମ୍ବାଦ ପାଠକ ଲାଭ କରିଥାଏ । "ଛାପାଖାନାର କାର୍ଯ୍ୟ ସୁନ୍ଦର ରୂପେ ଚାଲିବାକୁ ଲାଗିଲା । ଅନେକ ଲାଭ ମଧ୍ୟ ହେଉଥାଏ । ଇତିପୂର୍ବେ କଟକ ପ୍ରିଣ୍ଟିଂ କୋମ୍ପାନୀ 'ଉତ୍କଳ ଦୀପିକା' ନାମ୍ନୀ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ । ଆମ୍ଭମାନଙ୍କ ପ୍ରେସରୁ ଗୋଟିଏ ପାକ୍ଷିକ ପତ୍ରିକା ବାହାର କରାଯିବା ସକାଶେ କୋମ୍ପାନୀର କାର୍ଯ୍ୟ ନିର୍ବାହିକା ସମିତି ପ୍ରସ୍ତାବ ଏବଂ ସ୍ଥିର କଲେ । ପତ୍ରିକାର ନାମ ହେଲା 'ବୋଧଦାୟିନୀ' ଏବଂ 'ବାଲେଶ୍ୱର-ସମ୍ବାଦ-ବାହିକା' ।" ବୋଧଦାୟିନୀ ଅଂଶ ସାହିତ୍ୟ ବିଷୟକ ଏବଂ ସମ୍ବାଦ-ବାହିକା ଅଂଶ ସମ୍ବାଦ-ବିଷୟକ । ପତ୍ରିକା ବାହାରିଲା, ମାତ୍ର ଲେଖକ ଅଭାବ । "(ଫକୀରମୋହନ ଆତ୍ମଜୀବନୀ—ପ୍ରକାଶ-କାଳ ୧୯୨୭—ପୃ ୪୭)" ସେ କାଳରେ ଓଡ଼ିଶାରେ କିପରି ଲେଖକ ଦୁର୍ଭିକ୍ଷ ପଡ଼ିଥିଲା, ତାହା ଫକୀରମୋହନଙ୍କ ନିଜ ଚରିତରୁ ଜଣାଯାଏ । ସେତେବେଳେ ଓଡ଼ିଆ ସାହିତ୍ୟର ଅଭାବ ମୋଚନାର୍ଥେ ଯେଉଁ କେତେଜଣ ପୁସ୍ତକ ରଚନା କରୁଥିଲେ ଅଥବା ପତ୍ରପତ୍ରିକାରେ ଲେଖା ପ୍ରକାଶ କରୁଥିଲେ ସେମାନଙ୍କ ମଧ୍ୟରେ ବିଚ୍ଛନ୍ଦ ପଟ୍ଟନାୟକ, ବିଚିତ୍ରାନନ୍ଦ ଦାସ, ଜଗମୋହନ ଲାଲ୍, ଫକୀରମୋହନ ସେନାପତି, ପ୍ରଭାକର ବିଦ୍ୟାରତ୍ନ, କପିଳେଶ୍ୱର ବିଦ୍ୟାଭୂଷଣ ପ୍ରଭୃତି ପ୍ରଧାନ । "ସମ୍ବାଦ ବାହିକା" ପରେ ପରେ "ନବସମ୍ବାଦ" ବିଶେଷ ପ୍ରଣିଧାନ-ଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ ।

ଏହି ପତ୍ରିକାଟି ସାପ୍ତାହିକ ଭାବରେ ୧୮୮୭ ମସିହା ଜାନୁୟାରୀ ୨୩ ତାରିଖ ଦିନ ପ୍ରଥମେ ଆତ୍ମପ୍ରକାଶ କରିଥିଲା ଏବଂ ଧର୍ମନୀତି, ରାଜନୀତି, ସମାଜନୀତି, ସାହିତ୍ୟ,

ଦର୍ଶନ, ବିଜ୍ଞାନାଦି ବିଷୟକ ସାପ୍ତାହିକ ପତ୍ରିକା ବୋଲି ନିଜ ପୃଷ୍ଠ ଦେଶରେ ଘୋଷଣା କରିଥିଲା । ବାସ୍ତବରେ ଓଡ଼ିଆ ସାହିତ୍ୟ, ରାଜନୀତି ଓ ସଂସାର ସମ୍ପର୍କରେ ଏହି ପତ୍ରିକା ଯେପରି ବହୁକାଳଧରି ଆନ୍ତରିକତାର ସହିତ କାର୍ଯ୍ୟ କରି ଆସିଥିଲା, ତାହା ଏକାଳର କ୍ଷୁଦ୍ର ସାପ୍ତାହିକ ପତ୍ର ପକ୍ଷରେ ଦୁର୍ଲଭ କହିଲେ ଚଳେ । ଏକ ବର୍ଷ ପରେ ୧୮୮୮ ସାଲରୁ ଏହି ପତ୍ରିକା "ଓଡ଼ିଆ ଓ ନବସମ୍ବାଦ" ନାମରେ ପ୍ରକାଶିତ ହୋଇଥିଲା । ଏହି ପତ୍ରିକାରେ ରାଧାନାଥ, ମଧୁସୂଦନ, ରାମନାରାୟଣ ଲାଲ, ରୁଦ୍ରନାରାୟଣ ଷଡ଼ଙ୍ଗୀଙ୍କ ଭଳି ବହୁ ବିଶିଷ୍ଟ ଲେଖକ ଲେଖନୀ ଚାଳନା କରୁଥିଲେ । ଧାରାବାହିକ ଭାବରେ ବାଣିଜ୍ୟ, ଅର୍ଥନୀତି, ବିଜ୍ଞାନ ଓ ସାହିତ୍ୟ ବିଷୟକ ବହୁ ପ୍ରବନ୍ଧ ଓ ଆଲୋଚନା ଏଥିରେ ପ୍ରକାଶିତ ହୋଇଥିଲା । ଏହି ସମୟରେ ୧୮୯୦ ସାଲ ଡିସେମ୍ବର ମାସର ୩୧ ତାରିଖ "ଓଡ଼ିଆ ଓ ନବସମ୍ବାଦ" ପତ୍ରିକାରେ ମୟୂରଭଞ୍ଜ ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କ ତରଫରୁ ଏକ ନିବେଦନ ପ୍ରକାଶିତ ହୋଇଥିଲା 'An appeal to the Educated Orissa' ଉତ୍କଳବାସୀ କୃତବିଦ୍ୟ ମହାତ୍ମାଙ୍କଠାରେ ନିବେଦନ । "ଯଦି ଉତ୍କଳବାସୀ କୃତବିଦ୍ୟ ଧନୀ ଓ ମଧ୍ୟବିତ୍ତ ସମ୍ପ୍ରଦାୟ ଦେଶୀୟ ସାହିତ୍ୟ ଓ ମାତୃଭାଷାର ଉନ୍ନତି ନିମନ୍ତେ ଏକାନ୍ତ ଯତ୍ନବାନ ହୁଅନ୍ତେ, ତେବେ କି ଆଜି ଏହାର ଅବସ୍ଥା ଏତେଦୂର ଶୋଚନୀୟ ହୋଇଥାନ୍ତା ।"

ଏହି ଉଦ୍ଦେଶ୍ୟରେ ୧୮୯୧ ସାଲ ଏପ୍ରିଲ ମାସରେ "ଉତ୍କଳ ପ୍ରଭା" ନାମକ ସାହିତ୍ୟ ପତ୍ରିକା ପ୍ରକାଶିତ ହେବ ବୋଲି ଘୋଷଣା କରାଯାଇଥିଲା । ତାହାର ନିୟମାବଳୀରେ ଉଲ୍ଲେଖ ଥିଲା, ଛଅଗୋଟି ଉତ୍କୃଷ୍ଟ ଗଦ୍ୟମୟ ପ୍ରବନ୍ଧ ଏକବର୍ଷ ମଧ୍ୟରେ ଯିଏ ଲେଖିଦେବେ, ସେମାନଙ୍କ ମଧ୍ୟରୁ ସର୍ବୋତ୍କୃଷ୍ଟ ଲେଖକଙ୍କୁ ୬୦ ଟଙ୍କା ପୁରସ୍କାର ଦିଆଯିବ । ଛଅଗୋଟି ପଦ୍ୟମୟ ଉତ୍କୃଷ୍ଟ ପ୍ରବନ୍ଧ ଯେଉଁମାନେ ଲେଖିବେ, ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠ ବ୍ୟକ୍ତିଙ୍କୁ ୧୨୦ ଟଙ୍କା ପୁରସ୍କାର ଦିଆଯିବ । ପ୍ରତି ସଂଖ୍ୟାରେ ପ୍ରକାଶିତ ପୁରସ୍କାରଯୋଗ୍ୟ ପ୍ରତି ପ୍ରବନ୍ଧ ପାଇଁ ୧୦ଟଙ୍କା ଏବଂ ପଦ୍ୟ ପାଇଁ ୨୦ ଟଙ୍କା ମିଳିବ । ଏହି ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ପୁସ୍ତକାକାରରେ ଦେଖିବାକୁ ଚାହିଁଲେ ମୟୂରଭଞ୍ଜ ମୁଦ୍ରାଯନ୍ତ୍ରରେ ତାହା ବିନାମୂଲ୍ୟରେ ଛାପା କରାଇ ଦିଆଯିବ । ପୁରସ୍କାରଯୋଗ୍ୟ ପ୍ରବନ୍ଧ ମୌଳିକ ଓ ଉଚ୍ଚକୋଟୀର ହେବା ଉଚିତ । ଇଂରେଜୀ, ବଙ୍ଗଳାରୁ ଭାଷାନ୍ତରିତ ହେବା ଉଚିତ ନୁହେଁ । ଏହି ପ୍ରବନ୍ଧ ନିର୍ବାଚନ ମଣ୍ଡଳୀରେ ରାଧାନାଥ ରାୟ, ନନ୍ଦକିଶୋର ଦାସ, ମଧୁସୂଦନ ରାଓ, ଫକୀରମୋହନ ସେନ, ଭଗବତିଚରଣ ସେନ, ଚତୁର୍ଭୁଜ ପଟ୍ଟନାୟକ, ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ, ଗୋବିନ୍ଦଚନ୍ଦ୍ର ମହାପାତ୍ର, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ପ୍ରଭୃତି ରହିଲେ ।

ଉପରୋକ୍ତ ନିବେଦନରୁ 'ଉତ୍କଳପ୍ରଭା' ସାହିତ୍ୟପତ୍ରର ପ୍ରକାଶରେ କି ମହତ୍ ପରିକଳ୍ପନା ନିହିତ ଥିଲା, ତାହା ଜଣାପଡ଼ୁଛି । ଓଡ଼ିଆ ସାହିତ୍ୟର ବହୁବିଧ କଲ୍ୟାଣ ସାଧନ ପାଇଁ 'ଉତ୍କଳ ପ୍ରଭା'ର ଦାନ ଅପରିସୀମ । ଏହି ପତ୍ରିକାଟି ଅଳ୍ପକ୍ଷଣ ସ୍ଥାୟୀ ହୋଇଥିଲେ ହେଁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠାତା ଓ ବରପୁତ୍ରମାନଙ୍କୁ

ପ୍ରତିଷ୍ଠିତ କରିବାରେ ଉତ୍କଳ ପ୍ରଭା ହିଁ ପ୍ରଧାନ ସହାୟକ ବୋଲି ପରିଗଣିତ ହୋଇଥିଲା । ଏହି ପତ୍ରିକାରେ ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରଥମ ଉପନ୍ୟାସ ରାମଶଙ୍କର ରାୟଙ୍କ ବିବାସିନୀ, ବିଶ୍ୱନାଥ କରଙ୍କ ବିବିଧ ପ୍ରବନ୍ଧର ସମସ୍ତ ପ୍ରବନ୍ଧ, ରାଧାନାଥ ରାୟଙ୍କ ଚିଲିକା, ମହାଯାତ୍ରା, ମଧୁସୂଦନଙ୍କ ଋଷିପ୍ରାଣେ ଦେବାବତରଣ ଓ ଲାଲ୍ ରାମନାରାୟଣଙ୍କ ପ୍ରସିଦ୍ଧ ଉପେନ୍ଦ୍ରଭଞ୍ଜ ଆଲୋଚନା ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା । ଏତଦ୍‌ବ୍ୟତୀତ ଉନ୍ନତ ଧରଣର ବହୁ ପ୍ରବନ୍ଧ, ଆଲୋଚନା ଓ କବିତା ମଧ୍ୟ ପ୍ରକାଶିତ ହେଉଥିଲା । ଆଲୋଚ୍ୟ ପତ୍ରିକାର ଲେଖକ ଭାବରେ ବିଭିନ୍ନ ସମୟରେ ଚନ୍ଦ୍ରମୋହନ ମହାରଣା, ରାଧାନାଥ ରାୟ, ବିଶ୍ୱନାଥ କର, ମଧୁସୂଦନ ରାଓ, ଗଣପତି ଦାସ, ବିଜୟ ମଜୁମଦାର, ଗୋବିନ୍ଦଚନ୍ଦ୍ର ମହାପାତ୍ର ପ୍ରଭୃତି ପୁରସ୍କୃତ ହୋଇଥିଲେ । ମାତ୍ର ଦୁଃଖର କଥା ଯେ ରାଜପୃଷ୍ଠପୋଷକତା ଓ ବହୁ ସାହିତ୍ୟ ରଥୀଙ୍କର ସହଯୋଗ ଲାଭ କରି ମଧ୍ୟ ଏହି ପ୍ରସିଦ୍ଧ ପତ୍ରିକା ଲେଖା ଅଭାବରେ ମୃତ୍ୟୁବରଣ କଲାବୋଲି ନବ ସମ୍ବାଦର ୧୬।୯।୧୯ ସଂଖ୍ୟାରେ ପ୍ରକାଶିତ ସମ୍ବାଦରୁ ଜଣାପଡ଼େ ।

ଓଡ଼ିଆ ସାହିତ୍ୟର ପ୍ରଥମ ଔପନ୍ୟାସିକ ଉମେଶଚନ୍ଦ୍ର ସରକାର ତାଙ୍କର 'ପଦ୍ମମାଳୀ' ପ୍ରକାଶ ପାଇଁ କୌଣସି ପତ୍ରିକାର ଆଶ୍ରୟ ଗ୍ରହଣ କରି ନ ଥିଲେହେଁ ତାଙ୍କର ଦ୍ୱିତୀୟ ଉପନ୍ୟାସଟି କୌଣସି ଏକ ପତ୍ରିକାରେ କ୍ରମଶଃ ପ୍ରକାଶିତ ହେଉଥିଲା । ମାତ୍ର ସେହି ପତ୍ରିକାଟି ଅକାଳରେ ବିଲୟ ଭଜିବାରୁ ଉପନ୍ୟାସଟି ମଧ୍ୟ ଅପୂର୍ଣ୍ଣ ରହିଗଲା । ମାତ୍ର ଏହି ଯୁଗର ରାମଶଙ୍କରଙ୍କର ତିନୋଟିଯାକ ଉପନ୍ୟାସ ବିଭିନ୍ନ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଓଡ଼ିଶାରେ ପତ୍ରପତ୍ରିକାର ଅଭାବ ଉପଲବ୍‌ଧି କରି ସେ 'ଉତ୍କଳ ମଧୁପ' ପ୍ରକାଶ କରୁଥିଲେ । ମାତ୍ର ଉପନ୍ୟାସ ସାଙ୍ଗ ହେବା ପୂର୍ବରୁ ଗ୍ରାହକ ଅଭାବରେ ପତ୍ରିକା ବନ୍ଦ ହୋଇଗଲା । ୧୮୭୮ ଠାରୁ ଦୁଇବର୍ଷ ଯାଏଁ 'ମଧୁପ' ପ୍ରକାଶିତ ହୋଇଥିଲା । ଦ୍ୱିତୀୟ ଉପନ୍ୟାସ 'ବିବାସିନୀ' ୧୮୯୨ ମସିହା ବୈଶାଖ ମାସରୁ ୧୮୯୫ ଆଷାଢ଼ ପର୍ଯ୍ୟନ୍ତ ଧାରାବାହିକଭାବେ 'ଉତ୍କଳପ୍ରଭା'ରେ ପ୍ରକାଶ ଲାଭ କରିଥିଲା । ତାପରେ ଇନ୍ଦ୍ରଧନୁ ପତ୍ରିକାର ଅନୁରୋଧରେ ସେ 'ଉନ୍ମାଦିନୀ' ଉପନ୍ୟାସ ଧାରାବାହିକ ଲେଖିଥିଲେ । ମାତ୍ର ପତ୍ରିକାଟି ଅଳ୍ପକାଳ ପରେ ବନ୍ଦ ହୋଇଯିବାରୁ ଉପନ୍ୟାସଟି ମଧ୍ୟ ଅପୂର୍ଣ୍ଣ ରହିଗଲା । ଆଧୁନିକ ଓଡ଼ିଆ ସାହିତ୍ୟରେ ଇନ୍ଦ୍ରଧନୁ ଓ ବିଜୁଳିର ସ୍ଥାନ ଅବିସ୍ମରଣୀୟ । ଯେତେବେଳେ ଉପେନ୍ଦ୍ରଭଞ୍ଜ ଓ ରାଧାନାଥଙ୍କୁ କେନ୍ଦ୍ର କରି ଯେଉଁ ସାହିତ୍ୟିକ କଳହ ଆରମ୍ଭ ହୋଇଥିଲା, ତାହା ଫଳରେ ସାମୟିକ ଭାବରେ ଯେତେ ଅଶୋଭନୀୟ ପରିସ୍ଥିତି ସୃଷ୍ଟି ହେଉନା କାହିଁକି, ଓଡ଼ିଆ ସାହିତ୍ୟର ସୁସ୍ଥ ଓ ବୈଜ୍ଞାନିକ ଆଲୋଚନା ପାଇଁ କ୍ରମଶଃ ଯେ ଆଗ୍ରହ ପ୍ରକାଶ ପାଇଥିଲା ଏଥିରେ ଆଦୌ ସନ୍ଦେହ ନାହିଁ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏହି କେତେଗୋଟି ପତ୍ରିକାର ଅଭ୍ୟୁଦୟ ଏବଂ ଅକ୍ଳାନ୍ତ ସାହିତ୍ୟ ଚର୍ଚ୍ଚା ଫଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସାହିତ୍ୟ ଚର୍ଚ୍ଚା ଓ ସୃଷ୍ଟି ପାଇଁ ଅନୁରାଗ ପ୍ରକାଶ ପାଇଲା ।

ବାମଣ୍ଡାର 'ଆଲୋଚନା', କଟକର 'ଉତ୍କଳସାହିତ୍ୟ' ପ୍ରଭୃତ ପତ୍ରିକା, ସାହିତ୍ୟ ଓ ଲେଖକ ସୃଷ୍ଟି କରିବାରେ ଅଗ୍ରଣୀ ହୋଇଥିଲେ । ବିଂଶ ଶତାବ୍ଦୀରେ ଆଧୁନିକ ଓଡ଼ିଆ ସାହିତ୍ୟକୁ ଗଢ଼ିବାରେ ସତ୍ୟବାଦୀ, ଯୁଗବାଣୀ, ସହକାର, ନବଭାରତ ଶଙ୍ଖ ଚତୁରଙ୍ଗ, ଝଙ୍କାର, ଡଗର ଭଳି ପତ୍ରିକାର କେତେ ଦାନ ଅଛି, ତାହା ଏହି କ୍ଷୁଦ୍ର ପ୍ରବନ୍ଧରେ ଆଲୋଚନା କରିବା ସମ୍ଭବ ନୁହେଁ । ତେବେ ଆଧୁନିକ ଯୁଗର ବିଭିନ୍ନ କ୍ଷେତ୍ରରେ ଯେଉଁମାନେ ଅଗ୍ରଣୀ ହୋଇଛନ୍ତି, ସେମାନେ ସମସ୍ତେ ଅତି ଘନିଷ୍ଠ ଭାବରେ ସାମ୍ବାଦିକତା ସହିତ ସମ୍ପୃକ୍ତ ଥିବା ଜଣାଯାଏ । ଫକୀରମୋହନ, ମଧୁସୂଦନ, ରାଧାନାଥ, ରାମଶଙ୍କର, ଗୌରୀଶଙ୍କର, ଗୋପବନ୍ଧୁ, ନୀଳକଣ୍ଠ, କାଳିନ୍ଦୀଚରଣ, ମାୟାଧର ମାନସିଂହ, ହରେକୃଷ୍ଣ ମହତାବ, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି କେହି ଏହାର ବ୍ୟତିକ୍ରମ ନୁହନ୍ତି । ଏଣୁ ଆଧୁନିକ ସମାଜକୁ ଗଠନ କରିବାରେ ସମ୍ବାଦପତ୍ର ଓ ସାହିତ୍ୟ ପରସ୍ପର ହାତ ମିଳାଇ ଗତି କରୁଅଛନ୍ତି ।

## ମିଷ୍ଟିସିଜିମ୍

'ମିଷ୍ଟିସିଜମ୍' ଏହି ଶବ୍ଦଟି ସାଧାରଣତଃ ରହସ୍ୟବାଦ, ମରମବାଦ, ଅତୀନ୍ଦ୍ରିୟବାଦ କିମ୍ବା ବ୍ରହ୍ମବାଦ ଅର୍ଥରେ ବୁଝାଯାଇଥାଏ । କେହି କେହି ଏହାକୁ ଗୁପ୍ତବାଦ ଅର୍ଥରେ ମଧ୍ୟ ନାମିତ କରିଥାନ୍ତି । ଯେଉଁ ଭାବନା ସହଜ ଓ ସ୍ୱାଭାବିକ ଭାବରେ ପ୍ରକାଶିତ ନ ହୋଇ ରହସ୍ୟର ଉଦ୍‌ଘାଟନ କରେ ଅଥବା କୌଣସି ନୂତନ ସତ୍ୟର ଇଙ୍ଗିତ ପ୍ରଦାନ କରେ, ତାହା ରହସ୍ୟବାଦ ।

ଭାରତୀୟ ସାହିତ୍ୟରେ ଏହି ରହସ୍ୟବାଦର ଧାରଣା ଅତ୍ୟନ୍ତ ପ୍ରାଚୀନ । ଆତ୍ମାର ପରମାତ୍ମାଙ୍କ ସହିତ ଆକର୍ଷଣ ଅଥବା ଆତ୍ମା ଓ ପରମାତ୍ମାଙ୍କ ମିଳନଜନିତ ଭାବନାକୁ ରହସ୍ୟାବୃତ କରି ପ୍ରକାଶ କରାଯାଉଥିଲା । ଏହି ପ୍ରକାର ଭାବନାକୁ ଆଧ୍ୟାତ୍ମିକବାଦ ମଧ୍ୟ କୁହାଯାଇପାରେ । ଭଗବାନ୍ ଅଥବା ଜଗତ ସମ୍ପର୍କରେ ଅତ୍ୟନ୍ତ କୌତୂହଳଜନକ ଧାରଣାକୁ ମିଷ୍ଟିସିଜମ୍ ଅର୍ଥରେ ଗ୍ରହଣ କରାଯାଏ । ସେଥିପାଇଁ ମିଷ୍ଟିକ୍‌ର ସଂଜ୍ଞା ହେଉଛି— One who believes in spiritual apprehension of truths beyond the understanding.

### ପ୍ରାଚୀନ ପରମ୍ପରା—

ଭାରତୀୟ ପ୍ରାଚୀନ କବିମାନେ ଯେତେବେଳେ କୌଣସି ଅଜ୍ଞାତ ଅନନ୍ତ ଶକ୍ତିର ସନ୍ଧାନ ପାଇଁ ବ୍ୟାକୁଳ ହୋଇଛନ୍ତି, ସେତେବେଳେ ରହସ୍ୟପୂର୍ଣ୍ଣ ଅଭିବ୍ୟକ୍ତି ମାଧ୍ୟମରେ ସାହିତ୍ୟ ରଚିତ ହୋଇଅଛି । ସାଧାରଣ ପାଠକ ନିକଟରେ ଏହି ଭାବନାର ସ୍ୱାଦ ଉପଲବ୍‌ଧି ସହଜସାଧ୍ୟ ନୁହେଁ । ଗୁରୁପରମ୍ପରା ଜରିଆରେ ଏହି ରହସ୍ୟପୂର୍ଣ୍ଣ ଭାବନାକୁ ବୁଝିବାକୁ ହୁଏ । ବ୍ରହ୍ମ ପାଇଁ ଆତ୍ମାର ଅନନ୍ତ ପ୍ରେମ ଓ ବ୍ୟାକୁଳତା ଏହି କବିତାର ପ୍ରାଣବସ୍ତୁ । ସେମାନେ ଉପନିଷଦର ଭାଷାରେ ଜଗତକୁ ବ୍ରହ୍ମମୟ ମନେ କରନ୍ତି । "ଈଶାବାସ୍ୟମିଦଂ ସର୍ବମ୍ ।" ଏକମାତ୍ର ବ୍ରହ୍ମ ହେଉଛି ସତ୍ୟ ; ସମସ୍ତ ଜଗତ ଅଳୀକ ଏବଂ ମିଥ୍ୟା । ଅଦ୍ୱୈତବାଦୀ ଆତ୍ମା ଓ ବ୍ରହ୍ମକୁ ଅଭିନ୍ନ ଦେଖିଲା ପରି ପ୍ରାଚୀନ ରହସ୍ୟବାଦୀ କବିଗଣ ଭକ୍ତ ଓ ଭଗବାନ ମଧ୍ୟରେ ଅଭିନ୍ନ ସମ୍ପର୍କ ପ୍ରତିଷ୍ଠା କରିଥିଲେ । 'ବୌଦ୍ଧଗାନ ଓ ଦୋହା' ଓ ସହଜିଆ ସାହିତ୍ୟରେ ଏହିଭଳି ଆଧ୍ୟାତ୍ମିକ ଭାବନାପୂର୍ଣ୍ଣ ତାନ୍ତ୍ରିକ ବିଚାରଧାରାର ପରିଚୟ ମିଳିଥାଏ । ଏପରିକି ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଯୁଗର ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ ଅଥବା ବୈଷ୍ଣବ କାବ୍ୟ ସାହିତ୍ୟରେ ପ୍ରକୃତି ଓ ପୁରୁଷର ମିଳନକଳ୍ପନା ଏହି ରହସ୍ୟମୟୀ ଭାବନାକୁ ପ୍ରତିଷ୍ଠିତ କରେ । ଏହାକୁ ବ୍ରହ୍ମବାଦ ଅଥବା ମରମବାଦ

ଭିତରେ, ଗ୍ରହଣ କରାଯାଇପାରେ । ପ୍ରାଚୀନ କବିମାନଙ୍କର ରହସ୍ୟବାଦ ଅନେକ ସମୟରେ ଦୁର୍ବୋଧ୍ୟ ଅଥବା ଦାର୍ଶନିକ ତତ୍ତ୍ୱ ଘଟିତ । ଯେଉଁଥିପାଇଁ ବେଳେ ବେଳେ ଦୁର୍ବୋଧ୍ୟ ରଚନାକୁ ରହସ୍ୟବାଦର ରଚନା ବୋଲି ମତ ବ୍ୟକ୍ତ କରାଯାଇଥାଏ ; କିନ୍ତୁ ମିଷ୍ଟିସିଜିମ୍‌ର ଏହା ପ୍ରକୃତ ରୂପରେଖ ପ୍ରଦାନ କରେ ନାହିଁ ।

**ରହସ୍ୟବାଦର ଆଧୁନିକ ବିଚାର—**

ରହସ୍ୟବାଦୀ କବି ଅତୀନ୍ଦ୍ରିୟ ଜଗତରେ ବିଚରଣ କରି ଆଧ୍ୟାତ୍ମିକତାର ପ୍ରଚାର କରିପାରେ ; ମାତ୍ର ଆଧ୍ୟାତ୍ମିକତା ଆଧୁନିକ ମରମୀ କବିତାର ପ୍ରାଣଧର୍ମ ନୁହେଁ । କାବ୍ୟ କବିତାର ମାଧ୍ୟମରେ ସେ କେବଳ ବୁଦ୍ଧିର କସରତ ଅଥବା ଜ୍ଞାନର ଅହଂକାର କରେ ନାହିଁ । ଅପୂର୍ବ କଳ୍ପନାବିଳାସିତା ଏବଂ ଭାବୁକତାର ଉଜ୍ଜ୍ୱଳ ପ୍ରକାଶ ଦ୍ୱାରା ତାହାର ସାହିତ୍ୟ ଅଧିକ ପ୍ରାଣବନ୍ତ ହୁଏ । ଆଧୁନିକ ମରମୀ ଭାବନାରେ ଭାବବିହ୍ୱଳତା, କଳ୍ପନା ବିଳାସିତା ଏବଂ ଦାର୍ଶନିକତାର ସାର୍ଥକ ସମନ୍ୱୟ ଦେଖାଯାଏ । ସାଧାରଣ ଭାବୁକ ବା କବି କେବଳ ବାହ୍ୟବସ୍ତୁରେ ଚକ୍ଷୁ ନିବେଶ କଲାବେଳେ ମରମୀ କବି ତାହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଉପଲବ୍ଧି କରେ । ଜଗତର ନିତ୍ୟ ପରିଚିତ ବସ୍ତୁ ମଧ୍ୟରେ ହିଁ କବିଗୁରୁ ରବୀନ୍ଦ୍ରନାଥ କେଉଁ ଅଜଣା ଅରୂପ ଦେବତାର ଅସ୍ତିତ୍ୱ ଉପଲବ୍ଧି କରି ତାଙ୍କର ନୈବେଦ୍ୟରେ ଗାଇଥିଲେ—

"ତାହାଁର ଦେଖିଯାଛେନ—ବିଶ୍ୱଚରାଚର
ଝରିଛେ ଆନନ୍ଦ ହତେ ଆନନ୍ଦ ନିର୍ଝର,
ଅଗ୍ନିର ପ୍ରତ୍ୟେକ ଶିଖା ଭୟେ ତବ କାଁପେ
ବାୟୁର ପ୍ରତ୍ୟେକ ଶ୍ୱାସ ତୋମାରି ପ୍ରତାପେ
ତୋମାର ଆଦେଶ ବହି ମୃତ୍ୟୁ ଦିବାରାତ
ଚରାଚର ମର୍ମରିୟା କରେ ଯାତାୟାତ ।"

ଏହି ଆନନ୍ଦର ସଙ୍ଗୀତ ଏବଂ ଜୀବନର ସ୍ପର୍ଶ ମର୍ମେ ମର୍ମେ 'କବି ଅନୁଭବ କରି ଅପୂର୍ବ ଢଙ୍ଗରେ ଶୁଣାଇଛନ୍ତି ।

ସାଧାରଣତଃ ପ୍ରତ୍ୟକ୍ଷଭୂତ ଅଥବା ଅପ୍ରତ୍ୟକ୍ଷଭୂତ ଉପାୟରେ କୌଣସି ବିଷୟ ସମ୍ପର୍କରେ ଜ୍ଞାନ ଲାଭ କରାଯାଇଥାଏ । ମାତ୍ର ଏପରି କେତେକ ଅନୁଭୂତି ଅଛି, ଯାହା ଏହି ଦୁଇ ଉପାୟର ପରିସୀମା ବାହାରେ । ମନୁଷ୍ୟ ବେଳେ ବେଳେ ସ୍ୱତଃସ୍ଫୂର୍ତ୍ତ ଭାବନାର ଅନୁଭୂତି ଲାଭ କରେ । ତାହା ସର୍ବଦା ଇନ୍ଦ୍ରିୟାତୀତ ଆବେଗସମ୍ଭୂତ (intuition) ସତ୍ୟର ସନ୍ଧାନ ପାଇଁ ମିଷ୍ଟିକ୍ କବି ଏହି ଆବେଗମୟୀ ଭାବନାର ଆହ୍ୱାନ ଗ୍ରହଣ କରେ ।

**ରୋମାଣ୍ଟିସିଜିମ୍ ଓ ମିଷ୍ଟିସିଜିମ୍—**

ଫରାସୀ ବିପ୍ଳବ ଏବଂ ଶିଳ୍ପ ବିପ୍ଳବ ପ୍ରଭାବିତ ଊନବିଂଶ ଶତକରେ ଇଂଲଣ୍ଡରେ ଅଷ୍ଟାଦଶ ଶତାବ୍ଦୀର କବିତାର ଧାରା ବିରୁଦ୍ଧରେ ବିଦ୍ରୋହ କରି ରୋମାଣ୍ଟିକ କବିମାନେ

ଆତ୍ମପ୍ରକାଶ କରୁଥିଲେ । ସେମାନେ ଏକ ଅପୂର୍ବ ଭଙ୍ଗୀରେ ପ୍ରକୃତି-ସଂସାରକୁ ଅବଲୋକନ କଲେ । ପ୍ରକୃତି କେବଳ ସୌନ୍ଦର୍ଯ୍ୟଗ୍ରାହ୍ୟ ଆନନ୍ଦ ଦାନ କରି କପରି ଏକ ଅଦ୍ଭୁତ ଭାବ-କଳ୍ପନାର ଉତ୍ସ ହୋଇ ପଡ଼ିଲା । ଏହି ଭାବନାକୁ Pater କହିଲେ—'Addition of strangeness to beauty.' ସୁନ୍ଦର ସହିତ ଅଦ୍ଭୁତର ପରିଚୟ ହେଉଛି ରୋମାଣ୍ଟିକ କବିତାର ମୂଳ ଆଲେଖ୍ୟ । ସେମାନଙ୍କ ନୂତନ ଦୃଷ୍ଟିଭଙ୍ଗୀ B. Ifor Evansଙ୍କ ଭାଷାରେ ନିମ୍ନମତେ ପ୍ରକଟିତ—"In the poetry of all of them there is a sense of wonder, of life seen with new sensibilities and fresh vision," ଅଧ୍ୟାପକ ଶ୍ରୀଶ୍‌ଚନ୍ଦ୍ର ଦାସ ତାଙ୍କର 'ସାହିତ୍ୟ ସନ୍ଦର୍ଶନ' ପୁସ୍ତକର 'ରୋମାଣ୍ଟିସିଜମ୍ ଓ କ୍ଲାସିସିଜମ୍' ପ୍ରବନ୍ଧରେ ରୋମାଣ୍ଟିକ କବିମାନଙ୍କ ସମ୍ପର୍କରେ ଯଥାର୍ଥରେ କହିଛନ୍ତି—"ଅଷ୍ଟାଦଶ ଶତାବ୍ଦୀର ବୁଦ୍ଧିନିଷ୍ଠ କବିତାର ବିରୁଦ୍ଧେ ବିଦ୍ରୋହ ଘୋଷଣା କରିସ୍ୱା ଯେ ଯୁଗ ଅବତୀର୍ଣ୍ଣ ହଇଲ, ଇଂରାଜୀ ସାହିତ୍ୟେ ତାହାକେ ରୋମାଣ୍ଟିକ ଯୁଗେର ପୁନର୍ଜୀବନ ବଲା ହୟ । ପୂର୍ବ ଯୁଗେର କବିତା ବିଚାର ଓ ବୁଦ୍ଧି ପ୍ରଧାନ; ଏଇ ଯୁଗେର କବିତା କଳ୍ପନା ପ୍ରଧାନ । ତାଇ ଏଇ ଯୁଗେର କବିଗଣ ଦେଖିଲେନ, ଆକାଶେର ତାରାୟ ଓ ସ୍ତବ୍ଧ ନୀଳିମାୟ କୋନ ଅଶ୍ରୁତପୂର୍ବ ସଙ୍ଗୀତ ; ଶିଶୁ ପ୍ରକୃତିକେ କି ଅପୂର୍ବ ବିସ୍ମୟ, ଅତି ଲୌକିକ ଜଗତେର ଅବାସ୍ତବତା କତଖାନି ସ୍ୱାଭାବିକ ଓ ସତ୍ୟ, ଅଜ୍ଞାତେର ଅନ୍ଧକାର ମ୍ଳାନ ସୌନ୍ଦର୍ଯ୍ୟେ କି ସୀମାହୀନ କ୍ଲାନ୍ତ, ପତିତ ଓ ବ୍ୟଥିତ ଜନେର ହୃଦୟକନ୍ଦରେ କି ସ୍ୱର୍ଗୀୟ ମାଧୁର୍ଯ୍ୟ, ପ୍ରକୃତିର ରୂପ-ରସ-ଗନ୍ଧ-ସ୍ପର୍ଶ-ଶବ୍ଦେ କି ଅପୂର୍ବ ଆମନ୍ତ୍ରଣ !" ତେଣୁ କବି ଓ୍ୱାର୍ଡ଼ସ୍ୱାର୍ଥ ପ୍ରକୃତିକୁ ଦେଖି ଅନୁଭବ କଲେ—

"The Sounding Cataract
Haunted me like a passion, the tall rock
The mountain and the deep and gloomy wood
Their colours and their forms were then to me
An appetite....a feeling and a love."

ରୋମାଣ୍ଟିକ କଳ୍ପନାବିଳାସୀ କବି ବିସ୍ମୟ ବିମୁଗ୍ଧ ଦୃଷ୍ଟିରେ ଯାହାକୁ ଦେଖେ, ଗଭୀର ଅନ୍ତରତମ ପ୍ରଦେଶରେ ମିଷ୍ଟିକ୍ କବି ତାର ସତ୍ତା ଅନୁଭବ କରେ । ତେଣୁ ଅନେକ ସମୟରେ ରୋମାଣ୍ଟିକ ଯୁଗର କବିଗଣ ରହସ୍ୟବାଦୀ କବିତାର ପରିବେଷଣରେ କୁଣ୍ଠିତ ହୋଇନାହାନ୍ତି । ବାସ୍ତବବାଦୀ ସଂସାରର ବାହାରେ ଅନ୍ୟ ଏକ ସଂସାର ସୃଷ୍ଟି କରେ ରହସ୍ୟବାଦୀ କବି । ବେଳେବେଳେ ସେ ଏକ ଅଲୌକିକ ଭାବବିଳାସରେ ମୁଗ୍ଧ ହୁଏ । ସେଥିପାଇଁ ମିଷ୍ଟିକ୍ କବି ହେଉଛି ବ୍ରହ୍ମବାଦୀ । ଅଦୃଶ୍ୟର ଯାହାରେ କବି ପାଏ ଆନନ୍ଦ । ପ୍ରକୃତିର ଛନ୍ଦେ ଛନ୍ଦେ ସେ ଶୁଣିବାକୁ ପାଏ ଅନବଦ୍ୟ ରାଗିଣୀ । ତେଣୁ ସବୁଜ କବି ବୈକୁଣ୍ଠଙ୍କ ଭାଷାରେ—

"ମାନସ ହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦୋଷେ ପଥଛାଡ଼ି ଭରମେ ଅବିରତ
ଅଳପ ତୃଷା କ୍ଷୁଧା ଲଭି ଗୁମର ସୁଧା
ତୃପତ ହେଲି ତେବେ ଲୋଡ଼ଇ ଏ ମରତ ।"

କିମ୍ବା ଅନ୍ୟ ଏକ ସ୍ଥାନରେ ସେ ଗାଇଛନ୍ତି ସେହି ଅପରୂପ ଜଗତର ଆହ୍ୱାନରେ ପାଗଳ ହୋଇ—

"ପରାଣ କୁଞ୍ଜେ ଗୋ ତାର ମୁରଲୀଧ୍ୱନି
ପରାଣ ପବନେ ଗୋ ତା ଶୁଭ ଆଗମନି
ଜୀବନେ ଦେବା ନେବା ଭିଆଣ ସବୁ ତାର
ସେ ମହାଦାନୀ ହସେ ପରାଣେ ଦେଖିନାହୁଁ ।

କବିଗୁରୁ ରବୀନ୍ଦ୍ରନାଥ ସେହି "ନିରୁଦ୍ଦେଶ୍ୟ ଯାତ୍ରା"ର କଥା କହିଛନ୍ତି ତାଙ୍କର 'ନିର୍ଝରେର ସ୍ୱପ୍ନଭଙ୍ଗ' କବିତାରେ । ସେ ବ୍ୟାକୁଳ ହେଉଛନ୍ତି—"ଆମି ଚଞ୍ଚଳହେ ଆମି ସୁଦୂରେର ପିୟାସୀ ।" "ଦୁରନ୍ତ ଆଶା" କବିତାରେ ରବୀନ୍ଦ୍ର କହୁଛନ୍ତି—"କୋଥାଓ ଯଦି ଛୁଟିତେ ପାଇ ବାଁଚିୟା ଯାଇ ତବେ ।" ଠିକ୍ ଏହି ପ୍ରାଣମୟ ଆବେଗର ସଙ୍ଗୀତ ପାଠକ ଶୁଣିବାକୁ ପାଏ 'ଦୁଇପାଖୀ' କବିତାରେ—

"ଖାଁଚାର ପାଖୀ ବଲେ ବନେର ପାଖୀଭାଇ
ଖାଁଚାର ଗାନ ଲଇ ଶିଖି
ବନେର ପାଖୀ ବଲେ ନା
ଆମି ଶିଖାନୋ ଗାନ ଲଇ ଶିଖି
ବନେର ପାଖୀ ବଲେ ନା
ଆମି ଶିଖାନୋ ଗାନ ନଇ ଚାଇ
ଖାଁଚାର ପାଖୀ ବଲେ ହାୟ
ଆମି କେମନେ ବନ ଗାନ ଗାଇ ।"

## ମିଷ୍ଟିକ୍ କବି ପ୍ରତୀକବାଦୀ—

ମିଷ୍ଟିକ୍ କବିମାନେ ସାଧାରଣତଃ ବ୍ରହ୍ମବାଦୀ । ବ୍ରହ୍ମବାଦୀଙ୍କର ଭାଷା ହେଉଛି ପ୍ରତୀକବାଦ । ସେମାନେ ବାହାରର ପ୍ରକୃତି ସଂସାରକୁ ଦେଖି ମୁଗ୍ଧ ହୁଅନ୍ତି ସତ, ତାହାର ବିଚିତ୍ର ରୂପଶୋଭାରେ କେବଳ ସନ୍ତୁଷ୍ଟ ହୁଅନ୍ତି ନାହିଁ । ସେମାନଙ୍କ ମତରେ ଏହି ପ୍ରକୃତି ସଂସାର ମଧ୍ୟରେ ସମଗ୍ର ସୃଷ୍ଟିର ସତ୍ୟ ନିହିତ ରହିଅଛି । ପ୍ରକୃତି ଜଡ଼ ନୁହେଁ, ଚେତନଶୀଳ; ସମଗ୍ର ମାନବପ୍ରକୃତି ସହିତ ତାହା ଓତପ୍ରୋତ ଭାବରେ ଜଡ଼ିତ । ଏକ ସାଧାରଣ ବସ୍ତୁର ଦର୍ଶନ କରି କବି ଅସାଧାରଣ ସତ୍ୟର ଆବିଷ୍କାର କରେ । ଚିତ୍ରକାର

କବି ଭଗ୍ନଦୁର୍ଗ ଏବଂ ଜରାଜୀର୍ଣ୍ଣର ମନ୍ଦିରକୁ ଦର୍ଶନ କରି ସେଠାରେ 'ଭବଭଙ୍ଗୁରତା' ପ୍ରତିଧ୍ୱନି ଛଳରେ ମୁଖରିତ ହେଉଛି ବୋଲି ଅନୁଭବ କରିଛନ୍ତି । ସେହିପରି ଝରଣାର କୁଳୁକୁଳୁ ଧ୍ୱନି ମଧ୍ୟରେ ଇଂରେଜ କବି ଟେନିସନ୍ ଶୁଣିଲେ—

For men may come and men may go
But I go on for ever.

ମିଷ୍ଟିକ୍ କବି ଜଗତର ଐକ୍ୟରେ ବିଶ୍ୱାସ କରନ୍ତି । ଯାବତୀୟ ବିଭିନ୍ନତା ମଧ୍ୟରେ ଏକ ନିରବଚ୍ଛିନ୍ନ ସତ୍ୟ ଯେ ଲୁକ୍କାୟିତ ଅଛି, ତାହା ଏଇ ମିଷ୍ଟିକ୍ କବିର ଚକ୍ଷୁ ଏଡ଼ାଇ ପାରେ ନାହିଁ । ତେଣୁ କବି ରବୀନ୍ଦ୍ରନାଥ "ସୀମାର ମାଝେ ଅସୀମ ତୁମି" ବୋଲି ଅନୁଭବ କଲାବେଳେ ସବୁଜ କବି ବୈକୁଣ୍ଠ ମରଣଶୀଳ 'ଶିଶୁ'ର ଜୀବନକୁ ଅନୁଧ୍ୟାନ କରି ଅମୃତର ସନ୍ଧାନ ପାଇଛନ୍ତି । ସେ ବିଶ୍ୱାସ କରନ୍ତି ଯେ ମନୁଷ୍ୟର ଜୀବନ ଏକ ଧାରାବାହିକ ଅବିଚ୍ଛିନ୍ନ ସମ୍ପର୍କ ଉପରେ ନିର୍ଭର କରିବାକୁ ବାଧ୍ୟ ।

**ସାର୍ଥକ କବିତା ମିଷ୍ଟିକ୍-ଧର୍ମୀ—**

ନିମ୍ନ ଶ୍ରେଣୀର କବି ଧରଣୀର ଇନ୍ଦ୍ରିୟଗ୍ରାହ୍ୟ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ କବିତା ରଚନା କରନ୍ତି । ତାହା ପାର୍ଥିବ ସତ୍ୟ ଏବଂ ସୌନ୍ଦର୍ଯ୍ୟ ଦ୍ୱାରା ଅନୁପ୍ରାଣିତ ହେଲେ ହେଁ ଚିରନ୍ତନ ସତ୍ତାର ଅଧିକାରୀ ହେବା ସମ୍ଭବ ନୁହେଁ । ମିଷ୍ଟିକ୍ କବି ପ୍ରତୀକବାଦୀ । ସେମାନେ ଇନ୍ଦ୍ରିୟଗ୍ରାହ୍ୟ ସୌନ୍ଦର୍ଯ୍ୟ ପ୍ରକଟନ କରିବାରେ ସଫଳ ହୁଅନ୍ତି । ତେଣୁ ମିଷ୍ଟିକ୍ କବିତାରେ ଅନନ୍ତ ଓ ଅସୀମ ଭାବରାଶିର ସନ୍ଧାନ ମିଳେ; କ୍ଷୁଦ୍ର ମଧ୍ୟରେ ବିରାଟର ଅନୁଭବ ଆସେ । ଜଡ଼ବାଦୀ କବି କ୍ଷଣିକ ସତ୍ୟରେ ଆତ୍ମନିବେଶ କଲାବେଳେ ମିଷ୍ଟିକ୍ କବି ସତ୍ୟ ଶିବ ସୁନ୍ଦରର ଉପାସନା କରେ । ରୂପ ମଧ୍ୟରେ ରୂପାତୀତର ସନ୍ଧାନ ଦେବା ମିଷ୍ଟିକ୍ କବିର ଧର୍ମ ; ତେଣୁ ମିଷ୍ଟିକ୍ କବିତା ଚିରନ୍ତନ-ଧର୍ମୀ ।

# ହାସ୍ୟରସ ଏକ ବିଚାର ବିଶ୍ଳେଷଣ

ପ୍ରାଚୀନ ତାମିଲ ମହାକାବ୍ୟ 'ତିରୁକ୍କୁରଲ' ମତବ୍ୟକ୍ତ କରିଛନ୍ତି ଯେ ଯେଉଁମାନେ ହସି ଜାଣନ୍ତି ନାହିଁ, ସେମାନଙ୍କ ପକ୍ଷରେ ଦିବାଲୋକ ମଧ୍ୟ ଅନ୍ଧକାର ପରି ପ୍ରତୀୟମାନ ହୁଏ । ବାସ୍ତବରେ ଯେଉଁ ଜୀବନରେ ହସ ଉକୁଟେ ନାହିଁ, ସେଠାରେ ବଞ୍ଚିରହିବା ନିରର୍ଥକ । ହସି ଖେଳି ଜୀବନକୁ ବିତାଇ ଦେବା ପାଇଁ ବୁଦ୍ଧିମାନ ମନୁଷ୍ୟର୍ ଆଜୀବନ ସାଧନା ଲାଗିରହିଛି । ଅବଶ୍ୟ ଇଚ୍ଛାକରି ମନୁଷ୍ୟ ହସିପାରେ ନାହିଁ । ଜୀବନରେ ଅସରନ୍ତି ସଂଘର୍ଷ ଏବଂ ଆଘାତର ଭିତରେ ସେ କେବଳ ଉବେଇ ଟୁବେଇ ହୁଏ ନାହିଁ, ଜୀବନ ହୁଏ ଅତ୍ୟନ୍ତ ଭୟାବହ ; ଅସରନ୍ତି ଦୁଃଖର ପୀଡ଼ନରେ ଜୀବନ ହୁଏ ଅସହନୀୟ । ତେବେ ବି ଏକଥା ସ୍ୱୀକାର କରିବାକୁ ହେବ ଯେ, ଜୀବନରେ ହସର ସୁଯୋଗ ଅଛି ବୋଲି ମନୁଷ୍ୟ ଦୁଃଖର ଅସୁମାରି ଢେଉକୁ ଭ୍ରୂକ୍ଷେପ ନ କରି ଅଗ୍ରସର ହେଉଛି । ଏହି ଜୀବ-ସଂସାରରେ କେବଳ ମନୁଷ୍ୟ ହସିପାରେ, ହସିଥାଏ ମଧ୍ୟ ; ଏବଂ ଉପଭୋଗ କରିବା ତାହାର ଏକ ଉତ୍କୃଷ୍ଟ ସାଧନା । ସମସ୍ତେ ହସିବାକୁ ଚେଷ୍ଟା କରନ୍ତି । ହସିବାଠାରୁ ପ୍ରିୟବସ୍ତୁ ସଂସାରରେ ଆଉ କ'ଣ ଅଛି !! ଜଗତର ସମସ୍ତ ଐଶ୍ୱର୍ଯ୍ୟ ଏକୀଭୂତ ହୋଇ ସୁଦ୍ଧା ଯଦି ହସରୁ କାଣିଚାଏ ନ ମିଳିଲା, ତେବେ ସେପରି ଜୀବନ ସବୁଠାରୁ ଦରିଦ୍ର ବୋଲି ବିଚାରିବାକୁ ହେବ । ହାସ୍ୟରସିକ କାନ୍ତକବି ଲକ୍ଷ୍ମୀକାନ୍ତ ଥରେ "ହାସ୍ୟ" ସମ୍ପର୍କରେ ଲେଖିଥିଲେ—"ମରି ମନକୁ ବହଲାଇ ବଞ୍ଚାଇ ରଖିବାର ଗୋଟିଏ ସହଜାତ କୌଶଳ ।" ଏ କୌଶଳ ସହଜରେ ଆୟତ୍ତ ହୁଏ ନାହିଁ । ଥରେ ହସିବାର କୌଶଳ ଆୟତ୍ତ କରିପାରିଲେ ବିଷାକ୍ତ ଜୀବନକୁ ଅମୃତମୟ କରିବାକୁ କେତେ ସମୟ ଅବା ଲାଗେ ?

ଏହି କାରଣରୁ ଅନନ୍ତକାଳ ଧରି ସାହିତ୍ୟରେ ହାସ୍ୟରସର ପ୍ରାଧାନ୍ୟ ସ୍ୱୀକୃତ ହୋଇଅଛି । ସାହିତ୍ୟ ଜୀବନର ଅଭିବ୍ୟକ୍ତି ହୋଇଥିବାରୁ ତହିଁରେ ହାସ୍ୟର ବିଚିତ୍ର ଅନୁଭୂତି ଚିତ୍ରିତ ହେବା ସ୍ୱାଭାବିକ । ଯୁଗେ ଯୁଗେ ଜୀବନ ସହିତ ହାସ୍ୟର ସଂପର୍କ ଅତ୍ୟନ୍ତ ନିବିଡ଼ । ନିର୍ଜୀବ ଜଡ଼ ପଦାର୍ଥ ଆମ ମନରେ ହସର ଉଦ୍ରେକ କରିପାରିବ ନାହିଁ । ହସ ସର୍ବଦା ଜୀବଧର୍ମୀ ଏବଂ ଜୀବନ ସହିତ ତାହାର ଏକ ପୀଡ଼ାଦାୟକ ସମ୍ପର୍କ ରହିଅଛି । ହାସ୍ୟ ଅନୁଭୂତି ପାଇଁ ଆମେ କେତେକ ପରିମାଣରେ ଦୁଃଖକୁ ମଧ୍ୟ ସ୍ୱାଗତ କରିଥାଉ । ବେଳେ ବେଳେ ଅନ୍ୟର ଦୁଃଖରେ ମଧ୍ୟ ଆମ ମନରେ ହସର ଉଦ୍ରେକ ହୁଏ, ଯଦିଓ ଅନ୍ୟର ଦୁଃଖରେ ହସିବା ଇଚ୍ଛାକୃତ ନୁହେଁ ଅଥବା ଶାଳୀନତାବୋଧ ମଧ୍ୟ ଜାଗ୍ରତ କରେ ନାହିଁ । ଆମ୍ଭମାନଙ୍କର ଚେତନାପ୍ରବାହ ଏକ ସରୋବର ପରି । ଏହି ଚେତନା-

ସରୋବରରେ କୌଣସି କାରଣରୁ ଆଘାତ ସୃଷ୍ଟି ହେଲେ ହଠାତ୍ ଅସଂଖ୍ୟ ତରଙ୍ଗ କଳକଳ ଛଳଛଳ ହୋଇ ପ୍ରବାହିତ ହୁଅନ୍ତି । କବିଗୁରୁ ରବୀନ୍ଦ୍ରନାଥ 'କୌତୁକହାସ୍ୟ' ପ୍ରବନ୍ଧରେ ସେହି ଭାବନାକୁ ବିଶ୍ଳେଷଣ କରି କହିଅଛନ୍ତି—"ଅତଏବ, ଆମାର ମତେ କୌତୁକ ଚେତନାକେ ପୀଡ଼ନ; ଆମୋଦ ଓ ତାଇ । ଏଇଜନ୍ୟ ପ୍ରକୃତ ଆନନ୍ଦେର ପ୍ରକାଶ ସ୍ମିତହାସ୍ୟ ଏବଂ ଆମୋଦ ଓ କୌତୁକେର ପ୍ରକାଶ ଉଚ୍ଚହାସ୍ୟ; ସେ ହାସ୍ୟ ଯେନ ହଠାତ୍ ଏକଟା ଦ୍ରୁତ ଆଘାତେର ପୀଡ଼ନ କରେ ସଶବ୍ଦେ ଉଦ୍‌ଗୀର୍ଣ୍ଣ ହଇୟା ଉଠେ ।" ସକଳ ପ୍ରକାର ଅସଙ୍ଗତ ଏବଂ ବୈରୂପ୍ୟରୁ ହାସ୍ୟରସ ସୃଷ୍ଟି ହୁଏ । ସାଧାରଣ ପ୍ରବହମାନ ଧାରାରେ ଯେଉଁଠି ବ୍ୟତିକ୍ରମ ସୃଷ୍ଟି ହୁଏ, ଆଲୋଡ଼ନ ପାଇଁ ଯଥେଷ୍ଟ ସୁଯୋଗ ଉପସ୍ଥିତ ହୁଏ । କୌତୂହଳ ସୃଷ୍ଟି ହେବାପାଇଁ ଆବଶ୍ୟକୀୟ ପରିବେଶ ସୃଷ୍ଟି ହୋଇଯାଏ, ସେଠାରେ ହାସ୍ୟରସର ଅବତାରଣା ସ୍ୱାଭାବିକ । ଯୋଗ୍ୟତା ନିର୍ବିଶେଷରେ ଯଦି କିଛି ଅନାଚରଣୀୟ ଆଚାର ବ୍ୟବହାର ପରିଦୃଷ୍ଟ ହୁଏ, ତେବେ ହାସ୍ୟର ସୃଷ୍ଟି ହେବା ସ୍ୱାଭାବିକ । ଏହି ଅସଙ୍ଗତ ବା ବିକୃତ ବିଭିନ୍ନ ପର୍ଯ୍ୟାୟରେ ଜୀବନର ରଙ୍ଗମଞ୍ଚରେ ସଂଘଟିତ ହୁଏ । ଏହି ବିକୃତି ଭାଷାଗତ, ଚରିତ୍ରିକ, ବ୍ୟବହାରଗତ ଅଥବା ଘଟଣାଜନିତ ହୋଇପାରେ । ଏପରି ଘଟଣାରେ ଦୁଃଖର କାରଣ ଥାଇପାରେ, ତଥାପି ଆମେ ହସିବା ପାଇଁ ଯଥେଷ୍ଟ ପ୍ରେରଣା ଲାଭ କରିଥାଉ । ଏହି ପ୍ରସଙ୍ଗରେ ଷ୍ଟିଫେନ ଲିକକ୍ କହିଛନ୍ତି, ହାସ୍ୟ ହେଉଛି—"Artistic expression of the incongruties of our life." ଅନ୍ୟ ଜଣେ ଆଲୋଚକ (Alfred Michel) ଆଲଫ୍ରେଡ଼ ମାଇକେଲ କହନ୍ତି—"Laughter is caused by failure to keep up to the ideal standard of conduct."

ଆଲୋକ ଓ ଅନ୍ଧକାର ପରି ହାସ୍ୟ ଓ ଦୁଃଖ ନିବିଡ଼ ଭାବରେ ସମ୍ପୃକ୍ତ । ଦୁଃଖର ଘନଘଟା ମଧ୍ୟରେ ହାସ୍ୟର ଉଦ୍ରେକ ହେଲେ ତାହା ଅତ୍ୟନ୍ତ ମାଧୁର୍ଯ୍ୟମଣ୍ଡିତ ହୁଏ । ଘନ ଅନ୍ଧକାର ମଧ୍ୟରେ ଆଲୋକର ଜ୍ୟୋତି ସାର୍ଥକ ଭାବରେ ରୂପାୟିତ ହେଲାପରି ଦୁଃଖର ଅନ୍ତରାଳରେ ସୁଖର ସ୍ପର୍ଶ ନିହିତ ରହିଥାଏ । ତେଣୁ ହାସ୍ୟରସର ଅଭ୍ୟୁଦୟ ପାଇଁ ଯେଉଁ ବିକୃତି ବା ଚେତନାର ପୀଡ଼ନ ପ୍ରଧାନତଃ ଦାୟୀ, ତହିଁରେ ପୀଡ଼ାଦାୟକ ଅନୁଭୂତି ଯେ କିଞ୍ଚିତ ମାତ୍ରାରେ ବିଦ୍ୟମାନ ଥାଏ, ଏହା ଯେ କୌଣସି ଅବସ୍ଥାରେ ମଧ୍ୟ ଉପଲବ୍ଧ ହୁଏ । ତେଣୁ ଦାର୍ଶନିକ ପ୍ଲାଟୋ ଯଥାର୍ଥରେ କହିଛନ୍ତି—"At a comedy the soul experiences a mixed feeling of pain and pleasure."

(Plato)

ସଂସ୍କୃତ ଆଲଙ୍କାରିକଗଣ ଏ ସମ୍ପର୍କରେ ଯଥେଷ୍ଟ ଆଲୋକପାତ କରିଯାଇଅଛନ୍ତି । ସାହିତ୍ୟଦର୍ପଣକାର ବିଶ୍ୱନାଥ କବିରାଜଙ୍କ ମତରେ ହାସ୍ୟ ହେଲା—"ବାଗାଦି ବୈକୃତଶ୍ଚେତୋ ବିକାସୋହାସ ଇଷ୍ୟତେ ।" ଅର୍ଥାତ୍ ବାଣୀ, ରୂପ ଆଦି ବିକାରକୁ ଦେଖି ଚିତ୍ତରେ ଉଲ୍ଲସିତ ଭାବ ହାସ୍ୟ ସୃଷ୍ଟି କରେ । ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ମୁନି

ତାଙ୍କ ଗ୍ରନ୍ଥର ଷଷ୍ଠ ଅଧ୍ୟାୟରେ ହାସ୍ୟରସ ସମ୍ପର୍କରେ ଯେଉଁ ମତବ୍ୟକ୍ତ କରିଅଛନ୍ତି, ତାହା ହେଉଛି ହାସ୍ୟରସ ସୃଷ୍ଟି ପାଇଁ ପ୍ରାଚ୍ୟ ସାହିତ୍ୟର ଆଭିମୁଖ୍ୟ ।

ଅଥ ହାସ୍ୟୋ ନାମ ହାସ ସ୍ଥାୟିଭାବକଃ । ସ ଚ ବିକୃତ ପରବେଶାଲଙ୍କାର-ଧାର୍ଷ୍ଟ୍ୟଲୌଲ୍ୟକାଲ ହାସତ୍ ପ୍ରଲାପବ୍ୟଙ୍ଗଦର୍ଶନ ଦୋଷାଦାହରଣାଦିଭିର୍ବିଭାବୈଃ ସମୁତ୍ପଦ୍ୟତେ । ତସ୍ୟୌଷ୍ଠଦଂଶନାସାକପୋଲସ୍ପନ୍ଦନ ଦୃଷ୍ଟିବ୍ୟାକୋଶାକୁଞ୍ଚନ ସ୍ୱେଦାସ୍ୟ-ରାଗପାର୍ଶ୍ୱ ଗ୍ରହଣାଦି ଭିରନୁଭାବୈରଭିନୟ ପ୍ରୟୋକ୍ତବ୍ୟଃ । ବ୍ୟଭିଚାରିଣଶ୍ଚାସ୍ୟ ଆଲସ୍ୟ-ତନ୍ଦ୍ରା ନିଦ୍ରା ସ୍ୱପ୍ନପ୍ରବୋଧାସୂୟାଦୟଃ । ଦ୍ୱିବିଧଶ୍ଚାୟଂ—ଆତ୍ମସ୍ଥ ପରସ୍ଥଶ୍ଚ । ଯଦା ସ୍ୱୟଂ ହସତି ତଦାତ୍ମସ୍ଥଃ । ଯଦାତୁ ପରଂ ସହାସୟତି ତଦା ପରସ୍ଥଃ ।"

ହାସ୍ୟରସର ସ୍ଥାୟୀ ଭାବ ହେଉଛି ହାସ । ଏହା ବିକୃତ ବେଶ, ବିକୃତ ଅଲଙ୍କାର, ଧୃଷ୍ଟତା (ଲଜ୍ଜା ଶୂନ୍ୟତା), ଲୋଲତା, କଳହ, ଅସାଧୁ ଭାଷଣ, ବିକୃତ ଅଙ୍ଗର ପ୍ରଦର୍ଶନ, ଦୋଷଯୁକ୍ତ ବଚନର ଉଚ୍ଚାରଣ ପ୍ରଭୃତି ବିଭାବ ଦ୍ୱାରା ଉତ୍ପାଦିତ ହୁଏ । ଓଠ, ନାସା ଓ କପୋଳକୁ ଈଷତ କମ୍ପିତ କରିବା, ଚକ୍ଷୁକୁ ବିସ୍ଫାରିତ କରିବା ବା ଆକୁଞ୍ଚିତ କରିବା, ସ୍ୱେଦ ମୁଖର ରକ୍ତାକ୍ତ ଏବଂ ପାର୍ଶ୍ୱ ଗ୍ରହଣ ପ୍ରଭୃତି ଅନୁଭାବ ଦ୍ୱାରା ଏହାକୁ ଅଭିନୀତ କରାଯାଏ । ଏଥିରେ ଆଲସ୍ୟ, ଅବହିତ୍ଥା, ତନ୍ଦ୍ରା, ସ୍ୱପ୍ନ, ପ୍ରବୋଧ ଓ ଅସୂୟା ପ୍ରଭୃତି ବ୍ୟଭିଚାରୀ ଭାବ ରହିଥାଏ । ଏହା ଆତ୍ମଗତ ଏବଂ ପରଗତ ଭେଦରେ ଦୁଇ ପ୍ରକାର । ନିଜେ ହସିଲେ ତାହା ଆତ୍ମଗତ ବା ଆତ୍ମସ୍ଥ ଏବଂ ଅନ୍ୟକୁ ହସାଇଲେ ପରଗତ ବା ପରସ୍ଥ ହୁଏ ।

ବିପରୀତାଲଂକାରୈର୍ବିକୃତାଚାର ଭିଧାନ ବେଶୈଶ୍ଚ
ବିକୃତୈରଙ୍ଗବିକାରୈର୍ହସତୀତି ରସଃ ସ୍ମୃତୋ ହାସ୍ୟଃ ।
ବିକୃତାକାରୈର୍ବାକ୍ୟୈରଙ୍ଗବିକାରୈଶ୍ଚ ବିକୃତ ବୈଶେଷ୍ଟ
ହାସୟତି ଜନଂ ଯସ୍ମାଜ୍ଜ୍ଞେୟୋ ରସୋ ହାସ୍ୟଃ ।

ଅଲଙ୍କାରକୁ ବିପର୍ଯ୍ୟସ୍ତ ଭାବରେ ପିନ୍ଧିବା, ବିକୃତ ଆଚାର, ବିକୃତ ନାମ ବା ବଚନ ବିକୃତ ବେଶ, ଭିନ୍ନ ପ୍ରକାର ଅଙ୍ଗ ବିକୃତି ହେତୁ ଲୋକେ ହସନ୍ତି ବୋଲି ଏହାର ନାମ ହାସ୍ୟ । ଆକାର ଓ ବାକ୍ୟର ବିକୃତି ଦ୍ୱାରା ତଥା ଅଙ୍ଗ ବିକାର ଓ ବିକୃତ ବେଶ ଦ୍ୱାରା (ବିଦୂଷକାଦି) ଲୋକଙ୍କୁ ହସାନ୍ତି ବୋଲି ଏହି ରସକୁ ହାସ୍ୟ ରସ କୁହାଯାଏ ।

ପୁନଶ୍ଚ ନାଟ୍ୟଶାସ୍ତ୍ର ଅନୁସାରେ ଏହି ରସ ଛଅ ପ୍ରକାର । ଯଥା—ସ୍ମିତ, ହସିତ, ବିହସିତ, ଉପହସିତ, ଅପହସିତ, ଅତିହସିତ । ଉତ୍ତମ ଶ୍ରେଣୀର ନାୟକ ନାୟିକାଙ୍କଠାରେ ସ୍ମିତ ଓ ହସିତ, ମଧ୍ୟ ଶ୍ରେଣୀଙ୍କଠାରେ ବିହସିତ ଓ ଉପହସିତ ଏବଂ ଅଧମମାନଙ୍କଠାରେ ଅପହସିତ ଏବଂ ଅତିହସିତ ପରିଦୃଷ୍ଟ ହୁଏ ।

ପ୍ରାଚ୍ୟ ଶାସ୍ତ୍ର ଅନୁସାରେ 'ରାଗ'ରୁ ହାସ୍ୟ ଉତ୍ପତ୍ତି ଲାଭ କରିଅଛି । ଏଣୁ ସାହିତ୍ୟର ନବରସ ମଧ୍ୟରେ 'ହାସ୍ୟ' ସ୍ୱୀକୃତ ହୋଇଅଛି । ଆଚାର୍ଯ୍ୟ ଭରତ ମୁନି ତେଣୁ କହିଛନ୍ତି—

"ଶୃଙ୍ଗାର ହାସ୍ୟ କରୁଣାରୌଦ୍ରବୀର ଭୟାନକାଃ ବିଭତ୍ସାଦ୍ଭୂତସଜ୍ଞୌ ।" ତେବେ ଅନ୍ୟାନ୍ୟ ରସ ପରି ହାସ୍ୟ ରସରେ କୌଣସି ଗମ୍ଭୀରତା ନାହିଁ । ଅସଙ୍ଗତିଜନିତ ଭାବନାରୁ ହାସ୍ୟ ରସର ସୃଷ୍ଟି ହୋଇଥାଏ । ଉଚ୍ଚ ଶ୍ରେଣୀର ନାୟକ ନାୟିକାଙ୍କଠାରେ ଏହି ବୈଷମ୍ୟ କମ୍ବା ଅସଙ୍ଗତି ଦୁର୍ଲଭ ଅଟେ । ଯେଉଁମାନେ ନୀଚସ୍ଥାନୀୟ, ସେହିମାନଙ୍କ ନିକଟରେ ଅଧିକ ପରିମାଣରେ ବୈଷମ୍ୟ, ଅନୌଚିତ୍ୟଭାବ ଦୃଶ୍ୟ ହୋଇଥାଏ । ତେଣୁ ନାଟ୍ୟଶାସ୍ତ୍ରକାରଙ୍କର ମତ ହେଲା—"ସ୍ତ୍ରୀ ନୀଚ ପ୍ରକୃତା ବେଶଭୂୟିଷ୍ଠଂ ଦୃଶ୍ୟତେ ରସଃ" ସ୍ତ୍ରୀ ଓ ନୀଚ ଶ୍ରେଣୀର ନାୟକ ନାୟିକାଙ୍କଠାରେ ଏହି ରସ ପ୍ରଚୁର ଭାବେ ଲକ୍ଷ୍ୟ କରାଯାଏ । ଔଚିତ୍ୟ ହେଉଛି ସ୍ଥାୟୀରସର ମୂଳ । ଅନୌଚିତ୍ୟ ଭାବନାରୁ ହାସ୍ୟ ରସର ସୃଷ୍ଟି ହେଉଥିବାରୁ ଏହା ହୃଦୟରେ କୌଣସି ସ୍ଥାୟୀ ଭାବର ସଞ୍ଚାର କରିପାରେ ନାହିଁ ।

ପାଶ୍ଚାତ୍ୟ ଶାସ୍ତ୍ର ମତରେ 'ଦ୍ୱେଷ' ଭାବନାରୁ ହାସ୍ୟର ଉତ୍ପତ୍ତି ହୋଇଥାଏ । କୌଣସି କାରଣରୁ ହଠାତ୍ ମନରେ ବଡ଼ପଣ ଜାତହେଲେ ହାସ୍ୟର ଉଦ୍ରେକ ହୁଏ । Hobbes ଏହି ପ୍ରସଙ୍ଗରେ କହିଛନ୍ତି—"The passion of laughter is nothing else but sudden glory arising from a sudden conception of some eminency in ourselves, but comparison with the firmity of others or with our own formerly."

ଆମେ ହସୁ ଆଉ ଜଣେ ଅସୁନ୍ଦର ବୋଲି । ସେତେବେଳେ ଏହି 'ଅହଂ' ଭାବଟି ଆମ ମନରେ ଜାତ ହୋଇଯାଏ । କାହାରି ଅଙ୍ଗରେ କୌଣସି ଅସଙ୍ଗତି ଥିଲେ, ଦୈହିକ ଚାଲିଚଳନରେ କିଛି ବ୍ୟତିକ୍ରମ ଦେଖାଗଲେ ଆମେ ସ୍ୱତଃ ହସିପକାଉ । ଜାତିଗତ ଆଚାର ବିଚାର ଏବଂ ଗୋଷ୍ଠୀଗତ ଭାବନା ଯାହା ଆମର ଆଚାର ବିଚାରଠାରୁ ଅନେକ ପାର୍ଥକ୍ୟ ସୃଷ୍ଟି କରିଅଛି, ସେଭଳି କୌଣସି ଘଟଣାର ସମ୍ମୁଖୀନ ହେଲେ ଆମକୁ ହସ ମାଡ଼େ । ବେଳେବେଳେ ମିଥ୍ୟା ଭାଷଣ, ଅତର୍କିତ ବ୍ୟବହାର, ଯୌନ ଭାବନା ସମ୍ପର୍କୀୟ ଅଶ୍ଳୀଳ ଇଙ୍ଗିତ ଅଥବା କଟାକ୍ଷ ମଧ୍ୟ ହାସ୍ୟର ସୃଷ୍ଟି କରିଥାଏ । ଡଲିଆଜୀବନର ନାରୀ ଓ ପୁରୁଷଙ୍କର ଜୀବନର କାହାଣୀ ବେଳେ ବେଳେ ହାସ୍ୟ ଉଦ୍ରେକପାଇଁ ଉପାଦାନ ଅଥବା ପ୍ରେରଣା ପ୍ରଦାନ କରିଥାଏ ।

'ହାସ୍ୟ'ର ପ୍ରକାଶ ବ୍ୟକ୍ତି ଏବଂ ରୁଚି ଭେଦରେ ବିଭିନ୍ନ ! ଆମର ହସ, ଥଟ୍ଟା, ପରିହାସ, ଉପହାସ, ରଙ୍ଗରସ ପରି ଇଂରାଜୀରେ ମଧ୍ୟ Wit, Humour Satire, Fun, ପ୍ରଭୃତି ବିଭିନ୍ନ ପ୍ରୟୋଗ ରହିଅଛି । ଏଗୁଡ଼ିକରେ ଗୁଣଗତ ଭେଦ ସ୍ୱୀକାର କରିବାକୁ ପଡ଼ିବ । Humour ସ୍ୱଭାବତଃ ମନରୁ ଜାତ । ମାତ୍ର Wit ହେଉଛି ବୁଦ୍ଧିଦୀପ୍ତ । ସେହିପରି Satire ରେ ମଧ୍ୟ ବୁଦ୍ଧିର ଖେଳ ରହିଅଛି । ଦୁର୍ବଳ ଏବଂ ଅସଙ୍ଗତିମାନଙ୍କ ଉଦ୍ଦେଶ୍ୟରେ ଶାଣିତ ବ୍ୟଙ୍ଗ ହେଉଛି ସାଟାୟାର । ଏହାର ଉଦ୍ଦେଶ୍ୟ

ହେଉଛୁ ସଂସ୍କାର ଭାବନା । ତେଣୁ Satire ସମ୍ପର୍କରେ Drydenଙ୍କ ମତଟି ଅଧିକ ଗ୍ରହଣଯୋଗ୍ୟ । "The true end of ɔatire is the amendment of vices by correction. ତେବେ ବ୍ୟଙ୍ଗ ମଧ୍ୟରେ ହାସ୍ୟ ନ ରହିଲେ ତାହା ନୀରସ ସମାଲୋଚନା ହୋଇଯିବ । ତହିଁରେ ଉପଭୋଗର ସାମଗ୍ରୀ ରହିବ ନାହିଁ । ମାତ୍ର ହାସ୍ୟଯୁକ୍ତ ବ୍ୟଙ୍ଗ ମନରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି କରେ । ଅନ୍ୟକୁ ପୀଡ଼ନ କରିବାର ବଳବତୀ ଇଚ୍ଛା ଏଥିରେ ନିହିତ । ଏହି ଆଘାତ ଦେବାର ଅନ୍ତରାଳରେ ନିଜର ବଡ଼ପଣିଆର ଅନୁଭୂତି ଜାଗ୍ରତ ହୋଇ ଉଠେ । ହେଲେହେଁ ଅନ୍ୟପ୍ରତି ସ୍ୱାଭାବିକ ସହାନୁଭୂତି ହେତୁ ତାହାର ସଂସ୍କାର ପାଇଁ ଆଘାତ ଦେବାକୁ ଇଚ୍ଛା ହୋଇଥାଏ । ଏଥିପାଇଁ କୁହାଯାଇଥାଏ—"A satire is a good humoured attack on certain men or ways of thought, a denunciation of bad behaviour and irrational thinking."

ବିଭିନ୍ନ ବିକାରକୁ ଦେଖି ଚିତ୍ତରେ ଯେଉଁ ଉଲ୍ଲସିତ ଭାବ ଜାତ ହୁଏ, ତାହା ହାସ୍ୟ ବୋଲି ସାହିତ୍ୟଦର୍ପଣକାର କହି ଅଛନ୍ତି । ସେହି ମତକୁ ବିଶ୍ଳେଷଣ କରି ହିନ୍ଦୀ ସାହିତ୍ୟ କୋଷର ଲେଖକ ହାସ୍ୟକୁ ପାଞ୍ଚ ଭାଗରେ ବିଭକ୍ତ କରିଅଛନ୍ତି । ସେ ଗୁଡ଼ିକ ହେଲି— (୧) ସହଜ (୨) ଦୃଷ୍ଟି ବିକାର (୩) ଭାବବିକାର (୪) ଧ୍ୱନିବିକାର (୫) ବୁଦ୍ଧି ବିକାର । ଏହି ପ୍ରତ୍ୟେକ ବିକାର ପୁନଶ୍ଚ ଦୁଇଟି ଲେଖାଏଁ ବିଭାଗରେ ବିଭକ୍ତ କରାଯାଇଛି । ତେଣୁ 'ସହଜ' ହେଲା—'ବିନୋଦ' (wit) ଏବଂ 'ଅଟ୍ଟହାସ୍ୟ' (laughter), 'ଦୃଷ୍ଟି ବିକାର' ହେଲା 'ଅତିରଞ୍ଜନ' (caricature) ଏବଂ 'ବିରୂପ' (contrast), 'ଭାବବିକାର' ହେଲା 'ପରିହାସ' (parody, ଓ ଉପହାସ (cornic), 'ଧ୍ୱନିବିକାର ହେଲା ବ୍ୟାଜୋକ୍ତି sarcasim) ଓ ବକ୍ରୋକ୍ତି (wit, 'ବୁଦ୍ଧି ବିକାର' ମଧ୍ୟ ବ୍ୟଙ୍ଗ (irony) ଓ 'ବିକୃତି' (satire).

ଦୃଷ୍ଟି ବିକାର, ଭାବବିକାର ଏବଂ ଧ୍ୱନିବିକାରଜନିତ ହାସ୍ୟ ଦେଶକାଳ ପାତ୍ରକୁ ଅତିକ୍ରମ କରି ଆବେଦନ କରିବା ସହଜ ନୁହେଁ । ଏହି ସମ୍ପର୍କୀୟ ହାସ୍ୟ ସମାଜ ଓ ଦେଶ ଭେଦରେ ସ୍ୱତନ୍ତ୍ର ମନେ ହୋଇଥାଏ । ମାତ୍ର ବୁଦ୍ଧିଦୀପ୍ତ ହାସ୍ୟ ଯେ କୌଣସି ଦେଶ ଓ ସମାଜକୁ ମଧ୍ୟ ଉଲ୍ଲସିତ କରିପାରେ ।

ସାହିତ୍ୟରେ ସାମାଜିକ ଜୀବନର ଅନୁଶୀଳନ ହୋଇଥାଏ । ଜୀବନର ପ୍ରତିଚ୍ଛବି ସାହିତ୍ୟରେ ସାର୍ଥକ ଭାବରେ ରୂପାୟିତ ହୁଏ । ତେଣୁ ଯୁଗେ ଯୁଗେ ସାହିତ୍ୟର ପ୍ରଗତି ପଥରେ ହାସ୍ୟ ଭାବନାକୁ ମଧ୍ୟ ଲକ୍ଷ୍ୟ କରିବାକୁ ହୋଇଥାଏ । ଜୀବନର ରଙ୍ଗମଞ୍ଚରେ ହାସ୍ୟର ଉପାଦେୟତା ଯେପରି ଅନସ୍ୱୀକାର୍ଯ୍ୟ, ସେହିପରି ରଙ୍ଗମଞ୍ଚର ସାହିତ୍ୟ ନାଟକରେ ହାସ୍ୟରସର ପ୍ରାଧାନ୍ୟ ଅଧିକ ଅନୁଭୂତ ହୋଇଥାଏ ।

# ଆଧୁନିକ ସାହିତ୍ୟର ଦୃଷ୍ଟିଭଙ୍ଗୀ ଓ ସାମ୍ପ୍ରତିକ ଓଡ଼ିଆ କବିତା

ଆଧୁନିକ ସାହିତ୍ୟର ବିଚାର ଓ ମୂଲ୍ୟ କରିବାରେ ଯେଉଁମାନେ ଧ୍ୟାନ ଦେଇଛନ୍ତି, ସେମାନେ ଅନେକ ସମୟରେ ସାହିତ୍ୟରେ 'ଆଧୁନିକତା'ର ପରିଣତି ସମ୍ପର୍କରେ ସଚେତ ଥିଲେପରି ମନେହୁଏ ନାହିଁ । କାରଣ ଆଧୁନିକତାର ମୋହ ଆଧୁନିକ ପାଠକ ଅପେକ୍ଷା ସ୍ରଷ୍ଟାର ପ୍ରାଣରେ ଅଧିକ ପ୍ରକାଶିତ । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟ, ବିଶେଷତଃ ଆଧୁନିକ କବିତାର ବିଚାର ବେଳେ ଏହି ସମସ୍ୟାହିଁ ଅଧିକ ପ୍ରତିଭାତ ହୁଏ । ସାହିତ୍ୟରେ ଆଧୁନିକତା ବୋଲି କିଛି ନାହିଁ । ଯାହା ଆଜି ନୂତନ, ଆସନ୍ତାକାଲି ପୁଣି ତାହା ପ୍ରାଚୀନରେ ପରିଣତ ହେବ । ଯୁଗ ଯୁଗ ଧରି ମନୁଷ୍ୟର ରୁଚିର ପରିବର୍ତ୍ତନ ଧାରାବାହିକ ଭାବରେ ଗଡ଼ି ଚାଲିଛି । ତେବେ ଏହି ପରିବର୍ତ୍ତନର ଆବର୍ତ୍ତ ମଧ୍ୟରେ ସାହିତ୍ୟ ସର୍ବଦା ଏକ ଚିରନ୍ତନ ଆବେଦନର ଅପେକ୍ଷା ରଖେ । ଆନନ୍ଦ ଓ ଆବେଦନ ସାହିତ୍ୟର ପ୍ରଧାନ ଧର୍ମ । ତେଣୁ କବି ଓ ପାଠକ ମଧ୍ୟରେ ସମ୍ବେଦନଶୀଳ ସମ୍ପର୍କ ସ୍ୱୀକୃତ ।

ଏହି ବିଚାରରେ ଆଧୁନିକ ଓଡ଼ିଆ କବିତାର ନିରୀକ୍ଷଣ ଆବଶ୍ୟକ । ଆଧୁନିକ ସାହିତ୍ୟର ଟୀକାଟିପ୍ପଣୀ ବା ବିଚାର ବିଶ୍ଳେଷଣ ଏକ ଦୁଃଖଦାୟକ କାର୍ଯ୍ୟ । କାରଣ ଯାହାର ସୃଷ୍ଟି ଓ ବିକାଶ ଚାଲିଛି, ସେ ସମ୍ପର୍କରେ ଏକ ମନ୍ତବ୍ୟ ପ୍ରକାଶ କରିବା ସହଜ ନୁହେଁ । ସୃଷ୍ଟି ସାଧନାରେ ପୂର୍ଣ୍ଣାଙ୍ଗ କୃତିର ଅଧିକାରୀ ନହେଲେ କୌଣସି କବି ବା କବିତା ସମ୍ପର୍କରେ ମତାମତ ବ୍ୟକ୍ତ କରିବା ଏକଦେଶଦର୍ଶିତା ଦୋଷରେ ଦୁଷ୍ଟ ହେବ । ପୁନଶ୍ଚ ସାଂପ୍ରତିକ ସାହିତ୍ୟ ଏକ ପୂର୍ଣ୍ଣାଙ୍ଗରୂପ ପରିଗ୍ରହ କରିବା ପାଇଁ ହୁଏତ ଆହୁରି ଅନେକ ଦିନ ଲାଗିଯିବ । ଅଥଚ ରୀତି ପରିବର୍ତ୍ତନର ପରିଣାମ ପରି ଏହି ଆଧୁନିକ ସାହିତ୍ୟର ପାଣିପାଗ ଅନେକଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରିବା ସ୍ୱାଭାବିକ ! ସେଥିପାଇଁ ଆଧୁନିକ କବିତା ସମ୍ପର୍କରେ ବେଳେବେଳେ ଯେପରି ଅସୂୟା ଭାବ ପ୍ରକାଶ ପାଏ, ସେହିପରି ଉଚ୍ଛ୍ୱସିତ ପ୍ରଶଂସା ମଧ୍ୟ ଶୁଣାଯାଏ । ମନେହୁଏ, ଏହି ଉଭୟ ଦଳର ଦୃଷ୍ଟିଭଙ୍ଗୀରେ ଉଦାରତା, ବିଚାରପ୍ରାଣତା ଅଥବା ମନନଶୀଳତା ନାହିଁ, ଅଛି କେବଳ ଅନ୍ଧାନୁକରଣ ଅଥବା ଆଧୁନିକତାର ବ୍ୟାମୋହଜନିତ ଭାବାବେଗ । ସେହି କାରଣରୁ ଏ ସ୍ଥଳରେ ଆଧୁନିକ କବିତା ସମ୍ପର୍କରେ କୌଣସି ଅନୁଶୀଳନ ନକରି ଆଧୁନିକ କବିର ବିଚାରଧାରା ସମ୍ପର୍କରେ କିଞ୍ଚିତ ଆଲୋକପାତ କଲେ, ଏହି ଦ୍ୱନ୍ଦ୍ୱାତ୍ମକ ସମସ୍ୟା ସମ୍ପର୍କରେ କେତେକ ଧାରଣା କରାଯାଇ ପାରିବ ।

ଆଧୁନିକ କବିତା ବୁଝିବା ପାଇଁ କେତେକ ପ୍ରାସଙ୍ଗିକ ସମସ୍ୟାର ସ୍ମରଣ କରିବାକୁ ହୁଏ । ଇଂରେଜୀ ସାହିତ୍ୟର ଇତିହାସ ଯେଉଁମାନେ ଆଲୋଚନା କରିଛନ୍ତି, ସେମାନେ ଜାଣନ୍ତି ଯେ, ଊନବିଂଶ ଶତାବ୍ଦୀ ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସାହିତ୍ୟରୁ ରୋମାଣ୍ଟିସିଜିମ୍ ବିଦାୟ ନେଇଅଛି । ଏ ଯୁଗ ହେଉଛି, ବିଜ୍ଞାନର ଯୁଗ, ବସ୍ତୁବାଦର ଯୁଗ ! ଏହି ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ପୃଥିବୀରେ ଦୁଇଟି ମହାଯୁଦ୍ଧ, ରୁଷ ଓ ଚୀନ ଦେଶରେ ସମାଜବାଦର ମହା ପରୀକ୍ଷା ଏବଂ ପୃଥିବୀର ବିଭିନ୍ନାଞ୍ଚଳରେ ଅସଂଖ୍ୟ ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ ବିପ୍ଳବ ସଂଘଟିତ ହୋଇଥିବା ଜଣାଯାଏ । ବିଶେଷତଃ ବିଜ୍ଞାନର ଅଭୂତପୂର୍ବ ଓ ଅଶ୍ରୁତପୂର୍ବ ଆବିଷ୍କାର ଓ ଉଦ୍ଭାବନ ଫଳରେ ଜନମାନସରେ ଅସାମାନ୍ୟ ପରିବର୍ତ୍ତନ ଓ ଭାବର ପ୍ଳାବନ ସମ୍ଭବ ହୁଏ । ତେଣୁ ଆଧୁନିକ କବିତା ସାମାଜିକ ଜୀବନର ଏହି ଚିନ୍ତାଧାରାକୁ ପ୍ରତିଫଳନ କରି ଏକ ସ୍ୱତନ୍ତ୍ର ରୂପ ଓ ଧର୍ମ ନେଇ ଆତ୍ମପ୍ରକାଶ କରିବା ଅତ୍ୟନ୍ତ ସ୍ୱାଭାବିକ । ତେଣୁ ପ୍ରାଚୀନ କାବ୍ୟ କବିତାର ପରମ୍ପରାକୁ ଛିନ୍ନ କରି ଆଧୁନିକ କବିତା ଯଦି ଏକ ନୂତନ ଦିଗ୍‌ଦର୍ଶନ ଦିଏ, ତାହାହେଲେ ଏଥିରେ ବିଚଳିତ ହେବାର କିଛି ନାହିଁ । କିନ୍ତୁ ବେଳେ ବେଳେ ସ୍ତମ୍ଭିତ ହେବାକୁ ପଡ଼େ ଯେ, ଯେଉଁମାନେ ଆଧୁନିକତାର ସ୍ରଷ୍ଟା, ସେମାନେ ଯେପରି 'ଥିଓରୀସର୍ବସ୍ୱ' ଜ୍ଞାନ ନେଇ ସୃଷ୍ଟି କରି ଚାଲିଛନ୍ତି । କାରଣ ଆଧୁନିକ କବିତା ସମ୍ପର୍କରେ ଅଯଥା ଗୁରୁତ୍ୱ ଆରୋପ କରୁଥିବା କେତେକ ଆଲୋଚକଙ୍କ ମତାମତ ପଢ଼ି ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ଇଚ୍ଛା ହୁଏ । ସାହିତ୍ୟ ଯେ ସମାଜର ବାର୍ତ୍ତାବହ ଏବଂ ସମାଜର ରୁଚି ଅନୁଯାୟୀ ଯେ ସାହିତ୍ୟର ଆଙ୍ଗିକ ବିକାଶ ହୁଏ, ଏହି ସ୍ୱାଭାବିକ କଥାଟି ସେମାନେ ଜାଣି ମଧ୍ୟ ବିସ୍ମୃତ-ଭ୍ରଷ୍ଟ ହୁଅନ୍ତି ।

ଅତୀତରେ ଯେଉଁ କେତେଗୋଟି ଆଲୋଚନା ଏ ସମ୍ପର୍କରେ ହୋଇ ଯାଇଛି, ତହିଁର କେତେକ ଉଲ୍ଲେଖଯୋଗ୍ୟ ଉଦାହରଣ ଦିଆଯାଇ ପାରେ । ୧୯୫୫ ସାଲରେ ଅଧ୍ୟାପକ ଗୁରୁପ୍ରସାଦ ମହାନ୍ତି ଏବଂ ଭାନୁଜୀ ରାଓଙ୍କ କେତେକ 'ଆଧୁନିକ ନାମା-କବିତା' (କାରଣ ଏହି ଗ୍ରନ୍ଥର ସମ୍ପାଦକ ଆଧୁନିକ ଅର୍ଥରେ ବର୍ତ୍ତମାନର ଓଡ଼ିଆ କବିତାକୁ 'ଆଧୁନିକ' ବୋଲି ସ୍ୱୀକାର କରି ନାହାନ୍ତି ।) "ନୂତନ କବିତା" ନାମରେ ସଂକଳିତ ହୋଇଅଛି । ଏହି ଗ୍ରନ୍ଥର 'ଭୂମିକା'ରେ ସମ୍ପାଦକ ଯତୀନ୍ଦ୍ର ମହାନ୍ତି ଲେଖିଛନ୍ତି—"ଠିକ୍ 'ଆଧୁନିକ ଚେତନା' କହିଲେ ଯାହା ବୁଝାଯାଏ, ଏହି କବିତାଗୁଡ଼ିକରେ ସେହି ଚେତନାର ଅନୁଭୂତି ମିଳେ ଓ ମୁଖ୍ୟତଃ ସେହି ଦୃଷ୍ଟିରୁ ଏହି କବିତାଗୁଡ଼ିକ ଓଡ଼ିଆରେ ନୂତନ । ଆଧୁନିକ ଓଡ଼ିଆ କବିତାକୁ ଆଲୋଚନା କଲେ ଏହି 'ଚେତନା'ର ଅଭାବ ବିଶେଷ ଭାବରେ ଲକ୍ଷିତ ହୁଏ ।" ସେ ଏହି ପ୍ରସଙ୍ଗରେ ୧୯୫୫ ସାଲ ପୂର୍ବର ପ୍ରକାଶିତ ଓଡ଼ିଆ କବିତା ସମ୍ପର୍କରେ ମତ ବ୍ୟକ୍ତ କରିଛନ୍ତି ଯେ, "ଆଧୁନିକ ଅର୍ଥରେ ଆଧୁନିକ ଓଡ଼ିଆ କବିତାକୁ 'ଆଧୁନିକ' କହି ହେବନାହିଁ ।" ଏଠାରେ ସମ୍ପାଦକ 'ମହାନ୍ତି' ଆଧୁନିକ ଚେତନା' ବୋଲି ଯାହା ଗ୍ରହଣ କରିଛନ୍ତି, ତାହା ସମ୍ପୂର୍ଣ୍ଣ ଭାବରେ ପାଶ୍ଚାତ୍ୟ ସାହିତ୍ୟ

ବିଗ୍ରହରେ ରୂପାୟିତ । ଅବଶ୍ୟ ରେଡ଼ିଓ, ସମ୍ବାଦପତ୍ର, ଟେଲିଭିଜନ୍ ତଥା ଆକାଶଯାନ ଯୁଗରେ ସମଗ୍ର ପୃଥିବୀ ପୂର୍ବ ଅପେକ୍ଷା ଯଥେଷ୍ଟ କ୍ଷୁଦ୍ର ଏବଂ ସମ୍ପର୍କିତ ହୋଇ ପଡ଼ିଅଛି । ହେଲେ ବି ଆଧୁନିକ 'ରୁଚି' ଏବଂ ଚେତନା କହିଲେ ବିଲାତର ସମାଜରେ ଯାହା ବୁଝାଯାଏ, ତାହା 'ଥିଓରି' ଦୃଷ୍ଟିରୁ ଆମ ସମାଜରେ ଗୃହୀତ ହେଲେ ହେଁ ବାସ୍ତବ ସାମାଜିକ ଜୀବନର ଅନୁଭୂତିରେ କେବେହେଁ ସମାନ ହେବନାହିଁ । ତେଣୁ ଇଂରେଜୀ ସାହିତ୍ୟର 'ଆଧୁନିକ ଚେତନା' ଓଡ଼ିଆ ଆଧୁନିକ କବିତାରେ ଖୋଜି ବସିଲେ ବ୍ୟର୍ଥ ହେବାକୁ ପଡ଼ିବ । କାରଣ ଏ ବିଜ୍ଞାନ ଯୁଗର ଏତେ ଆଦାନ ପ୍ରଦାନ ସତ୍ତ୍ୱେ ଆମେରିକା ଓ ଇଂଲଣ୍ଡର ସାମାଜିକ ଚେତନା ଏ ଦେଶରେ ଆସିବାକୁ ହୁଏତ ଆହୁରି ଅନେକ ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ତେଣୁ "ନୂତନ କବିତା"ର ସମ୍ପାଦକ ଓଡ଼ିଆ ସମାଜର ବାସ୍ତବ ଅଭିରୁଚିକୁ ସହାନୁଭୂତିର ସହିତ ଗ୍ରହଣ ନ କରି, ଅଥବା ତାହାର ବିକାଶର ଐତିହାସିକ ତତ୍ତ୍ୱକୁ ହୃଦୟଙ୍ଗମ ନ କରି, ସେହି ଦେଶର ଆଧୁନିକ ପ୍ରଗତିଶୀଳ କବିତାକୁ 'ଆଧୁନିକ' ପର୍ଯ୍ୟାୟରେ ଗ୍ରହଣ କରିବାକୁ ଯେପରି କୁଣ୍ଠିତ ହେଲେ, ସେହିପରି ବର୍ତ୍ତମାନ ବହୁ "ଆଧୁନିକ କବିତା" ଲେଖକ କେବଳ ଇଂରେଜୀ ସାହିତ୍ୟ ଅଧ୍ୟୟନ କରି ୟୁରୋପୀୟ ସମାଜର ବିବର୍ତ୍ତନରେ ଉନ୍ମାଦିତ ହୋଇ ଅବିକଳ ସେହି ଧାରାର ପ୍ରବର୍ତ୍ତନ ପାଇଁ ଆଧୁନିକ କବିତା ମାଧ୍ୟମରେ ପରୀକ୍ଷା ଚଳାଇଛନ୍ତି । ତେଣୁ ଏ କବିତାରେ ଏ ଯୁଗର ସଂଘର୍ଷ, ସମସ୍ୟା, ଯୁଗରୁଚି ଏବଂ ଆତ୍ମମୁଖ୍ୟ ଅତ୍ୟନ୍ତ ସାର୍ଥକତାର ସହିତ ରୂପାୟିତ ହେଉଥିଲେ ହେଁ ତହିଁରେ ଓଡ଼ିଆ ପ୍ରାଣଧାରାର ସମ୍ପର୍କ ଯଥାର୍ଥ ଭାବରେ ପ୍ରକଟିତ ହେଉଛି ବୋଲି ମନେହେଉନାହିଁ ।

ଏ ସ୍ଥଳରେ ଆଉ ଜଣେ ଆଲୋଚକଙ୍କର ମତ ବିଶ୍ଳେଷଣ କରାଯାଇପାରେ । ଆଲୋଚକ ନିଜେ ଆଧୁନିକ କବିତାର ସାର୍ଥକ ସ୍ରଷ୍ଟା ହୋଇଥିବାରୁ ତାଙ୍କର ମତାମତ ପ୍ରତି ଯଥେଷ୍ଟ ଗୁରୁତ୍ୱ ଦେବାକୁ ହେବ ଏବଂ କେଉଁ ଭାବଧାରାର ବଶବର୍ତ୍ତୀ ହୋଇ ଆଧୁନିକ କବିତାର ଲେଖକଗଣ ଲେଖନୀ ଚାଳନା କରୁଛନ୍ତି, ତାହା ମଧ୍ୟ ସହଜରେ ଅନୁମାନ କରିହେବ । ସେହି ୧୯୫୫ ସାଲରେ ପ୍ରକାଶିତ "ଆଗାମୀ" ମାସିକ ପତ୍ରର କୌଣସି ସଂଖ୍ୟାରେ ଅଧ୍ୟାପକ ଚନ୍ଦ୍ରମଣି ବେହେରା ଆଧୁନିକ 'ଓଡ଼ିଆ କବିତାର ଆଲୋଚନା' କରି ଯେଉଁ ମତ ବ୍ୟକ୍ତ କରିଛନ୍ତି, ତାହା ଆଧୁନିକ କବିତା ବିଷୟରେ ବାସ୍ତବିକ ଅତ୍ୟନ୍ତ ପ୍ରଣିଧାନ-ଯୋଗ୍ୟ । ତାଙ୍କ ମତରେ—"(୧)-ଯେଉଁ କବିତାରେ ଶସ୍ତା ଅନୁଭୂତିର ପ୍ରକାଶ ଦେଖାଯାଏ, ଭାବର ଗଭୀରତା ଯେଉଁଥିରେ ନାହିଁ, ଜୀବନର କୌଣସି ନିର୍ଦ୍ଦିଷ୍ଟ ଧ୍ୟାନ ଧାରଣାର ପରିଚୟ ଯେଉଁଥିରେ ନାହିଁ, ସେ କବିତା କେବଳ ଅବସର ବିନୋଦନର ସାଥୀ ହୋଇପାରେ, ଉଚ୍ଚକୋଟୀର କବିତା ନୁହେଁ । (୨)-କବିତାର କବର ପାଇଁ ଏ ଯୁଗରେ ବହୁ ଉପାଦାନ ରହିଛି । ତେଣୁ ବଞ୍ଚିବାପାଇଁ, ମୃତ୍ୟୁମୁଖରୁ ଆତ୍ମରକ୍ଷା କରିବା ପାଇଁ ଏ ଯୁଗର କବିତା ନିଜର ରୂପଧର୍ମ ପରିବର୍ତ୍ତନ କରିବାକୁ ବାଧ୍ୟ । (୩)-ତେଣୁ ଆଧୁନିକ କବିତା ରସଧର୍ମୀ ସଙ୍ଗୀତପିପାସୁ ପାଠକ ନିକଟରେ ଅଗ୍ରାହ୍ୟ ହେବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । (୪)-ଆଧୁନିକ କବିତାର ସୃଷ୍ଟି

ଯେପରି ପ୍ରତିଭା ଓ ଶ୍ରମ ସାପେକ୍ଷ, ତାହା ବୁଝିବା ମଧ୍ୟ ସେହିପରି ଧ୍ୟାନ ଓ ଧୈର୍ଯ୍ୟ ସାପେକ୍ଷ ।”

ଅଧ୍ୟାପକ ବେହେରାଙ୍କ ଉପରୋକ୍ତ ଆଲୋଚନାରୁ ଆଧୁନିକ କବିତାର ଆଙ୍ଗିକତା, ଅଭିବ୍ୟକ୍ତି ପ୍ରକାଶଭଙ୍ଗୀ ଏବଂ ତାହାର ପାଠକ ଓ ରଚକ ସମ୍ପର୍କରେ କେତେକ ଧାରଣା କରିବାକୁ ହୁଏ । ଆଧୁନିକ କବିତା ଯେ ଶ୍ରମସାପେକ୍ଷ ଏବଂ ବୌଦ୍ଧିକତାପୂର୍ଣ୍ଣ, ସେ ତାହା ଘୋଷଣା କରିଛନ୍ତି । ମାତ୍ର ଆଧୁନିକ କବିତା ସୃଷ୍ଟି କରିବାରେ ପ୍ରତିଭା ଓ ଶ୍ରମକୁ ଏକାଠି କରି ସମସ୍ୟାକୁ ଯେ କିଞ୍ଚିତ ଗୋଳମାଳିଆ କରିଛନ୍ତି ବୋଲି ବୋଧହୁଏ । ଆଧୁନିକ କବି ବହୁପାଠୀ ହୋଇ ପାରନ୍ତି; ମାତ୍ର ଆଧୁନିକ କବିତା ଲେଖକ ମାତ୍ରକେ ଯେ ପ୍ରତିଭାସମ୍ପନ୍ନ, ଏ ଦାବୀ ଅତ୍ୟନ୍ତ ଅନୁଦାର ମତର ପରିପୋଷଣ କରୁଅଛି । ତାହା ଛଡ଼ା ଏ କ୍ଷେତ୍ରରେ ଲେଖକ କବିତାର ମୂଳ ଲକ୍ଷ୍ୟ ଓ ଆଦର୍ଶ ଭୁଲି ଯାଇଛନ୍ତି ବୋଲି କହିଲେ ଭୁଲ ହେବ ନାହିଁ । ସବୁକାଳରେ କବି ରସଗ୍ରାହୀ ପାଠକ କାମନା କରି ଆସିଛନ୍ତି । ତେଣୁ ଆଧୁନିକ କବିତା ସମ୍ପର୍କରେ ଏହା କିଛି ନୂତନ ଅବବୋଧ ନୁହେଁ । ଲେଖକ ନିଜେ ସ୍ୱୀକାର କରିଛନ୍ତି ଯେ, କବିତାର କବର ପାଇଁ ଏ ଯୁଗରେ ବହୁ ଉପାଦାନ ରହିଛି । ତେଣୁ ଆତ୍ମରକ୍ଷା ପାଇଁ ଆଧୁନିକ କବିତାକୁ ଏକ କୃତ୍ରିମ ବେଶ ପରିଗ୍ରହ କରିବାକୁ ହୁଏ । ଏ ଯୁଗର ସାହିତ୍ୟ ସମାଜ ପାଇଁ ଉଦ୍ଦିଷ୍ଟ । ସମାଜବର୍ଜିତ ହୋଇ କିଛି ଲେଖିବାର ଅଧିକାର ଆଧୁନିକ ଲେଖକର ନାହିଁ । ବ୍ୟକ୍ତିଚେତନା ସାହିତ୍ୟର ଲକ୍ଷ୍ୟ ହୋଇଥିବାରୁ ତାହାର ସାବଲୀଳ ଓ ସହଜ ପ୍ରକାଶ ପାଇଁ ମଧ୍ୟ ଆଧୁନିକ ଲେଖକର ଗୁରୁଦାୟିତ୍ୱ ରହିଛି । ପୁନଶ୍ଚ ସେ ଯେଉଁ ଦେଶରେ ଆତଯାତ ହୋଇ ଯେଉଁ ସମାଜ ପାଇଁ ଲେଖନୀ ଧାରଣ କରୁଛି, ସେହି ସମାଜର ହୃଦୟକୁ ଜୟ କରିବା ପାଇଁ ତା ରଚିତ କବିତାରେ ଆବେଦନ ରହିବା ଉଚିତ । କେବଳ ବୌଦ୍ଧିକତାର ଖେଳ ପଦ୍ୟ ସୃଷ୍ଟି କରିପାରେ; ମାତ୍ର ତାହା ଖାଣ୍ଟି କବିତା ହେବ ନାହିଁ । ଖାଣ୍ଟି କବିତା ହେଉଛି ଗଭୀର ହୃଦୟାବେଗର ଅନନ୍ୟସାଧାରଣ ପ୍ରକାଶ । କବିତାର ଏହି ଚିରନ୍ତନ ସଂଜ୍ଞା ସମ୍ପର୍କରେ ଜଣେ ବିଖ୍ୟାତ ବିଦେଶୀ ସମାଲୋଚକ ଆର୍ନଲ୍ଡଙ୍କ ମତ ପରୀକ୍ଷା କରାଯାଇପାରେ ।

"The difference between genuine poetry and the poetry of Dryden, Pope and all their schools. is briefly this. Their poetry is conceived and composed in their wits, genuine poet y is conceived and composed in the soul." F. R. Leavis—New Bearings in English Poetry—1950—p. 9.—

ବୁଦ୍ଧିର ପରୀକ୍ଷା ଦେଇ ହୁଏତ ଆଧୁନିକ କବିତାକୁ ପଢ଼ାଯାଇପାରେ; ମାତ୍ର ତାହା ଏହି କାରଣରୁ ଅନେକ ସମୟରେ ଉପଭୋଗ୍ୟ ହେବ ନାହିଁ କିମ୍ବା ଗଣସାହିତ୍ୟର

ପର୍ଯ୍ୟାପ୍ତରେ ପଡ଼ିନ ନାହିଁ । ଆଧୁନିକ କବିତା ବସ୍ତୁବାଦୀ ଏବଂ ଗଣଧର୍ମୀ ବୋଲି ଦାବୀ କରିଥିବାରୁ ଏଠାରେ ଗଣସାହିତ୍ୟର ରୂପରେଖ ଏବଂ ଭବିଷ୍ୟତ ସମ୍ପର୍କରେ ବିଗ୍ଭରିବାର କଥା । ବଙ୍ଗଳାର ବିଖ୍ୟାତ ଲେଖକ ପ୍ରମଥନାଥ ବିଶୀ ବାବୁଙ୍କର 'ବାଙ୍ଗାଲୀ ଓ ବାଂଲା ସାହିତ୍ୟ' (ପୃ: ୨୭-୨୭-୩୫ ସଂ.) ପୁସ୍ତକରେ ଗଣସାହିତ୍ୟ ସମ୍ପର୍କରେ କେତେକ ସୁଚିନ୍ତିତ ମତ ପ୍ରକାଶ କରିଛନ୍ତି । ତାଙ୍କ ମତରେ କବି ସାମାଜିକ ପ୍ରାଣୀ ହୋଇଥିବାରୁ ତାହାଙ୍କର ସମାଜ-ଚୈତନ୍ୟ ସ୍ୱାଭାବିକ । ମାତ୍ର 'ସାମ୍ପାଦିକତାର ବିଶିଷ୍ଟ ଲକ୍ଷଣ ମଧ୍ୟ ସମାଜଚୈତନ୍ୟ । ସାହିତ୍ୟର ବିଶିଷ୍ଟ ଲକ୍ଷଣ ଜୀବନ-ଚୈତନ୍ୟ । ତେଣୁ ଯେ କୌଣସି ରଚନା ସାହିତ୍ୟ ପଦବାଚ୍ୟ ହେଲେ ତାହା ଜୀବନଚୈତନ୍ୟର ଅଭିବ୍ୟକ୍ତି ଦେବାକୁ ହେବ । ସମାଜର ଚେତନାଜନିତ କଥାବସ୍ତୁ ଉପରେ ନିର୍ଭର କରି ଚିରନ୍ତନ ସାହିତ୍ୟ ସୃଷ୍ଟି ସମ୍ଭବ ନୁହେଁ । କାରଣ ସମାଜ-ଚୈତନ୍ୟ କଥାଟି ଅସ୍ଥାୟୀ । ଏହା ନିତ୍ୟ ପରିବର୍ତ୍ତନଶୀଳ । କାଳକ୍ରମେ ସମାଜ-ଚୈତନ୍ୟ ଇତିହାସରେ ପରିଣତ ହୋଇଯିବ ।

ବର୍ତ୍ତମାନ ଗଣସାହିତ୍ୟ ପାଇଁ ଆନ୍ଦୋଳନ ଚାଲିଛି । ଏ ପ୍ରକାର ସାହିତ୍ୟର ପ୍ରଧାନ ଉପଜୀବ୍ୟ ହେଉଛି ରାଷ୍ଟ୍ରୀୟ ଆନ୍ଦୋଳନ । ଦେଶର ସାଂପ୍ରତିକ ଦୁର୍ଭାଗ୍ୟ ଜମ୍ମା ଜନଗଣର କାଳ୍ପନିକ ଦୁଃଖ ଦୁର୍ଦ୍ଦଶା କହିଲେ ଅଖଣ୍ଡ, ସମଗ୍ର ସମାଜକୁ ବୁଝାଏ । ଗଣ ସାହିତ୍ୟ କହିଲେ ମଧ୍ୟ ବୁଝିବାକୁ ହେବ, ଯେଉଁ ସାହିତ୍ୟର ଅଖଣ୍ଡ ରସ ସମାଜ ଅନାୟାସରେ ଗ୍ରହଣ କରିବାରେ ସମର୍ଥ । ସମାଜର ଅଖଣ୍ଡତା ସମାଜର ପ୍ରାଣଧର୍ମ ହୋଇଥିବାରୁ କେଉଁକାଳେ ଯଦି କୌଣସି କାରଣରୁ ସମାଜର ଅଖଣ୍ଡତା ଲୋପ ପାଏ, ତେବେ ସେ ସମାଜରେ ଗଣସାହିତ୍ୟ ସୃଷ୍ଟି ହୋଇ ପାରିବ ନାହିଁ । ବର୍ତ୍ତମାନ ସମାଜ ଅଖଣ୍ଡ ନୁହେଁ—ଆଧୁନିକ ଦେଶ ଓ ସମାଜର ସମ୍ପର୍କ କେବଳ ରାଜନୈତିକ ବା ଅର୍ଥନୈତିକ—ଏହା ମାନସିକ ନୁହେଁ । ପୁନଶ୍ଚ ଗଣସାହିତ୍ୟ ଛନ୍ଦର ବାହକ ହେବା ଉଚିତ । ଆଧୁନିକ ସାହିତ୍ୟ ସାଧାରଣତଃ ଗଦ୍ୟମୁଖୀ । ଗଦ୍ୟ କେବଳ ଚିନ୍ତାର ବାହକ—ପଦ୍ୟ ଅନୁଭୂତିର । ଚିନ୍ତାରାଜ୍ୟରେ ମଣିଷ ବିଭିନ୍ନ: ମାତ୍ର ଅନୁଭୂତିରେ ନୁହେଁ । ତେଣୁ ଗଣ ସାହିତ୍ୟର ସାଙ୍ଗୀତିକ ପ୍ରେରଣା ରହିବା ଆବଶ୍ୟକ ।

ଆଧୁନିକ କବିତା ବୌଦ୍ଧିକତାର ଜାହିର କରି ଯେପରି ଦୁର୍ବୋଧ ହେବାକୁ ବାଧ୍ୟକରେ, ବସ୍ତୁଧର୍ମୀ ଓ ଗଣମୁଖୀ ହେବାର ପ୍ରୟାସ କରି ମଧ୍ୟ ସେହିପରି ଗଦ୍ୟମୟ ହୁଏ । ପୁନଶ୍ଚ ଆଧୁନିକ କବିତାର ପ୍ରେରଣା ସମଗ୍ର ବିଶ୍ୱସମାଜର ବୋଲି ଧାରଣା ଦେଇ ତାହାକୁ ସେହି ପରିମାଣରେ ସମାଜ ବିମୁକ୍ତ କରି ଦିଆଯାଉଛି । ମାତ୍ର କଳାର ଆଦର୍ଶ ଦୁର୍ବୋଧତା ନୁହେଁ । ଉତ୍କୃଷ୍ଟ କଳା ବାସ୍ତବ, ଜୀବନ୍ତ ଏବଂ ଅତ୍ୟନ୍ତ ସ୍ପଷ୍ଟ ମଧ୍ୟ । ସାହିତ୍ୟର ଚରମ ଲକ୍ଷ୍ୟ ହେଉଛି ଆନନ୍ଦ । ତାହା ହେଉଛି ସତ୍ୟ, ଶିବ ଓ ସୁନ୍ଦରର ପ୍ରକାଶ । ଯେଉଁ ରଚନା ପାଠକ ପ୍ରାଣରେ ତନ୍ମୟତା ସୃଷ୍ଟି କରିପାରେ, ତାହାହିଁ କେବଳ ଖାଣ୍ଟି ସାହିତ୍ୟ ପଦବାଚ୍ୟ ହେବ ।

"True art arises when complete confidence is established between reader and writer".

ସେଥିପାଇଁ ଆଧୁନିକ କବିତା ସମ୍ପର୍କରେ ସଫେଇ ଦେଇ ତାହାର ଦୁର୍ବୋଧତା, ସାବଲୀଷ୍ଟତାର ଗୁରୁତ୍ୱ ଘୋଷଣା କରିବାରେ ସାମୟିକ ଆତ୍ମସନ୍ତୋଷ ଅଥବା ମୌଳିକତାର ଆସ୍ୱାଦନ ମିଳିପାରେ; ମାତ୍ର କବିର ସର୍ଜନା-ସ୍ୱପ୍ନ ଆଦୌ ଚରିତାର୍ଥ ହୋଇପାରିବ ନାହିଁ । କଳାର ଆଦର୍ଶ ସମ୍ପର୍କରେ ଜଣେ ବିଶିଷ୍ଟ ଚିନ୍ତାଶୀଳ ବ୍ୟକ୍ତି Irwin Edman ଯଥାର୍ଥରେ କହିଛନ୍ତି—

"The artist opens our eyes and our ears and our imagination so that he writes or paints or composes to have more 'reality' for us than that clouded actual enviornment in which we walk and breath. The 'things' in a painting have more purity and precision and intensity than the things as seen by the routine practical eye. The characters in a novel have more urgency and clarity than the people we brush against in our hurried daily contacts. The place to seek for reality is not in some metaphysical formula, but in the unimpeachable realities in works of art."

ତେବେ ଏକଥା ସତ୍ୟ ଯେ ପ୍ରାଚୀନ କବିତାଠାରୁ ଆଧୁନିକ କବିତାର ପାର୍ଥକ୍ୟ କେବଳ ରୂପଗତ ନୁହେଁ, ରସଗତ ମଧ୍ୟ । ଏ କବିତାର ଅବବୋଧ ପାଇଁ ବିଂଶ ଶତାବ୍ଦୀର ଜୀବନଧାରାକୁ ଲକ୍ଷ୍ୟ ରଖିବାକୁ ହେବ । ଏ ଯୁଗ ଯନ୍ତ୍ରସଭ୍ୟତାର ଯୁଗ । ଆଧୁନିକ ମନୁଷ୍ୟ ଯନ୍ତ୍ର ଉପରେ ଏତେ ପରିମାଣରେ ନିର୍ଭର କରିବାକୁ ଯାଉଛି ଯେ, ସେ ନିଜେ କଳ ମଣିଷ ହେବା ଛଡ଼ା ଉପାୟ ନାହିଁ । ତାହାଛଡ଼ା ଥିଲା ଓ ନଥିଲାର ଯେ ସଂଘର୍ଷ ବହୁ କାଳରୁ ଚାଲିଆସିଛି, ତାହା ଏ ଯୁଗରେ ଅତ୍ୟନ୍ତ ଉତ୍କଟ ଆକାର ଧାରଣ କରିଛି । କେବଳ ରାଜନୈତିକ ନୁହେଁ, ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା ପାଇଁ ଆଧୁନିକ ସମାଜରେ ପ୍ରବଳ ଆନ୍ଦୋଳନ ଆରମ୍ଭ ହୋଇଛି । ପ୍ରାଚୀନ ଚଳଣୀ ଏବଂ ଅନୁଷ୍ଠାନ ବିରୁଦ୍ଧରେ ଆଧୁନିକ ମନୁଷ୍ୟ ବିଦ୍ରୋହ ଘୋଷଣା କରେ ଏବଂ ପ୍ରାଚୀନ କଳଙ୍କିତ ଅନୁଷ୍ଠାନର ପ୍ରାଧାନ୍ୟ ସେ ସ୍ୱୀକାର କରେନାହିଁ । ଏଣୁ ଆଧୁନିକ କବିତାରେ ଯୁଗର ଏ ସମସ୍ତ ପ୍ରତିକ୍ରିୟା ପ୍ରତିଫଳନ ହେବା ସ୍ୱାଭାବିକ । ବିଶ୍ୱ ସମାଜ ସହିତ ନିବିଡ଼ ସମ୍ପର୍କ ଫଳରେ ଭାବର ଯେ ଆଦାନ ପ୍ରଦାନ ଚାଲିଛି, ତାହା ଫଳରେ ସାହିତ୍ୟରେ ନିତ୍ୟ ନୂତନ କଥାବସ୍ତୁର ଆମଦାନୀ ହେଉଛି । ଏ ଦେଶର ପାଠକ ସେ ସମସ୍ତ ସହିତ ଅଭ୍ୟସ୍ତ ହେବା ପୂର୍ବରୁ ତାହା ସାହିତ୍ୟରେ ପ୍ରଚାରିତ ହେବାରୁ ପାଠକ ପ୍ରାଣରେ ଆଘାତ ଲାଗିବା ଅଥବା

ପରମ୍ପରାର ବିଚ୍ଛିନ୍ନତାଜନିତ ପ୍ରଶ୍ନର ଉଦୟ ହେବା ସ୍ୱାଭାବିକ । ତେବେ ଆଧୁନିକ କବି ଓ କବିତାର ଆଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ବାରାନ୍ତରେ ତାହାର ସବିଶେଷ ଆଲୋଚନା କରାଯାଇପାରେ । ତେବେ ଏଠାରେ ଏତିକି ସ୍ମରଣ କରାଇବାକୁ ଇଚ୍ଛା ହୁଏ ଯେ, ଆଧୁନିକ କବିତାର ସମସ୍ତ ଗୁଣ ସତ୍ତ୍ୱେ ତାହାକୁ ତଥାକଥିତ ବୁଦ୍ଧିଜୀବୀ-ଦରବାର ପାଇଁ ଉଦ୍ଦିଷ୍ଟ ନରଖି ସମଗ୍ର ସମାଜ ଉଦ୍ଦେଶ୍ୟରେ ପରିବେଷଣ କରିବା ଉଚିତ । ଦୁଃଖର କଥା ଯେ, ଆଧୁନିକ କେତେକ ଶକ୍ତିଶାଳୀ ଲେଖକ ମଧ୍ୟ ସର୍ଜନାସ୍ୱପ୍ନର ଚରିତାର୍ଥତା ପାଇଁ ଏହି ସାମାଜିକ-ଦୀକ୍ଷା ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ।

# ଓଡ଼ିଆ ସାହିତ୍ୟର ଉପନ୍ୟାସ ଓ ଔପନ୍ୟାସିକ

ଗଳ୍ପ ଶୁଣିବାପାଇଁ ସମସ୍ତଙ୍କୁ ଭଲଲାଗେ । ମାତ୍ର କ୍ଷୁଦ୍ରଗଳ୍ପ ଅଥବା କାହାଣୀ ଚଞ୍ଚଳ ସରିଯାଏ । ଆମେ ଚାହୁଁ ଲୋକ ଓ ସମାଜ ଜୀବନ ସମ୍ପର୍କରେ ଅଧିକ ଜାଣିବା-ପାଇଁ । ସେହି କାହାଣୀଗୁଡ଼ିକ ପଢ଼ୁ ପଢ଼ୁ ଅଥବା ଶୁଣୁ ଶୁଣୁ ଆମର ମନରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି ହୁଏ । ବାସ୍ତବିକ ଜୀବନ ସହିତ ଗଳ୍ପ ଓ ଉପନ୍ୟାସର ଅବିଚ୍ଛେଦ୍ୟ ସମ୍ପର୍କ ବିଦ୍ୟମାନ । ଲେଖକ ନିଜର ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ ଅନୁଭୂତି ଅଥବା ଅଧ୍ୟୟନରୁ ସଞ୍ଚିତ ଭାବନାକୁ ରୂପାୟିତ କରେ ଗଳ୍ପ ଅଥବା ଉପନ୍ୟାସ ଆକାରରେ । ଅନୁଭୂତି ଯାହା ହେଉନା କାହିଁକି, ଲେଖକ ନିଜର ସାବଲୀଳ ଭାଷା ଓ ଶୈଳୀ ଜରିଆରେ ଚରିତ୍ର ଏବଂ ଘଟଣାଗୁଡ଼ିକୁ ଅତ୍ୟନ୍ତ ସ୍ୱାଭାବିକ ଭାବରେ ଚିତ୍ରଣ କରିପକାଏ । ତେଣୁ ଉପନ୍ୟାସ ପାଠ କଲାବେଳେ ତାହା ପାଠକର ମନରେ ସତ୍ୟର ପ୍ରତୀତି ଆଣିଥାଏ । ଏଥିପାଇଁ ଜଣେ ବିଦେଶୀ ଆଲୋଚକ ଯଥାର୍ଥରେ କହିଛନ୍ତି—"Believeableness is one test of a good story."

ବାସ୍ତବ ଜୀବନର ଭୂମିକା ଉପରେ ଉପନ୍ୟାସର ସୌଧ ନିର୍ମିତ ହୋଇଥାଏ । ମାତ୍ର ଏଥିରୁ ଏପରି ଅନୁମାନ କରିବା ଉଚିତ ହେବ ନାହିଁ ଯେ ଉପନ୍ୟାସ ହେଉଛି ଜୀବନର ଘଟଣାଗୁଡ଼ିକର କେବଳ ନୀରସ ପ୍ରାଣହୀନ ବର୍ଣ୍ଣନା ମାତ୍ର । ଆମ ଜୀବନରେ ଯେଉଁ ଘଟଣାଗୁଡ଼ିକ ଘଟିଯାଉଛି, ତାହା ଅନ୍ୟମାନଙ୍କ ପକ୍ଷରେ ନଗ୍ନ ସତ୍ୟ । ତେଣୁ ସେଗୁଡ଼ିକର କଳାଧର୍ମୀ-ରୂପାୟନ ପାଇଁ ପ୍ରଚେଷ୍ଟା କୌଣସି ଆବେଗାନୁଭୂତ ସଙ୍ଗୃହ କରିବାକୁ କ୍ଷମ ହେବ ନାହିଁ । ପୁନଶ୍ଚ ଏପରି ଅନେକ ଘଟଣା ଘଟିଯାଏ, ଯାହା ହୁଏତ ଜୀବନରେ ଚଳଚଞ୍ଚଳତା ସୃଷ୍ଟି କରିଥାଇପାରେ, ମାତ୍ର ସେଗୁଡ଼ିକର କଳାଧର୍ମୀ-ରୂପାୟନ ମନୋଜ୍ଞ ଏବଂ ପ୍ରୀତିବର୍ଧକ ହେବ କି ନାହିଁ, ତାହା ନିର୍ଭର କରିଥାଏ ଔପନ୍ୟାସିକର ସାର୍ଥକ କଳ୍ପନାବିଳାସ ଉପରେ । ବାସ୍ତବ ଜୀବନର ଆଭିମୁଖ୍ୟ କେବଳ ଚିତ୍ରଣ କରିବାରେ ଉପନ୍ୟାସର ପରିସର ସୀମିତ ନୁହେଁ । ଉପନ୍ୟାସ ଜୀବନର ଏପରି କେତେକ ଉପାଦାନ ଚିତ୍ରଣ କରେ, ଯାହାକି ବାସ୍ତବ ଅଭିମୁଖୀ ନହେଲେ ମଧ୍ୟ ଗମ୍ଭୀର ବାସ୍ତବତାର ପ୍ରଲେପ ବୋଳିଦିଏ । ତେଣୁ ଉପନ୍ୟାସର ଅର୍ଥ ଆମେରିକାର ବିଶ୍ୱକୋଷରେ ଏହିପରି ବ୍ୟାଖ୍ୟା କରାଯାଇଛି—"Novel means more realistic piece of prose fiction which is written as a serious imitation of reality."

ଶିଳ୍ପ ବିପ୍ଳବ ଏବଂ ଗଣତାନ୍ତ୍ରିକ ଆନ୍ଦୋଳନ ଯୋଗୁ ସମାଜରେ ନୂତନ ଆଲୋଡ଼ନ ସୃଷ୍ଟି ହେଲା । ମଧ୍ୟଯୁଗୀୟ ସାମନ୍ତବାଦୀ ବେଷ୍ଟନରୁ ମୁକ୍ତ ହୋଇ ଆଧୁନିକ ସମାଜ ଯେଉଁଦିନ ଚରିତ୍ର ସ୍ୱାଧୀନତା ଘୋଷଣା କଲା, ସେହିଦିନ ବୋଧହୁଏ ଜନ୍ମଗ୍ରହଣ କଲା ଉପନ୍ୟାସ । ବାସ୍ତବିକ ଉପନ୍ୟାସ ଏକ ଗଣତନ୍ତ୍ର-ଧର୍ମୀ କଳା । ସାହିତ୍ୟ ସଂସାରରେ ଏପରି ଜୀବନଧର୍ମୀ ମାଧ୍ୟମ ଆଉ ଅଛି ବୋଲି ମନେହୁଏ ନାହିଁ । ଉପନ୍ୟାସରେ ଆଜି ଯେଉଁ କାରଣରୁ ମଣିଷ ଓ ସମାଜର କଥା ଯେତେ କୁହାଯାଇ ପାରୁଛି, ସାହିତ୍ୟର ଅନ୍ୟ କୌଣସି ବିଭାଗ ଜରିଆରେ ସେହିପରି ପ୍ରକାଶ ସମ୍ଭବ ନୁହେଁ ।

ଓଡ଼ିଆ ସାହିତ୍ୟରେ ଉପନ୍ୟାସ ଏବଂ ଔପନ୍ୟାସିକ ଯେଉଁ କାରଣରୁ ଏବଂ ଯେଉଁ ସମୟରେ ଆବିର୍ଭୂତ ହୋଇଥିଲେ ଠିକ୍ ସେହି କାରଣରୁ ଭାରତର ଅନ୍ୟ ସାହିତ୍ୟରେ ମଧ୍ୟ ଉପନ୍ୟାସ ଏବଂ ଔପନ୍ୟାସିକମାନଙ୍କର ଅଭ୍ୟୁଦୟ ହୋଇଥିଲା । ଊନବିଂଶ ଶତାବ୍ଦୀରେ ଇଂରେଜୀ ଶିକ୍ଷା ମାଧ୍ୟମରେ ଭାରତରେ ପାଶ୍ଚାତ୍ୟ ଉପନ୍ୟାସ ପ୍ରଚଳିତ ହୋଇଥିଲା ସେତେବେଳେ ଭାରତୀୟ ସାହିତ୍ୟ ଥିଲା, ସମ୍ପୂର୍ଣ୍ଣରୂପେ ରୋମାନ୍ସ-ଧର୍ମୀ । ପାଶ୍ଚାତ୍ୟ ବସ୍ତୁଧର୍ମୀ ଉପନ୍ୟାସଗୁଡ଼ିକର ଆଲୋଚନା ହଠାତ୍ ଯେପରି ଏ ଦେଶର ସର୍ଜନା-ଶିଳ୍ପୀମାନଙ୍କ ମନରେ ଅଭାବନୀୟ ଆଲୋଡ଼ନ ସୃଷ୍ଟି କରିଥିଲା । ତତ୍କାଳୀନ ଇଂରେଜୀ ଶିକ୍ଷା ପ୍ରାପ୍ତ ଭାରତୀୟ ନବୀନ ଯୁବକଗଣ କାବ୍ୟ କବିତାର ନିଗଡ଼ ବନ୍ଧନକୁ ଅସ୍ୱୀକାର କରି ସୃଷ୍ଟି କଲେ ଗଦ୍ୟ ମାଧ୍ୟମରେ ଭାରତୀୟ ଉପନ୍ୟାସ ସାହିତ୍ୟ । ସମକାଳୀନ ଇତିହାସ ଆଲୋଚନାରୁ ଜଣାପଡ଼ୁଛି ଯେ ଭାରତର ଯେଉଁ ଅଂଚଳରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ କୌଣସି କାରଣରୁ ବିଳମ୍ବ ଘଟିଅଛି, ସେଠାରେ ଉପନ୍ୟାସର ଜନ୍ମ ମଧ୍ୟ ସେହି ଅନୁକ୍ରମେ ପଛରେ ପଡ଼ିଅଛି । ଅତୀତର ପ୍ରଭାବରୁ ମୁକ୍ତ ହୋଇ ଉପନ୍ୟାସ ସାଂପ୍ରତିକ ଜୀବନଧାରାକୁ ରୂପାୟିତ କଲା । ଏହି ସଂପର୍କରେ T. W. Clark The novel in India : Its Birth and Development ନାମକ ଏକ ଆଲୋଚନା ପୁସ୍ତକରେ କହିଅଛନ୍ତି--"The development in Bengal illustrates the process which, in one way or another, was paralleled in most of the other languages too Contact with wetern culture and literature had made the literate population more aware of the present and its problems and less interested in the past.

ସମକାଳୀନ ଭାରତୀୟ ସମାଜରେ ଯେଉଁ ନୂତନ ବାବୁ-ଗୋଷ୍ଠୀର ଅଭ୍ୟୁଦୟ ହୋଇଥିଲା, ସେହିମାନଙ୍କୁ କେନ୍ଦ୍ର କରି ପ୍ରଥମ କାଳର ଉପନ୍ୟାସଗୁଡ଼ିକ ରଚିତ ହୋଇଥିଲା । ଅଥବା ଯେଉଁ ଐତିହାସିକ ଉପାଦାନକୁ ସମ୍ବଳ କରି ଉପନ୍ୟାସ ରଚିତ ହେଲା, ତାହାର ଅନ୍ତରାଳରେ ଔପନ୍ୟାସିକର ଏକମାତ୍ର ପ୍ରେରଣା ଥିଲା ଜାତୀୟତାବୋଧ, ରାଜନୀତିକ ଚେତନା ନୁହେଁ । ଆଲୋଚନା ପ୍ରସଙ୍ଗରେ ମରାଠୀ ସାହିତ୍ୟର 'ଯମୁନା'କୁ

ଭାରତୀୟ ସାହିତ୍ୟର ପ୍ରଥମ ଉପନ୍ୟାସ ବୋଲି ସ୍ୱୀକାର କରାଯାଏ । ଏହାର ପ୍ରକାଶ କାଳ ହେଉଛି ୧୮୬୭ । ଏହି ଉପନ୍ୟାସ ପ୍ରକାଶିତ ହେବାର ଠିକ ବର୍ଷକ ପରେ ବଙ୍ଗ ସାହିତ୍ୟର ପ୍ରଥମ ଉପନ୍ୟାସ 'ଆଲଲେର ଘରେଇ ଦୁଲାଲ'' ଆତ୍ମପ୍ରକାଶ କଲା । ତାମିଲ ସାହିତ୍ୟରେ ପ୍ରଥମ ଉପନ୍ୟାସ ୧୮୭୯ରେ ଜନ୍ମଗ୍ରହଣ କରିଥିବା ଜଣାଯାଇଛି । ଅଥଚ ବହୁ ପରେ ୧୮୯୯ ଖ୍ରୀଷ୍ଟାବ୍ଦରେ ଉର୍ଦ୍ଦୁ ସାହିତ୍ୟରେ ସର୍ବପ୍ରଥମ ଉପନ୍ୟାସ ଆବିର୍ଭୂତ ହେଲା । ଏହି ପରିପ୍ରେକ୍ଷିରେ ଓଡ଼ିଆ ସାହିତ୍ୟରେ ଉପନ୍ୟାସର ଜନ୍ମ-ଜାତକ ବିଚାରିବାକୁ ହେବ । ଜନସମାଜରେ, ସ୍ୱାଧୀନ ଚିନ୍ତା, ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ବାସ୍ତବତା-ବୋଧ ପ୍ରଭୃତ ପ୍ରକାଶିତ ହେଲା । ପ୍ରାଚୀନତାର ରକ୍ଷଣଶୀଳ ପରାଧୀନ ଗଣ୍ଡି ମଧ୍ୟରୁ ନିଜକୁ ମୁକ୍ତ କରି ଆଧୁନିକ ମନୁଷ୍ୟ ଏ ଯୁଗର ସାହିତ୍ୟରେ ନିଜକୁ ଖୋଜି ପାଇବାକୁ ବ୍ୟାକୁଳ ହୋଇପଡ଼ିଲା । ଏହି ଅବକାଶରେ ୧୮୭୭-୭୮ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ 'ଉତ୍କଳ ମଧୁପ' ମାସିକ ପତ୍ରିକାରେ ରାମଶଙ୍କର ରାୟ ''ସୌଦାମିନୀ'' ଉପନ୍ୟାସ ଧାରାବାହିକ ପ୍ରକାଶ କରିଥିଲେ । ଗ୍ରାହକ ଅଭାବରୁ 'ଉତ୍କଳ ମଧୁପ' ପତ୍ରିକାର ଅକାଳ ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ଗ୍ରାହକତା ଅଭାବରୁ ଏହି ପ୍ରଥମ ଓଡ଼ିଆ ଉପନ୍ୟାସ ପୂର୍ଣ୍ଣାଙ୍ଗ ପ୍ରାପ୍ତ ନ ହୋଇ ପାରି ଇତିହାସ ଗର୍ଭରେ ଛପିଗଲା । ୧୮୮୫ ସାଲରେ ଶରତଚନ୍ଦ୍ର ମୁଖୋପାଧ୍ୟାୟଙ୍କ ସମ୍ପାଦିତ ''ପ୍ରଦୀପ'' ନାମକ ପତ୍ରିକାରେ ଶ୍ରୀ' ଛଦ୍ମ ନାମରେ କେହି ଜଣେ ଲେଖକ ''ମଠର ସମ୍ବାଦ'' ଓ ''ଅନାଥିନୀ'' ନାମକ ଦୁଇଟି ଉପନ୍ୟାସ ଧାରାବାହିକ ଭାବେ ପ୍ରକାଶ କରୁଥିଲେ । 'ପ୍ରଦୀପ' ପତ୍ରିକାଟିର ଅକାଳ ମୃତ୍ୟୁ ହୋଇଯିବାରୁ ଏହି ଦୁଇଟି ଉପନ୍ୟାସର ଶେଷ ପରିଣତି ଜାଣିବା ସମ୍ଭବ ହେଲା ନାହିଁ । 'ଅନାଥିନୀ' ଉପନ୍ୟାସରେ ନାୟିକା ଥିଲା ସାମାନ୍ୟ ଚଷା ଘରର ଝିଅ । ସେ କାଳରେ ଏକ ଦରିଦ୍ର କୁଟୀର ବାସିନୀ ଝିଅକୁ କେନ୍ଦ୍ର କରି ଉପନ୍ୟାସ ରଚନା କରିବା ଥିଲା ବାସ୍ତବିକ ବିସ୍ମୟକର । ପ୍ରଥମ ଓଡ଼ିଆ ଉପନ୍ୟାସ ଭାବରେ ପରିଚିତ 'ପଦ୍ମମାଳୀ' ୧୮୮୮ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳରୁ ପ୍ରକାଶିତ ହୋଇଥିଲା । ୧୮୮୮ ସାଲ ପୂର୍ବରୁ ଓଡ଼ିଆରେ ଉପନ୍ୟାସ ରଚନାପାଇଁ ଉଦ୍ୟମ ହୋଇଥିଲେହେଁ ଶ୍ରୀ ଉମେଶଚନ୍ଦ୍ର ସରକାରଙ୍କ ଲିଖିତ 'ପଦ୍ମମାଳୀ' ପ୍ରଥମ ଓଡ଼ିଆ ଉପନ୍ୟାସର ସମ୍ମାନ ଦାବୀ କରିଥାଏ । ଓଡ଼ିଆ ସାହିତ୍ୟରେ ଦ୍ୱିତୀୟ ଉପନ୍ୟାସ ହେଉଛି ରାମଶଙ୍କର ରାୟଙ୍କର ବିବାସିନୀ । ଏହା ୧୮୯୨-୯୩ ସାଲରେ ବାରିପଦାରୁ ପ୍ରକାଶିତ 'ଉତ୍କଳ ପ୍ରଭା' ପତ୍ରିକାରେ ନିୟମିତ ପ୍ରକାଶିତ ହୋଇଥିଲା । ପ୍ରଥମ ମୁଦ୍ରିତ ଓଡ଼ିଆ ଉପନ୍ୟାସର ଠିକ୍ ଦଶବର୍ଷ ପରେ ୧୮୯୮ ସାଲରେ ଫକୀର-ମୋହନଙ୍କ ପ୍ରସିଦ୍ଧ ଉପନ୍ୟାସ 'ଛମାଣ ଆଠଗୁଣ୍ଠ' ତତ୍କାଳୀନ ଉତ୍କଳ ସାହିତ୍ୟ ପତ୍ରିକାରେ କ୍ରମଶଃ ପ୍ରକାଶିତ ହେଲା । ମନେହେଲା, ଫକୀରମୋହନ ଇଂରାଜୀ ସାହିତ୍ୟ ଦ୍ୱାରା ପ୍ରଭାବିତ ହେବା ସମ୍ଭବ ନଥିଲା । ସେ କାଳର ପ୍ରାନ୍ତୀୟ ସାହିତ୍ୟରେ ଉପନ୍ୟାସର ଜନ୍ମ କାହାଣୀ ସହିତ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ମାତ୍ର ଲୋକଙ୍କର କଥିତ ଭାଷାରେ ଓଡ଼ିଆ ସମାଜର କାହାଣୀ ଫକୀରମୋହନଙ୍କ ଉପନ୍ୟାସରେ ଯେପରି ସଫଳତାର ସହିତ ରୂପାୟିତ ହେଲା, ତାହା ହୁଏତ ବହୁ କାଳ ପରେ ଅନ୍ୟ

ପ୍ରାନ୍ତର ଉପନ୍ୟାସ ସାହିତ୍ୟରେ ସମ୍ଭବ ହେଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପଡ଼ୋଶୀ ସମ୍ପୃକ୍ତ ବଙ୍ଗ ସାହିତ୍ୟର ପ୍ରଥମ କାଳର ଶ୍ରେଷ୍ଠ ଔପନ୍ୟାସିକଗଣ ବଙ୍କିମଚନ୍ଦ୍ର ଏବଂ ରମେଶଚନ୍ଦ୍ର ପ୍ରଭୃତି ଐତିହାସିକ ଉପନ୍ୟାସ ରଚନାରେ ରତ ଥିଲାବେଳେ ଓଡ଼ିଆ ସାହିତ୍ୟର ସୌଭାଗ୍ୟ ଯେ ତାହାର ପ୍ରାଥମିକ ସ୍ତରରେ ସୁଦ୍ଧା ଆଧୁନିକତମ ସମାଜଧର୍ମୀ ଉପନ୍ୟାସର ପରୀକ୍ଷା ଏବଂ ପ୍ରତିଷ୍ଠା ସମ୍ଭବ ହୋଇପାରିଥିଲା । କେବଳ ସେତିକି ନୁହେଁ, ସମ୍ପୂର୍ଣ୍ଣ ପ୍ରାନ୍ତୀୟ ଭିତ୍ତିରେ କଥାବସ୍ତୁର ପରିବେଷଣ କରି ପରଜା, ଅମୃତ ସନ୍ତାନ, ପଦ୍ମାନଦୀର ମାଝି, 'ଜଳ ଜଙ୍ଗଲ' ପ୍ରଭୃତି ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ ଗୌରବ ଲାଭ କରିଛନ୍ତି, ଓଡ଼ିଆ ଉପନ୍ୟାସର ଆଦ୍ୟ କାଳରେ ଗୋପାଳବଲ୍ଲଭ ଦାସଙ୍କ "ଭୀମା ଭୂୟାଁ" ବିଗତ ୧୯୦୮ ସାଲରେ ସେହି କଥାବସ୍ତୁ ଓ ଆଦର୍ଶର ସୂଚନା ଦେଇ ଭାରତର ଉପନ୍ୟାସ ସାହିତ୍ୟରେ ଉଲ୍ଲେଖଯୋଗ୍ୟ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରସଙ୍ଗକ୍ରମେ ବ୍ୟାସକବି ଫକୀରମୋହନ ଏବଂ ଭକ୍ତକବି ମଧୁସୂଦନଙ୍କ ସମକାଳୀନ ଶ୍ରୀ ଅପର୍ଣ୍ଣା ପଣ୍ଡାଙ୍କ ବିସ୍ମୃତପ୍ରାୟ ଉପନ୍ୟାସ 'କଳାବତୀ'ର ଆଲୋଚନା ଏଠାରେ ଅଧିକ ସଙ୍ଗତ ହେବ । ୧୯୦୨ ସାଲରେ ପାରଳାଖେମଣ୍ଡି ଗଜପତି ପ୍ରେସରେ ଏହା ମୁଦ୍ରିତ ହୋଇଥିଲା । ନିଜେ ଫକୀରମୋହନ ଏହି ଉପନ୍ୟାସଟି ପାଠକରି ସଂଶୋଧନ କରିଥିଲେ ବୋଲି ପୁସ୍ତକର ଭୂମିକାରେ ଉଲ୍ଲେଖ ଅଛି । ଏହି କ୍ଷୁଦ୍ର ଉପନ୍ୟାସରେ ସମଗ୍ର ଭାରତୀୟ ଜୀବନର ଚିତ୍ର ଅତ୍ୟନ୍ତ ସରଳ ଭାବରେ ପ୍ରଦତ୍ତ ହୋଇଅଛି ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରକାଶିତ 'ମୁକୁର' ସାହିତ୍ୟ ପତ୍ରିକା ଆନୁକୂଲ୍ୟରେ 'ମୁକୁର ଉପନ୍ୟାସମାଳା' ପ୍ରକାଶିତ ହେଲା । ଆଧୁନିକ ଓଡ଼ିଆ ଉପନ୍ୟାସର ବିକାଶରେ ଏହା ଥିଲା ଏକ ଉଜ୍ଜ୍ୱଳ ପଦକ୍ଷେପ । ଏହି ଉପନ୍ୟାସମାଳାର ପ୍ରଥମ ଚାରିଜଣ ଲେଖକ ଲେଖିକା ହେଲେ ଶ୍ରୀମତୀ କୁନ୍ତଳାକୁମାରୀ ସାବତ, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଚିନ୍ତାମଣି ମହାନ୍ତି ଏବଂ ଶ୍ରୀ ଦୟାନିଧି ମିଶ୍ର । ଏମାନଙ୍କ ପ୍ରକାଶିତ ଉପନ୍ୟାସଗୁଡ଼ିକ ହେଲା ପରଶମଣି, ଭୁଲଫକୀର, ସଫଳ ସ୍ୱପ୍ନ ଓ ମାନଭଞ୍ଜନ । ଏମାନଙ୍କ ମଧ୍ୟରେ ଶ୍ରୀମତୀ କୁନ୍ତଳାକୁମାରୀ କେତେଗୋଟି ସାର୍ଥକ ଉପନ୍ୟାସ ସୃଷ୍ଟି କରି ପ୍ରତିଷ୍ଠା ଅର୍ଜନ କରି ଯାଇଅଛନ୍ତି । ମୁକୁର ସାହିତ୍ୟ ପତ୍ରିକା ଓଡ଼ିଆ ଉପନ୍ୟାସ ସୃଷ୍ଟିପାଇଁ ପ୍ରଥମେ ବ୍ୟଗ୍ରତା ପ୍ରକାଶ କରିଥିଲେ । ଏହି ପତ୍ରିକାରେ ଦୟାନିଧି ମିଶ୍ରଙ୍କ ଐତିହାସିକ ଉପନ୍ୟାସ 'ରାଣା ପ୍ରତାପ', ଚୌଧୁରୀ ଜାନକୀନାଥ ରାଉତରାୟ ମହାପାତ୍ରଙ୍କ ଉପନ୍ୟାସ ଆକାରରେ ଲିଖିତ 'ସୀତା ବନବାସ' ପ୍ରକାଶିତ ହୋଇଥିଲା । ସମକାଳୀନ ଉତ୍କଳ ସାହିତ୍ୟ ମଧ୍ୟ ନନ୍ଦକିଶୋରକୁମାର ଶର୍ମାଙ୍କ 'ଅନାଥ', ସନାତନ ମହାନ୍ତିଙ୍କ ନୈବେଦ୍ୟ ଉପନ୍ୟାସ ପ୍ରକାଶ କଲେ ।

ପ୍ରକୃତ ପକ୍ଷେ ୧୯୨୫ ସାଲ ପରେ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ଆନ୍ଦୋଳନ ଆରମ୍ଭ ହେଲା । ତତ୍କାଳୀନ କେତେକ ତରୁଣ ସାହିତ୍ୟସେବୀଙ୍କ ପ୍ରତିଷ୍ଠିତ ସବୁଜ ସାହିତ୍ୟ ସମିତି ଓଡ଼ିଆ ଉପନ୍ୟାସର ବିକାଶରେ ଅଗ୍ରଣୀ ହୋଇଥିଲେ ୧୯୨୪-୨୬

ସାଲ ମଧ୍ୟରେ ଉତ୍କଳ ସାହିତ୍ୟ ପତ୍ରରେ ସବୁଜ ସାହିତ୍ୟ ସମିତିର ନଅଜଣ ଲେଖକ ଲେଖିକାଙ୍କ ଦ୍ୱାରା ଲିଖିତ 'ବାସନ୍ତୀ' ଉପନ୍ୟାସ ପ୍ରକାଶିତ ହୋଇଥିଲା । 'ବାସନ୍ତୀ'ର ଅନ୍ୟତମ ଲେଖକ ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ପରେ ମାଟିର ମଣିଷ ରଚନା କରି ଓଡ଼ିଆ ଉପନ୍ୟାସର ଗତି ଧାରାରେ ଏକ ବୈପ୍ଳବିକ ପରିବର୍ତ୍ତନ ଆନୟନ କଲେ । ଗାନ୍ଧୀଯୁଗ ଏବଂ ଋଷ ବିପ୍ଳବ ପ୍ରଭାବିତ ଉତ୍କଳୀୟ ସମାଜର ତାହା ଥିଲା ଏକ ଉଜ୍ଜ୍ୱଳ ପରିପ୍ରକାଶ ।

'ମୁକୁର' ଏବଂ ଉତ୍କଳ ସାହିତ୍ୟ ପରି 'ସହକାର' ପତ୍ରିକା ମଧ୍ୟ ଓଡ଼ିଆ ଉପନ୍ୟାସ ସାହିତ୍ୟର ବିକାଶରେ ଯଥେଷ୍ଟ ପ୍ରେରଣା ପ୍ରଦାନ କରିଅଛନ୍ତି । ଏହି ଅନୁଷ୍ଠାନର ଆନୁକୂଲ୍ୟରେ ଓଡ଼ିଆ ସାହିତ୍ୟରେ ଆନନ୍ଦ ଲହରୀ ଉପନ୍ୟାସମାଳାର ସୃଷ୍ଟି । ୧୯୧୯ ସାଲର ଏହି ଉପନ୍ୟାସଗୁଡ଼ିକ 'ଭାରତୀ' ପତ୍ରିକା ଶିରୋନାମାରେ ପ୍ରକାଶିତ ହେଉଥିଲା । ଏହି ପତ୍ରିକାର ବର୍ଷାଧିକ କାଳ ପ୍ରକାଶ ମଧ୍ୟରେ ଗୋବିନ୍ଦ ତ୍ରିପାଠୀଙ୍କର 'ପତିତାର ଆତ୍ମକଥା', କାଳିନ୍ଦୀଚରଣଙ୍କ 'ମାଟିର ମଣିଷ', ଚନ୍ଦ୍ରମଣି ମିଶ୍ରଙ୍କ 'ଜଗୁଆଣ୍ଟା' ଓ 'ବିବାହ ରହସ୍ୟ', ଗୋଦାବରୀଶ ମହାପାତ୍ରଙ୍କ, 'ପ୍ରେମ ପଥେ', 'ଯୌବନ ଯାତ୍ରୀ', ଛଦ୍ମନାମା ଲେଖକଙ୍କ 'ବୀରଯୁବକ', 'ବନ୍ଦୀର ମାୟା', ହରିଶ୍ଚନ୍ଦ୍ର ବଡ଼ାଲଙ୍କ 'ଚିଠିର ଜବାବ' ହରେକୃଷ୍ଣ ମହତାବଙ୍କ 'ନୂତନ ଧର୍ମ', କାହ୍ନୁଚରଣ ମହାନ୍ତିଙ୍କ 'ନଷ୍ଟଦ୍ଧି' ପ୍ରଭୃତି ପ୍ରକାଶିତ ହୋଇଥିଲା । ଆଧୁନିକ ଯୁଗର ଅନେକ ପ୍ରତିଷ୍ଠିତ ଔପନ୍ୟାସିକ ଏହି ଆନନ୍ଦ ଲହରୀ ଉପନ୍ୟାସ ମାଳାର ସହଯୋଗୀ ଲେଖକ ଥିଲେ ।

ପ୍ରକୃତ ପକ୍ଷେ ଆନନ୍ଦ ଲହରୀ ଉପନ୍ୟାସମାଳା ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ବୈପ୍ଳବିକ ପରିବର୍ତ୍ତନ ଆନୟନ କଲା । ଗୋଦାବରୀଶ ମିଶ୍ର, ଲକ୍ଷ୍ମୀଧର ନାୟକ, କମଳାକାନ୍ତ ଦାସ, ରାମପ୍ରସାଦ ସିଂ, ଚକ୍ରଧର ମହାପାତ୍ର, ରାମଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀଧର ମହାପାତ୍ର, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଚନ୍ଦ୍ରମଣି ଦାସ, ଜଗବନ୍ଧୁ ମହାପାତ୍ର, ଅନନ୍ତପ୍ରସାଦ ପଣ୍ଡା, ବଟକୃଷ୍ଣ ପ୍ରହରାଜ, ତାରିଣୀଚରଣ ପ୍ରଭୃତି ଲେଖନୀ ଚାଳନା କରି ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧ କଲେ । ଅନୁବାଦ ଏବଂ ମୌଳିକ ରଚନାରେ ଓଡ଼ିଆ ଉପନ୍ୟାସର କ୍ଷେତ୍ର ବିସ୍ତାରିତ ହେଲା । ପଣ୍ଡିତ ଗୋଦାବରୀଶ ମିଶ୍ର ଏକାଧିକ ଉପନ୍ୟାସ ପାଶ୍ଚାତ୍ୟ ଉପନ୍ୟାସ ଅବଲମ୍ବନରେ ରଚନା କରିଥିଲେ ହେଁ ପ୍ରତ୍ୟେକଟିର କଥାବସ୍ତୁ ଭାରତୀୟ ପାଣିପାଗ ଅନୁସାରେ ପ୍ରସ୍ତୁତ ହୋଇଥିଲା । ଉଦାହରଣ ସ୍ୱରୂପ ଦାସତ୍ୱ ମୋଚନ, ୮୧୭, ଅଭାଗିନୀ, ଘଣ୍ଟାନ୍ତର ପ୍ରଭୃତି ଯଥାକ୍ରମେ Up from Slavery, A Tale of two cities. ଲା ମିଜରେବଲ, ଡକ୍ଟର ଜେକିଲ ଆଣ୍ଡ ମିଷ୍ଟର ହାଇଡ଼, ପ୍ରଭୃତି ପୁସ୍ତକର ଅବଲମ୍ବନ ମାତ୍ର । ସେହିପରି ଗୋଦାବରୀଶ ମହାପାତ୍ରଙ୍କର 'ରକ୍ତପାତ' ମେରୀ କରିଲିଙ୍କର 'ଭେଣ୍ଡେଟା' ପୁସ୍ତକର କଥାବସ୍ତୁ ଅନୁସାରେ ଏବଂ ଶ୍ରୀଧର ମହାପାତ୍ରଙ୍କ 'ରକ୍ତ ଗୋଲାପ' Prisoner of Zenda ଅବଲମ୍ବନରେ ରଚିତ ହୋଇଥିବା

ଜଣାଯାଏ । ଆଧୁନିକ ଓଡ଼ିଆ ଅନୁବାଦ ସାହିତ୍ୟରେ ଉଦୟନାଥ ଷଡ଼ଙ୍ଗୀ, ଗୋଲକବିହାରୀ ଧଳ, ଅନନ୍ତ ପଟ୍ଟନାୟକ, ଜ୍ଞାନୀନ୍ଦ୍ର ବର୍ମା, ଧନେଶ୍ୱର ମହାପାତ୍ର, ଗୋବିନ୍ଦ ମିଶ୍ର, ଲାଲ ନଗେନ୍ଦ୍ରକୁମାର, ପ୍ରଫୁଲ୍ଲଚନ୍ଦ୍ର ଦାସ, ରବୀନ୍ଦ୍ରନାଥ ସିଂ, ବଟକୃଷ୍ଣ ପଟ୍ଟନାୟକ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏମାନଙ୍କର ଆହରଣର କ୍ଷେତ୍ର ଆଜି ଅତ୍ୟନ୍ତ ବ୍ୟାପକ ଏବଂ ହିନ୍ଦୀ, ବଙ୍ଗଳା, ରୁଷ ଏବଂ ଇଉରୋପୀୟ ସାହିତ୍ୟ ମଧ୍ୟରେ ବିସ୍ତାରିତ ।

ଦ୍ୱିତୀୟ ମହାଯୁଦ୍ଧର ପରବର୍ତ୍ତୀ ପ୍ରତିକ୍ରିୟା ଏବଂ ସ୍ୱାଧୀନୋତ୍ତର ସାମାଜିକ ଜୀବନର ଆତ୍ମମୁଖ୍ୟ ଓଡ଼ିଆ ଉପନ୍ୟାସ ସାହିତ୍ୟର ଗତି ଧାରାରେ ମୌଳିକ ପରିବର୍ତ୍ତନ ଆନୟନ କରିଅଛି ଫକୀରମୋହନଙ୍କ ନୀତିବୋଧ ଏବଂ ସାମାଜିକ ଚେତନଶୀଳତା ଆଉ ପ୍ରଭାବଶାଳୀ ମନେ ହେଲା ନାହିଁ । ଯୁଦ୍ଧ କାଳରେ ଭାରତୀୟ ସମାଜରେ ଏପରି ଅନେକ ଆଲୋଡ଼ନ ସୃଷ୍ଟି ହେଲା ଯାହା ଯୋଗୁଁ ଗୋପୀନାଥ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର ଏବଂ ରାଜକିଶୋର ପଟ୍ଟନାୟକ ସେମାନଙ୍କ ଉପନ୍ୟାସରେ କେତେକ ନୂତନ ପରୀକ୍ଷା ଚଳାଇଲେ । ଏମାନଙ୍କର ବିଷୟ ନିର୍ବାଚନ, ଚରିତ୍ରର ଅନୁଶୀଳନ ଏବଂ ଦୃଷ୍ଟିଭଙ୍ଗୀର ଆଦର୍ଶ ଥିଲା ଅତୀତଠାରୁ ସ୍ୱତନ୍ତ୍ର ଓ ଅଭିନବ । ସାମାଜିକ ବିଧିନିର୍ଦ୍ଦେଶର ଅନୁବର୍ତ୍ତୀ ପ୍ରେମାନୁଭୂତି ଅଥବା ପ୍ରତିକ୍ରିୟା ଯାହାକି ଫକୀରମୋହନଙ୍କ ଠାରୁ କାଳନ୍ଦୀଚରଣଙ୍କ ବାଟେ କାହ୍ନୁଚରଣଙ୍କ ପର୍ଯ୍ୟନ୍ତ ଲମ୍ବି ଆସିଥିଲା, ତାହା ଯେପରିକି ଧକ୍କା ଖାଇ ଫେରିଗଲା, ଗୋପୀନାଥଙ୍କ 'ହରିଜନ', 'ଲୟ ବିଲୟ', ରାଜକିଶୋରଙ୍କ 'ଚଲାବାଟ', ଗୋବିନ୍ଦଚନ୍ଦ୍ର ଦାସଙ୍କ 'ଅମାବାସ୍ୟାର ଚନ୍ଦ୍ର', ଶାନ୍ତନୁ ଆଚାର୍ଯ୍ୟଙ୍କ 'ନରକିନ୍ନର' କିମ୍ବା ସୁରେନ୍ଦ୍ର ମହାନ୍ତିଙ୍କ "ଅନ୍ଧଦିଗନ୍ତ" ସାହାଯ୍ୟରେ ।

ଅଭିଯୋଗ ହେବାର ଶୁଣାଯାଏ ଯେ ଓଡ଼ିଆ ଉପନ୍ୟାସ ବୈଚିତ୍ର୍ୟହୀନ । ଗତାନୁଗତିକ ପ୍ରେମ, ବିରହ ଏବଂ କେତେକ ସାମାଜିକ ଓ ଅର୍ଥନୈତିକ ସଂଘର୍ଷ ପରି ଚିରାଚରିତ କଥାବସ୍ତୁ ତାହାର ପ୍ରଧାନ ଆଧାର । ଅନେକ ପରିମାଣରେ ଏହି ଅପ୍ରିୟ ସତ୍ୟ କଥାଟି ଏବେ ସୁଦ୍ଧା ପାଠକ ପ୍ରାଣରେ ଆଘାତ ସୃଷ୍ଟି କରିଥାଏ । କାହ୍ନୁଚରଣଙ୍କ 'ଝଞ୍ଜା', ତମସାତୀରେ, ଗୋପୀନାଥଙ୍କ 'ମାଟିମଟାଳ', ଜମେଶ୍ୱର ମିଶ୍ରଙ୍କ 'ଖମାରୀ', ଶାନ୍ତନୁ ଆଚାର୍ଯ୍ୟଙ୍କ 'ନରକିନ୍ନର' କିମ୍ବା ରାଜକିଶୋର ପଟ୍ଟନାୟକଙ୍କ 'ଚଲାବାଟ'ରେ ଏହାର ବ୍ୟତିକ୍ରମ ନିଶ୍ଚୟ ଅଛି । ଆଜି ଅନେକ ଆଧୁନିକ ଉପନ୍ୟାସ ଅତ୍ୟନ୍ତ ନିର୍ମମ ଭାବରେ ନିର୍ଭୀକ ହୋଇ ପାରିଛନ୍ତି । ମାତ୍ର ଯୁଗସଙ୍କେତର ସାର୍ଥକ କଳାଗତ ଆବାହନୀ ସଙ୍ଗେ ସଙ୍ଗେ ଅଭିଜାତକୁଶଳୀ ଏବଂ ଭଦ୍ର ହୋଇ ପାରିଲେ ଓଡ଼ିଆ ଉପନ୍ୟାସର ଭବିଷ୍ୟତ ନିଶ୍ଚୟ ଉଜ୍ଜ୍ୱଳ ।

# ଓଡ଼ିଆ ନିବନ୍ଧ ସାହିତ୍ୟର ପ୍ରବୃତ୍ତି

ସାହିତ୍ୟର ବିକାଶଧାରାରେ ଗଦ୍ୟ ହେଉଛି ଅତ୍ୟନ୍ତ ଆଧୁନିକ ସୃଷ୍ଟି । ଆଧୁନିକ ଯୁଗ ଭାବଧାରାର ପ୍ରକୃଷ୍ଟ ମାଧ୍ୟମ ହେଉଛି ଗଦ୍ୟ । ପ୍ରାଚୀନ ଯୁଗର ସାହିତ୍ୟ ସର୍ବୋତ-ଭାବରେ ଥିଲା ପଦ୍ୟମୟ । ସେ ଯୁଗରେ ଭାବପ୍ରବଣତା ଓ କଳ୍ପନାବିଳାସିତା ବ୍ୟକ୍ତି ତଥା ସାମାଜିକ ଜୀବନରେ ଅଧିକ ଅନୁଭୂତ ହେଉଥିଲା ଭାବାବେଗ ଓ ସ୍ୱପ୍ନପ୍ରବଣ ଚିନ୍ତାଧାରାର ରୂପାୟନ ପାଇଁ ପଦ୍ୟ ହେଉଛି ଅତ୍ୟନ୍ତ ସ୍ୱାଭାବିକ ମାଧ୍ୟମ । ତେଣୁ ସେ କାଳର ସାହିତ୍ୟ ପଦ୍ୟାତ୍ମିକା ହେବା ସ୍ୱାଭାବିକ । ମାତ୍ର ଆଧୁନିକ ଯୁଗରେ ନାନା କାରଣରୁ ଏ ପ୍ରବଣତା ସଙ୍କୁଚିତ ହୋଇ ପଡ଼ୁଅଛି । ସାମାଜିକ ଜୀବନରେ ବସ୍ତୁବାଦୀ ଚିନ୍ତାଧାରା ଓ ଆଦର୍ଶ ଅଧିକ ଅନୁଭୂତ ହୁଏ; ତେଣୁ ନଗ୍ନ ବାସ୍ତବ ଏବଂ ସମସ୍ୟାସଙ୍କୁଳ ସଂଘର୍ଷ-ବିଜଡ଼ିତ ଜୀବନର ପ୍ରକାଶ ପାଇଁ ସାହିତ୍ୟ ଗଦ୍ୟାଶ୍ରୟୀ ହେବା ଅତ୍ୟନ୍ତ ଆବଶ୍ୟକ । ଗଦ୍ୟର୍ ସମ୍ବନ୍ଧ ହେଉଛି ମସ୍ତିଷ୍କ ସହିତ । ମାତ୍ର ପଦ୍ୟ ହେଉଛି ହୃଦୟର ଉତ୍କୃଷ୍ଟ ଉଚ୍ଛ୍ୱାସ । ଏ ଯାନ୍ତ୍ରିକ ଯୁଗରେ ମନୁଷ୍ୟ ଅଧିକ ପରିମାଣରେ ଆତ୍ମସଚେତନ ଏବଂ ବ୍ୟକ୍ତିତ୍ୱବାଦୀ ମାନବର ଏହି ବ୍ୟକ୍ତିତ୍ୱ-ପ୍ରବଣ ଆଭିମୁଖ୍ୟର ସାର୍ଥକ ପ୍ରକାଶ ପାଇଁ ଗଦ୍ୟଶୈଳୀ ଅତ୍ୟନ୍ତ ଉପଯୋଗୀ ।

ଆଧୁନିକ ଅର୍ଥରେ ଗଦ୍ୟର ଜନ୍ମ ହୁଏ ମୁଦ୍ରାଯନ୍ତ୍ରର ଅଭ୍ୟୁଦୟ ପରେ । ତେଣୁ ଆଧୁନିକ ଯୁଗରେ ଓଡ଼ିଆ ଗଦ୍ୟ ମଧ୍ୟ ସେହି ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ପରେ ଜନ୍ମଲାଭ କରିଅଛି କହିଲେ ଚଳେ । ସମ୍ବାଦପତ୍ର ଓ ଗଦ୍ୟ ସାହିତ୍ୟ-ପତ୍ରିକାର ପ୍ରସାର ସଙ୍ଗେ ସଙ୍ଗେ ସାହିତ୍ୟର ମଧ୍ୟ ବିକାଶ ହେଲା । ସାମ୍ବାଦିକତାର ଲକ୍ଷ୍ୟ ସମାଜଚେତନା ଜାଗ୍ରତ କରିବା । ତେଣୁ ସମ୍ବାଦପତ୍ରରେ ପ୍ରକାଶିତ ଗଦ୍ୟଲେଖା ଅତ୍ୟନ୍ତ ସହଜ ଓ ହାଲୁକା ହେବା ସ୍ୱାଭାବିକ । ପ୍ରଥମ କାଳର ଗଦ୍ୟ ରଚନାଗୁଡ଼ିକ ଯେଉଁ ନାମରେ ନାମିତ ହୁଅନ୍ତୁ ନା କାହିଁକି ତାହା ଅତ୍ୟନ୍ତ ସହଜ, ସମ୍ବାଦ-ଗ୍ରାହୀ ଏବଂ ହାଲୁକା ହେବାରେ ନୂତନତ୍ୱ କିଛି ନାହିଁ ।

**ଗଦ୍ୟର ପ୍ରକୃଷ୍ଟ ରୂପ—ନିବନ୍ଧ :—**

ଗଦ୍ୟର ଜନ୍ମ ପାଇଁ ସାମ୍ବାଦିକତା ମୁଖ୍ୟତଃ ଦାୟୀ ହୋଇଥିବାରୁ ପ୍ରାଥମିକ ସ୍ତରରେ ନିବନ୍ଧ ଅଥବା essay ସମ୍ପର୍କରେ ଆଲୋଚକମାନଙ୍କର ଉନ୍ନତ ଧାରଣା ନ ଥିଲା । ବିଖ୍ୟାତ ଇଂରାଜୀ ଲେଖକ ଜନ୍‌ସନ୍ 'ଏସେ' ଅଥବା ପ୍ରବନ୍ଧକୁ "ହିଗୁଳା

ମନର ଅଭିବ୍ୟକ୍ତି" କିମ୍ବା "ମୁଡ଼" "ପୂର୍ଣ୍ଣତାର ଅଭାବ" ବୋଲି ମତ ପ୍ରକାଶ କରନ୍ତି ସେମାନଙ୍କ ମତରେ ପ୍ରବନ୍ଧ ରଚନାରେ ଗୁରୁତ୍ୱପୂର୍ଣ୍ଣ ଅଥବା ଗାମ୍ଭୀର୍ଯ୍ୟ ଭାବନାର ଅଭିବ୍ୟକ୍ତି ସମ୍ଭବ ନୁହେଁ । ଅବଶ୍ୟ ପରକାଳରେ ବେକନ୍, ହିଉମ୍, ମାକଲେ, କାର୍ଲାଇଲ ପ୍ରଭୃତି ଏ ମତବାଦର ଖଣ୍ଡନ କରିଛନ୍ତି ନିଜ ନିଜର ସରସ ତଥା ସୁଚିନ୍ତିତ ରଚନା କରିଆରେ । ଇଂରାଜୀ "ଏସେ" ଶବ୍ଦ ଓଡ଼ିଆରେ 'ପ୍ରବନ୍ଧ', 'ନିବନ୍ଧ', 'ସନ୍ଦର୍ଭ' ଇତ୍ୟାଦି କେତେଗୁଡ଼ିଏ ଶବ୍ଦ ଦ୍ୱାରା ବୁଝାଯାଇଥାଏ । ମାତ୍ର ସୂକ୍ଷ୍ମ ବିଶ୍ଳେଷଣ କଲେ ଏମାନଙ୍କର ରଚନା-ଧର୍ମ ଓ ବିଷୟ-ବିନ୍ୟାସରେ କେତେକ ମୌଳିକ ପାର୍ଥକ୍ୟ ଜଣାପଡ଼େ ।

ନିବନ୍ଧ ସମ୍ପର୍କରେ ହିନ୍ଦୀ ସାହିତ୍ୟର ବିଖ୍ୟାତ ଲେଖକ ଆଚାର୍ଯ୍ୟ ଶୁକ୍ଳ କହିଛନ୍ତି— "ଯଦି ଗଦ୍ୟ କବିୟୋଁ ୟା ଲେଖକୋଁ କୀ କସୌଟୀ ହୈ, ତୋ ନିବନ୍ଧ ଗଦ୍ୟକୀ କସୌଟୀ ହୈ । ଭାଷାକୀ ପୂର୍ଣ୍ଣ ଶକ୍ତିକା ବିକାଶ ନିବନ୍ଧୋଁ ମେଁ ହି ସବ୍‌ସେ ଅଧିକ୍ ସମ୍ଭବ ହୋତା ହୈ ।" ଏଥିରୁ ପ୍ରତିପନ୍ନ ହେଉଛି ଯେ ଗଦ୍ୟର ପୂର୍ଣ୍ଣ ବିକଶିତ ଓ ଶକ୍ତିଶାଳୀ ରୂପ ନିବନ୍ଧ ମାଧ୍ୟମରେହିଁ ଆତ୍ମପ୍ରକାଶ କରେ । ଭାଷାର ଉତ୍କୃଷ୍ଟ ବନ୍ଧନ କେବଳ ନୁହେଁ, ବିଷୟବସ୍ତୁ ଓ ଭାବନାର ପୁଷ୍କଳ ବିସ୍ତୃର ମଧ୍ୟ ନିବନ୍ଧ ଜରିଆରେ ପ୍ରକାଶ ଲାଭ କରେ । ସେଥିପାଇଁ ଆଧୁନିକ ଯୁଗରେ ନିବନ୍ଧ ସାହିତ୍ୟର ଆଦର ଅତ୍ୟନ୍ତ ଅଧିକ । ଆଧୁନିକ ଯୁଗ ଅହଂବାଦୀ ହୋଇଥିବାରୁ ଏ ଯୁଗର ଲେଖକ ନିଜର ବ୍ୟକ୍ତିତ୍ୱ ପ୍ରକାଶ ପାଇଁ ସାହିତ୍ୟ ସଂସାରରେ ଅତ୍ୟନ୍ତ ଆଧୁନିକତମ ନିବନ୍ଧର ଆଶ୍ରୟ ଲୋଡ଼ିଥାଏ । ସେଥିପାଇଁ ନିବନ୍ଧ ଅତ୍ୟନ୍ତ ବ୍ୟକ୍ତିନିଷ୍ଠ । କେବଳ ପାଣ୍ଡିତ୍ୟ ପ୍ରଦର୍ଶନ ବା ଜ୍ଞାନର ଅହଂ ପ୍ରକଟନ 'ଏସେ'ର ଲକ୍ଷ୍ୟ ନୁହେଁ । ଭାବୁକତା, ଅଭିଜ୍ଞତା ଏବଂ ଅନୁଶୀଳନର ବିଚିତ୍ରତା ମଧ୍ୟରେ ଲେଖକର ସ୍ୱକୀୟ ରୂପ ରଖିବାପାଇଁ ନିବନ୍ଧର ଯୋଜନା । ତେଣୁ ସାଧାରଣ ପ୍ରବନ୍ଧଠାରୁ 'ନିବନ୍ଧ'ର ପରିକଳ୍ପନା ଏବଂ ପରିବେଷଣ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ମୌଳିକ ମଧ୍ୟ ।

## ନିବନ୍ଧ ସାହିତ୍ୟର ସ୍ୱରୂପ—

ଓଡ଼ିଆ ସାହିତ୍ୟରେ ଏହି ପ୍ରକାର ରଚନାର ବୟସ ବେଶୀ ଦିନର ନୁହେଁ । କାରଣ ପତ୍ରପତ୍ରିକାର ଜନ୍ମ ସଙ୍ଗେ ସଙ୍ଗେ ପ୍ରବନ୍ଧ ରଚନା ପ୍ରତି ସମଧିକ ଦୃଷ୍ଟି ଦିଆଯାଇଥିଲା । ଏହି ବିଚାରରେ ନିବନ୍ଧ ସାହିତ୍ୟ ଯେ ଆହୁରି ଅର୍ବାଚୀନ ହେବ, ଏଥିରେ ସନ୍ଦେହ ନାହିଁ । ତେବେ ଓଡ଼ିଆରେ ପ୍ରବନ୍ଧ ଓ ନିବନ୍ଧ ମଧ୍ୟରେ ଏକ ପ୍ରାଞ୍ଜଳ ସୀମାରେଖା ଟାଣିବା ସହଜ ନୁହେଁ । ଅବଶ୍ୟ କେତେକ ଆଲୋଚକ 'ନିବନ୍ଧ'ର ଯେପରି ବିଶ୍ଳେଷଣ କରିଛନ୍ତି, ସେହି ଦୃଷ୍ଟିରେ ଗୋବିନ୍ଦ ତ୍ରିପାଠୀଙ୍କ 'ବନ୍ଦୁଆ' ଭଳି ରଚନାକୁ ଖାଣ୍ଟି ନିବନ୍ଧ ଶ୍ରେଣୀରେ ଗ୍ରହଣ କରାଯାଇପାରେ । କାରଣ ଏଥିରେ ଏକ ସାଧାରଣ କଥାବସ୍ତୁର ଅବଲମ୍ବନରେ ଅସାଧାରଣ ଅନୁଚିନ୍ତାର ପରିଚୟ ଦିଆଯାଇଛି । ସହଜ ଓ ସ୍ୱାଭାବିକ ବ୍ୟଙ୍ଗ ଶୈଳୀରେ ବିଷୟର ପରିବେଷଣ ହେବା ଦ୍ୱାରା ତାହା ହୃଦ୍ୟ ହେବା ସଙ୍ଗେ ସଙ୍ଗେ ପାଠକ ରଚନାର ଛନ୍ଦେ ଛନ୍ଦେ ଲେଖକର ବ୍ୟକ୍ତିତ୍ୱକୁ ଅନୁଭବ କରିବାକୁ

ସୁଯୋଗ ଲଭ କରେ । ଏହି ଶ୍ରେଣୀର ରଚନାରେ ପାଣ୍ଡିତ୍ୟର ଅଧିମିକା ନାହିଁ, ଅଛି ଲେଖକର ମୌଳିକ ବିଗ୍ଭର ଓ ଅପୂର୍ବ ଦୃଷ୍ଟିଭଙ୍ଗୀ । ତେବେ ନିବନ୍ଧ ଓ ପ୍ରବନ୍ଧର କୌଣସି ନିର୍ଦ୍ଦିଷ୍ଟ ସୀମାରେଖା ଟାଣିବା ସମ୍ଭବ ହେଉ ନ ଥିବାରୁ ଏଠାରେ ମୋଟାମୋଟି ପ୍ରବନ୍ଧ ସାହିତ୍ୟର ପ୍ରବୃତ୍ତିହିଁ ବିଗ୍ଭର କରିବାକୁ ପଡ଼ିବ ।

**ପ୍ରବନ୍ଧ ରଚନାର ପ୍ରକାର ଭେଦ—**

ଯୋସେଫ୍ ଟି ସିପ୍‌ଲେଙ୍କ ସମ୍ପାଦିତ Dictionary of World Literature ପୁସ୍ତକରେ ପ୍ରବନ୍ଧର ଆଠ ପ୍ରକାର ଶ୍ରେଣୀ ବିଭାଗ କରାଯାଇଛି । ଯଥା—(୧) ସାଧାରଣ ରଚନା (୨) ଜୀବନୀମୂଳକ ରଚନା (୩) ସମ୍ପାଦକୀୟ (୪) ପୁସ୍ତକ ସମାଲୋଚନା (୫) ଚରିତ୍ରମୂଳକ ରଚନା (୬) ଭାବନାଧର୍ମୀ ରଚନା (୭) ବ୍ୟକ୍ତିଗତ ରଚନା (୮) ନିର୍ଦ୍ଦିଷ୍ଟ ବିଷୟକ ରଚନା । ସେହିପରି ହେନେରି କୁଲ୍ ହିଲ୍‌ଓ୍ୱେ ତାଙ୍କ ସମ୍ପାଦିତ The world's essential knowledgeର ୪ର୍ଥ ଖଣ୍ଡରେ ପ୍ରବନ୍ଧକୁ ଦଶଟି ଭାଗରେ ବିଭକ୍ତ କରିଛନ୍ତି । ତାହା ହେଉଛି—(୧) ଦାର୍ଶନିକ ରଚନା, (୨) ରାଜନୈତିକ ରଚନା, (୩) ଘରୋଇ ରଚନା, (୪) ଚରିତ୍ର-ମୂଳକ ରଚନା, (୫) ସାମୟିକ ଲେଖା, (୬) ବ୍ୟକ୍ତିଗତ ଲେଖା, (୭) ଚିନ୍ତାତ୍ମକ ରଚନା, (୮) ବ୍ୟଙ୍ଗାତ୍ମକ ରଚନା, (୯) ଦ୍ୱନ୍ଦ୍ୱାତ୍ମକ ରଚନା, (୧୦) ସମାଲୋଚନାମୂଳକ ରଚନା ।

ମୋଟ ଉପରେ ପ୍ରବନ୍ଧ ସାମାଜିକ, ରାଜନୈତିକ, ବିବରଣାତ୍ମକ, ଚିନ୍ତାମୂଳକ, ବର୍ଣ୍ଣନାତ୍ମକ ଅଥବା ଭାବପ୍ରବଣାତ୍ମକ ଅଥବା ବିଶ୍ଳେଷଣାତ୍ମକ ହୋଇପାରେ । ଆଲୋଚନାର ସୁବିଧା ପାଇଁ ଏହାକୁ ସ୍ଥୂଳତଃ ଦୁଇ ଭାଗରେ ବିଭକ୍ତ କରିବା ସମୀଚୀନ ହେବ । ଯଥା—(୧) ବସ୍ତୁନିଷ୍ଠ ପ୍ରବନ୍ଧ (୨) ବ୍ୟକ୍ତିନିଷ୍ଠ ପ୍ରବନ୍ଧ ।

ଅଧିକାଂଶ ପ୍ରବନ୍ଧ ସାଧାରଣତଃ ବସ୍ତୁନିଷ୍ଠ । ତହିଁରେ ଆଲୋଚକର ବହୁପାଠିତା, ପାଣ୍ଡିତ୍ୟ ଏବଂ ବିଗ୍ଭର ଧାରାର ଅଧିମିକା ଦୃଷ୍ଟିଗୋଚର ହୁଏ । ସେଭଳି ରଚନା ସର୍ବଦା ବୌଦ୍ଧିକତାର ସ୍ପର୍ଶ ନେଇ ପାଠକର ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିପାରେ । ମାତ୍ର ବ୍ୟକ୍ତିନିଷ୍ଠ ରଚନାଗୁଡ଼ିକ ସାଧାରଣତଃ ଭାବାବେଗ ସମନ୍ୱିତ । ହୃଦୟକୁ ସ୍ପର୍ଶ କରୁଥିବାରୁ ଏହିଭଳି ରଚନାକୁ ହୃଦୟ-ପ୍ରଧାନ ରଚନା ବୋଲି ନାମିତ କରାଯାଏ । ଲେଖକର ପାଣ୍ଡିତ୍ୟ ଅପେକ୍ଷା ଭାବନା ଏହି ଶ୍ରେଣୀର ରଚନାରେ ଉଚ୍ଛଳ ଭାବରେ ପ୍ରବାହିତ ହୁଏ ।

ପ୍ରବନ୍ଧ ରଚନାର ଏହି ମାନଦଣ୍ଡରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଏକ ଶୃଙ୍ଖଳିତ ବିଶ୍ଳେଷଣ ଆବଶ୍ୟକ । ଆଲୋଚନାର ସଙ୍ଗତି ପାଇଁ ଏହାକୁ (୧) ଉନ୍ମେଷ, (୨) ବିକାଶ ଓ ପରମ୍ପରା, (୩) ପ୍ରଭାବ ଓ ପ୍ରତିଷ୍ଠା, (୪) ସମୀକ୍ଷା ଓ ସମାଲୋଚନା, ଏହିଭଳି ସ୍ତରଭାଗରେ ବିଭକ୍ତ କରାଯାଇପାରେ ।

୧୮୬୬ ମସିହା ଉତ୍କଳ ଇତିହାସରେ ଅତ୍ୟନ୍ତ ସ୍ମରଣୀୟ । ଏହି ସମୟରେ ଦେଶ କେବଳ ଉତ୍କଟ ରାଜନୈତିକ ତଥା ସାଂସ୍କୃତିକ ସଙ୍କଟ ମଧ୍ୟରେ ଗତି କରୁ ନ ଥିଲା, ଏହା ଏକ ବିକଟ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ଇତିହାସରେ ତାହା ନଅଙ୍କଦୁର୍ଭିକ୍ଷ ନାମରେ ଖ୍ୟାତ । ନଅଙ୍କଦୁର୍ଭିକ୍ଷର ବିଘାତ ଫଳରେ ଓଡ଼ିଶା ବକ୍ଷରେ ଯେଉଁ ଧ୍ୱଂସଲୀଳା ରଚିତ ହେଲା, ସେହି ମହାଯୁଦ୍ଧରୁ ଜନ୍ମଲାଭ କଲା ଓଡ଼ିଶାର ବ୍ୟକ୍ତିତ୍ୱବୋଧ ଓ ଗୌରବର ପ୍ରାଣପ୍ରତିଷ୍ଠାର ସାଧନା । ଆତ୍ମବିସ୍ମୃତ ଓଡ଼ିଆର ପ୍ରାଣରେ ନବଜାଗରଣ ଆନୟନ ପାଇଁ ବିଖ୍ୟାତ ସାପ୍ତାହିକ ପତ୍ରିକା 'ଦୀପିକା' ଜନ୍ମଲାଭ କଲା । ଆଧୁନିକ ଓଡ଼ିଆ ଗଦ୍ୟରଚନାର ପୁଷ୍କଳ ପ୍ରକାଶରେ ତାହାର ଦାନ ଚିରସ୍ମରଣୀୟ । କାରଣ 'ଦୀପିକା'ର ଜନ୍ମ ପୂର୍ବରୁ ମିସନାରୀମାନଙ୍କ ନେତୃତ୍ୱରେ ଯେଉଁ ଗଦ୍ୟରଚନାଗୁଡ଼ିକ ପ୍ରଚରିତ ହୋଇଥିଲା, ତାହା ଅତ୍ୟନ୍ତ ଅଶୁଦ୍ଧ ଏବଂ ପ୍ରାଣହୀନ । ତାହା ଏହିପରି— "ଜଗତର ବର୍ତ୍ତମାନ ଅବସ୍ଥା ଏଠାରେ ବର୍ଣ୍ଣିତ ହୁଅଇ ଜଗତ ପାପଦ୍ୱାରା ପରିବର୍ତ୍ତିନ ହୋଇଅଛୁ ପ୍ରମାଣ; ତଥାପି ଈଶ୍ୱରଙ୍କ ଜ୍ଞାନ, ପରାକ୍ରମ ଓ ବିଧାତାପଣ ବହୁ ପ୍ରକାରରେ ଦେଖାଯାଏ, ଯେଣୁ ତାହାଙ୍କର ଅଦୃଶ୍ୟ ଗୁଣ ଅର୍ଥାତ ତାହାଙ୍କର ଅନାଦି ଅନନ୍ତ ଶକ୍ତି ଓ ଈଶ୍ୱରତ୍ୱ ଆଦି ସୃଷ୍ଟିକାଳର କୃତକର୍ମର ଦ୍ୱାରା ଜଣାଯିବାର ସୁନ୍ଦର ରୂପେ ଦୃଶ୍ୟ ହୁଅଇ ।"

ଊନବିଂଶ ଶତାବ୍ଦୀର ଶେଷ ଦୁଇଟି ଦଶକରେ କେତେକ ସାହିତ୍ୟ ପତ୍ରିକା ପ୍ରକାଶିତ ହୋଇ ଓଡ଼ିଆ ନିବନ୍ଧ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିଥିଲେ । ଏମାନଙ୍କ ମଧ୍ୟରେ ଉତ୍କଳ ଦର୍ପଣ (୧୮୭୩-୭୪) ନବସମ୍ବାଦ (୧୮୭୭), ଓଡ଼ିଆ ଓ ନବସମ୍ବାଦ (୧୮୮୮), ଉତ୍କଳ ପ୍ରଭା (୧୮୯୩), ସମ୍ବଲପୁର ହିତୈଷିଣୀ (୧୮୮୯), ଉତ୍କଳ ସାହିତ୍ୟ (୧୮୯୭ ଇତ୍ୟାଦି ବିଶେଷ ପ୍ରଣିଧାନଯୋଗ୍ୟ । ଏହିସବୁ ପତ୍ରିକାଗୁଡ଼ିକର ନାନା ସଂସ୍କାରମୂଳକ ରଚନା, ପୁସ୍ତକ ସମାଲୋଚନା, ସାହିତ୍ୟିକ ଅଥବା ସମସ୍ୟାମୂଳକ ଟିପ୍ପଣୀ, ଚିନ୍ତାତ୍ମକ ପ୍ରବନ୍ଧାବଳୀ ପ୍ରକାଶିତ ହେଉଥିଲା । 'ଉତ୍କଳ ଦର୍ପଣ', 'ଓଡ଼ିଆ ଓ ନବସମ୍ବାଦ' ପ୍ରଭୃତି ଯାହାର ବିକାଶ ପାଇଁ ଆନ୍ତରିକ ଉଦ୍ୟମ କଲେ, ତାହା 'ଉତ୍କଳ ପ୍ରଭା' ଓ 'ଉତ୍କଳ ସାହିତ୍ୟ' ପତ୍ରିକାରେ ବିଶେଷ ସଫଳତା ଅର୍ଜନ କଲା । ଏହି ପତ୍ରିକା ଦ୍ୱୟ ମୁଖ୍ୟତଃ ସାହିତ୍ୟର ପ୍ରଚାର ପାଇଁ ଉଦ୍ଦିଷ୍ଟ ଥିଲେ ଏବଂ ଏଥିରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ସୁମହତ୍ତ୍ୱ ପ୍ରଗତି ଦେଖିବାକୁ ମିଳେ । ଯେଉଁ ମୁଷ୍ଟିମେୟ ଲେଖକ ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଆ ନିବନ୍ଧ ରଚନାରେ ବିଶେଷ ଉଦ୍ୟମ କରିଥିଲେ, ସେମାନଙ୍କ ମଧ୍ୟରେ ରାଧାନାଥ ରାୟ, ଜଗନ୍ମୋହନ ଲାଲ, ଶିବନାରାୟଣ ନାୟକ, ବିଶ୍ୱନାଥ କର, ଲାଲ ରାମନାରାୟଣ, ଗଣପତି ଦାସ, ଚନ୍ଦ୍ରମୋହନ ମହାରଣା, ମଧୁସୂଦନ ରାଓ, ସାଧୁଚରଣ ରାୟ, କୃଷ୍ଣପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦର ନନ୍ଦ ପ୍ରଭୃତି ପ୍ରଧାନ ।

ଉନ୍ମେଷକାଳର ପ୍ରବନ୍ଧଗୁଡ଼ିକ ଥିଲା ମୁଖ୍ୟତଃ ଭାବନାଧର୍ମୀ । ତାହାର ପରିବେଷଣ ଥିଲା ଅତ୍ୟନ୍ତ ସହଜ ଓ ସ୍ୱାଭାବିକ । ସମ୍ବାଦପତ୍ର ଅଥବା ମାସିକ ପତ୍ର ଉଦ୍ଦେଶ୍ୟରେ ରଚିତ ହୋଇଥିବାରୁ ତହିଁରେ ସାମ୍ବାଦିକତାର ସ୍ପର୍ଶ ଅତ୍ୟନ୍ତ ନିବିଡ଼ ଥିଲା । ଅବଶ୍ୟ କେତେକ ଲେଖକ ବେଳେ ବେଳେ ପାଣ୍ଡିତ୍ୟର ପରିଚୟ ଦେବାପାଇଁ ଲେଖାକୁ କ୍ଳିଷ୍ଟ କରି ଦେଉଥିଲେ । ସେ କାଳର ଲେଖକଗଣ ଥିଲେ ପ୍ରାୟତଃ ସଂସ୍କାରବାଦୀ ଓ ଜାତୀୟତାବାଦୀ । ତେବେ ବଙ୍ଗୀୟ ସାହିତ୍ୟର ନିବିଡ଼ ସମ୍ପର୍କରେ ଆସୁଥିବାରୁ କେତେକଙ୍କ ଭାଷାରେ ବେଳେ ବେଳେ ଉତ୍କଳୀୟ ଭାଷାର ସୌଷ୍ଠବ ରକ୍ଷାକରାଯାଇ ପାରୁ ନ ଥିଲା ତେଣୁ କେତେକ ପତ୍ର ପତ୍ରିକା ଅତ୍ୟନ୍ତ ଦାରୁଣ ଭାବରେ ଏହି ବିଷୟ ଉପରେ ଲେଖନୀ ଚାଳନା କରୁଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ ଉନ୍ମେଷକାଳର ପରମ୍ପରା ଗଢ଼ିଆସିଥିଲା କହିଲେ ଚଳେ ।

**ବିକାଶ ଓ ପ୍ରତିଷ୍ଠା—**

ବିଂଶ ଶତାବ୍ଦୀର ପ୍ରଥମ ଦଶକ ପରେ ଓଡ଼ିଆ ସାହିତ୍ୟର ଗଦ୍ୟ ବିଭାଗରେ ବିଶେଷତଃ ପ୍ରବନ୍ଧ ଓ ଉପନ୍ୟାସରେ ଯଥେଷ୍ଟ ଉନ୍ନତି ଅନୁଭୂତ ହେଲା । କେତେକ ଉଗ୍ରପନ୍ଥୀ ସାହିତ୍ୟସେବୀ ଏହି କାଳରେ ଓଡ଼ିଆ ପ୍ରବନ୍ଧ ରଚନାରେ ଯଥେଷ୍ଟ ସଫଳତା ପ୍ରଦର୍ଶନ କରିଥିଲେ । ସେମାନେ ସତ୍ୟବାଦୀଦଳର ଲେଖକ ଭାବରେ ସୁପରିଚିତ । ସେମାନଙ୍କ ମଧ୍ୟରେ ଉତ୍କଳମଣି ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, କୃପାସିନ୍ଧୁ ହୋତା, ମୃତ୍ୟୁଞ୍ଜୟ ରଥ, ଜଗବନ୍ଧୁ ସିଂହ, ତାରିଣୀଚରଣ ରଥ, ମଧୁସୂଦନ ଦାସ, ବାସୁଦେବ ମହାପାତ୍ର ପ୍ରଭୃତି ପ୍ରଧାନ । ଏହି ବରେଣ୍ୟ ଲେଖକମାନଙ୍କ ନେତୃତ୍ୱରେ ଓଡ଼ିଆ ସାହିତ୍ୟରେ ବୈଜ୍ଞାନିକ ଦୃଷ୍ଟିରୁ ସାହିତ୍ୟ ଓ ସମାଜର ଇତିହାସ ଆଲୋଚିତ ହେଲା । ଭାଷା ଓ ସାହିତ୍ୟ ସମ୍ପର୍କରେ ନୂତନ ସତ୍ୟର ଆବିଷ୍କାର ପାଇଁ ଏକନିଷ୍ଠ ସାଧନା ଓ ଆଗ୍ରହ ପ୍ରକାଶ ପାଇଲା । ସତ୍ୟବାଦୀ ଦଳର ଅଧିକାଂଶ ଥିଲେ ଶିକ୍ଷାବ୍ରତୀ । ଜାତୀୟ ଆନ୍ଦୋଳନ ଥିଲା ସତ୍ୟବାଦୀ ଦଳର କର୍ମପ୍ରେରଣାର ମୂଳ ଉତ୍ସ । ତେଣୁ ଦେଶ ଓ ଜାତିର ସାଂସ୍କୃତିକ ଗୌରବ ପ୍ରଖ୍ୟାପନ, ନାନା ବିଶ୍ଳେଷଣାତ୍ମକ ଓ ଭାବପ୍ରଧାନ ପ୍ରବନ୍ଧ ଏହି କାଳରେ ରଚିତ ହୋଇଥିଲା । ଓଡ଼ିଆ ସାହିତ୍ୟର ପୁରାଣ ଯୁଗ ଏବଂ ଭକ୍ତିଯୁଗ ସମ୍ପର୍କରେ କେତେକ ଉଚ୍ଚକୋଟୀର ତୁଳନାତ୍ମକ ଆଲୋଚନା ସତ୍ୟବାଦୀଦଳ ପ୍ରଥମେ ଆରମ୍ଭ କରିଥିଲେ ।

ପ୍ରଥମ ମହାଯୁଦ୍ଧର ଅବ୍ୟବହିତ ପରେ ତାହାର ପ୍ରତିକ୍ରିୟା ଅଧିକ ପ୍ରତିଭାତ ହେଲା ତରୁଣ ସମାଜରେ । ବିଶ୍ୱଯୁଦ୍ଧ ଫଳରେ ସମଗ୍ର ଶିକ୍ଷିତସମାଜରେ ଆନ୍ତର୍ଜାତିକ ଭାବଧାରାର ଆଦାନପ୍ରଦାନ ଅଧିକ ସହଜ ହୋଇଥିଲା । ଶିଳ୍ପ ଓ ବିଜ୍ଞାନର ପ୍ରସାର ସହିତ ସମତାଳରେ ଗତିକଲା ସାଂସ୍କୃତିକ ଜୀବନଧାରା । ଶଶୀଭୂଷଣ ରାୟ, ଗିରିଜାଶଙ୍କର ରାୟ, ବିପିନବିହାରୀ ରାୟ, ରତ୍ନାକର ପତି, କାଳିନ୍ଦୀଚରଣ ପାଣିଗ୍ରାହୀ, ମାୟାଧର ମାନସିଂହ, ମୃତ୍ୟୁଞ୍ଜୟ ନାରାୟଣ ଦାସ, ବ୍ରଜବିହାରୀ ମହାନ୍ତି ପ୍ରଭୃତି ଏହି କାଳରେ ଉଲ୍ଲେଖଯୋଗ୍ୟ । ଏହି

ଲେଖକମାନଙ୍କ ରଚନାରେ ଇଂରେଜୀ ସମାଲୋଚନା ସାହିତ୍ୟର ପ୍ରଭାବ ଯଥେଷ୍ଟ ଅନୁଭୂତ ହୁଏ । ଏହି କାଳରେ ରାଜନୈତିକ, ଦାର୍ଶନିକ ଅଥବା ସାହିତ୍ୟିକ ଯେ କୌଣସି ବିଭାଗରେ ବହୁ ପ୍ରବନ୍ଧ ରଚିତ ହୋଇଛି । ସେଗୁଡ଼ିକ ଅତ୍ୟନ୍ତ ବିଶ୍ଳେଷଣାତ୍ମକ ଏବଂ ଚିନ୍ତାମୂଳକ । ଶଶିଭୂଷଣ ରାୟ ଏବଂ ଗିରିଜାଶଙ୍କର ରାୟଙ୍କ ଭଳି ଆଲୋଚକଗଣ ସାହିତ୍ୟର ତାତ୍ତ୍ୱିକ ବିଚାର ଉପରେ ଲେଖନୀ ଚାଳନା କରିଥିଲାବେଳେ ରତ୍ନାକର ପତି ଏବଂ ବିପିନବିହାରୀ ରାୟଙ୍କ ପ୍ରବନ୍ଧଗୁଡ଼ିକରେ ରାଜନୈତିକ ତଥା ସମାଜ ବିଜ୍ଞାନଜନିତ ନାନା ସମସ୍ୟା ସମ୍ପର୍କରେ ଆଲୋକପାତ ହୋଇଅଛି । ତେବେ ଅଧିକାଂଶ ଆଲୋଚକ ସାହିତ୍ୟର ଇତିହାସ ଅଥବା କବି ଓ କବିତା ସମ୍ପର୍କରେ ଦିଗ୍‌ଦର୍ଶନ ଦେଇଛନ୍ତି ।

ଅତି ଆଧୁନିକ ଓଡ଼ିଆ ସାହିତ୍ୟର ନିବନ୍ଧାବଳୀକୁ ଆଲୋଚନା କରି "ସମୀକ୍ଷା ଓ ସମାଲୋଚନା" ଶିରୋନାମାରେ ଗ୍ରହଣ କରାଯାଇ ପାରେ । ଦ୍ୱିତୀୟ ମହାଯୁଦ୍ଧ ପରେ ସ୍ୱାଧୀନତାର ଆଗମନୀ ସହିତ ଦେଶରେ ଯେଉଁ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହେଲା, ତାହା ଫଳରେ ଓଡ଼ିଆ ସାହିତ୍ୟରେ ନିବନ୍ଧ ବିଭାଗରେ ଅଧିକ ସାଧନା ଏବଂ ପ୍ରଗତି ଅନୁଭୂତ ହୋଇଅଛି । ସମାଜସଚେତନତା, ବୌଦ୍ଧିକ ବିଚାରର ଲୋକପ୍ରିୟତା ଏବଂ ସର୍ବୋପରି ବ୍ୟକ୍ତିତ୍ୱ-ପ୍ରଧାନ ରଚନା ପ୍ରତି ସମଧିକ ଆଗ୍ରହ ହେତୁ ନିବନ୍ଧ ସାହିତ୍ୟ କେବଳ ସୁପ୍ରଚରିତ ନୁହେଁ, ଅତ୍ୟନ୍ତ ସମ୍ମାନିତ ମଧ୍ୟ । ଯୁଦ୍ଧପୂର୍ବ ନିବନ୍ଧ ଥିଲା ସୀମାବଦ୍ଧ । ଆଧୁନିକ ନିବନ୍ଧକାର ମାତ୍ର କେତେଗୋଟି ବିଭାଗରେ ଲେଖନୀ ଚାଳନା କରି ସନ୍ତୁଷ୍ଟ ନୁହେଁ । ମନୁଷ୍ୟ ଜୀବନର ଏପରି କୌଣସି ବିଷୟ ଓ ବିଚାର ନାହିଁ, ଯାହା ଉପରେ ଆଧୁନିକ ପ୍ରାବନ୍ଧିକ ଆଲୋକପାତ କରିବାକୁ ଯତ୍ନଶୀଳ ନୁହେଁ । ସେଥିପାଇଁ ରାଜନୀତି, ମନସ୍ତତ୍ତ୍ୱ, ସମାଜ-ବିଜ୍ଞାନ, ଭାଷା-ବିଜ୍ଞାନ, ଧ୍ୱନି-ବିଜ୍ଞାନ, ଦର୍ଶନ, ସାହିତ୍ୟ, ଇତିହାସ, ଧର୍ମ ପ୍ରଭୃତି ପ୍ରତ୍ୟେକ ଦିଗରେ ପ୍ରଶଂସନୀୟ ଉଦ୍ୟମ ଚାଲିଅଛି । ରାଜନୈତିକ ତଥା ଅର୍ଥନୈତିକ ସମସ୍ୟା ସମ୍ପର୍କରେ ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାସ ଏବଂ ବୈଦ୍ୟନାଥ ମିଶ୍ରଙ୍କ ରଚନାଗୁଡ଼ିକ ଅଧିକ ପ୍ରଣିଧାନ ଯୋଗ୍ୟ । ସମାଜବିଜ୍ଞାନ ଓ ଧ୍ୱନି-ବିଜ୍ଞାନ ସମ୍ପର୍କରେ ଯଥାକ୍ରମେ ଡକ୍ଟର ରାଧାନାଥ ରଥ ଓ ଗୋଲକବିହାରୀ ଧଳଙ୍କ ଆଲୋଚନା ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ କହିଲେ ଚଳେ । ଦାର୍ଶନିକଭାବନା ସକଳ ରମ୍ୟରଚନା ଆକାରରେ ପରିବେଷଣ କରିବାରେ ନିତ୍ୟାନନ୍ଦ ମହାପାତ୍ର, ଲୋକନାଥ ମିଶ୍ର ଓ ଗଣେଶ୍ୱର ମିଶ୍ରଙ୍କ କୃତିତ୍ୱ ଅବଶ୍ୟ ସ୍ୱୀକୃତ । ଓଡ଼ିଶା ଇତିହାସକୁ ଯେଉଁମାନେ ନିଜର ଅପୂର୍ବ ସାଧନା ଦ୍ୱାରା ନୂଆ ରୂପ ପ୍ରଦାନକରି ପ୍ରବନ୍ଧ ସାହିତ୍ୟର ପ୍ରଭୂତ ଉନ୍ନତି କରିଅଛନ୍ତି, ସେମାନଙ୍କ ମଧ୍ୟରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କେଦାରନାଥ ମହାପାତ୍ର, ସତ୍ୟନାରାୟଣ ରାଜଗୁରୁ, ପରମାନନ୍ଦ ଆଚାର୍ଯ୍ୟ ପ୍ରଭୃତି ପ୍ରଧାନ । ଗୋକୁଳାନନ୍ଦ ମହାପାତ୍ର, ଦେବକାନ୍ତ ମିଶ୍ର ଓ ବସନ୍ତକୁମାର ବେହେରା ପ୍ରମୁଖ ଲେଖକଗଣ ବୈଜ୍ଞାନିକ ପ୍ରବନ୍ଧ ରଚନା କରି ଯଶସ୍ୱୀ ହୋଇଅଛନ୍ତି । ତେବେ ସବୁଯୁଗ ଅପେକ୍ଷା ଏଯୁଗରେ ସାହିତ୍ୟର ସମୀକ୍ଷା ଓ ସାହିତ୍ୟ ଇତିହାସର ସମାଲୋଚନା ଯେ ଅତ୍ୟନ୍ତ ସମୃଦ୍ଧ, ଏଥିରେ ଆଦୌ ସନ୍ଦେହ ନାହିଁ । ଏଦିଗରେ

ବହୁ ତରୁଣ ଓ ପ୍ରବୀଣ ଲେଖକ ଲେଖନୀ ଚାଳନା କରୁଥିବା ଜଣାଯାଏ । ରାଜକିଶୋର ରାୟ, ଗୌରୀକୁମାର ବ୍ରହ୍ମା, ନଟବର ସାମନ୍ତରାୟ, ପ୍ରହ୍ଲାଦ ପ୍ରଧାନ, ସୁରେନ୍ଦ୍ର ମହାନ୍ତି, ଚିତ୍ତରଞ୍ଜନ ଦାସ, ଜାନକୀ ମହାନ୍ତି, ଚିନ୍ତାମଣି ବେହେରା, ଶ୍ରୀନିବାସ ମିଶ୍ର, ତାରିଣୀଚରଣ ଦାସ, ଦେବେନ୍ଦ୍ର ମହାନ୍ତି, ବଂଶୀଧର ମହାନ୍ତି, ଦେବୀପ୍ରସନ୍ନ ପଟ୍ଟନାୟକ, ନରେନ୍ଦ୍ର ମିଶ୍ର ପ୍ରଭୃତିଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । ଏମାନଙ୍କ ବ୍ୟତୀତ ବହୁ ଲେଖକ ଏହି ବିଭାଗରେ ସମଧିକ ଯତ୍ନଶୀଳ ଥିବା ଜଣାଯାଏ ।

ସ୍ୱାଧୀନତା ପ୍ରାପ୍ତି ପରେ ଶିକ୍ଷା ଓ ସାମାଜିକତାର ପ୍ରସାର ହେତୁ ନିବନ୍ଧ ସାହିତ୍ୟର ପୁଷ୍ଟି ଓ ପ୍ରଗତି ପାଇଁ ଅଧିକ ଦୃଷ୍ଟି ପଡ଼ିଅଛି । ଅବଶ୍ୟ ଅନେକ ଲେଖକ ସ୍ୱାଭାବିକ ଅଭିବ୍ୟକ୍ତିର ଆଶ୍ରୟ ଗ୍ରହଣ ନକରି ଅଯଥା ତାର୍କିକ ଆଲୋଚନାରେ ପ୍ରବୃତ୍ତ ହେଉଥିବାରୁ ସାଧାରଣ ପାଠକସମାଜରେ ନିବନ୍ଧସାହିତ୍ୟ ଲୋକପ୍ରିୟତା ଅର୍ଜନ କରିବା ସହଜ ନୁହେଁ । ତେବେ ଜାତିର ଆତ୍ମପ୍ରତ୍ୟୟ ଏବଂ ବ୍ୟକ୍ତିତ୍ୱର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ନିବନ୍ଧ ସାହିତ୍ୟର ଯେ ଉଜ୍ଜ୍ୱଳ ଭବିଷ୍ୟତ ରହିଅଛି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଆଲୋଚନା ପ୍ରବନ୍ଧ

ଗୋଟିଏ ଜାତି ବା ଦେଶ ପକ୍ଷରେ ଦଶଟି ବର୍ଷ ହୁଏତ କିଛି ନୁହେଁ । ସେଥିପାଇଁ ପୂର୍ବେ ମାତ୍ର ଦଶଟି ବର୍ଷ ଇତିହାସର କୌଣସି ଗୁରୁତ୍ୱ ନ ଥିଲା । ମାତ୍ର ଏ ବିଜ୍ଞାନଯୁଗରେ ଦଶଟି ବର୍ଷର ବହୁ ମହତ୍ତ୍ୱ ଅଛି । ଏହି ସମୟରେ ଗୋଟିଏ ଜାତିର ଜୀବନରେ ଅଭାବନୀୟ ପରିବର୍ତ୍ତନ ସମ୍ଭବ ହୋଇଯାଉଛି । ତାହାର ଏକମାତ୍ର ପ୍ରମାଣ ଯୁଦ୍ଧରେ ଧ୍ୱସ୍ତ-ବିଧ୍ୱସ୍ତ ଜର୍ମାନ ଜାତି ଓ ସମାଜ । ସେମାନେ ଏହି ଅଳ୍ପକାଳ ମଧ୍ୟରେ ନିଜକୁ ପୁନର୍ଗଠିତ କରି ପୃଥିବୀର ବଜାରରେ ପ୍ରତିଯୋଗିତାପାଇଁ ଅନ୍ୟାନ୍ୟ ଶକ୍ତିଶାଳୀ ରାଷ୍ଟ୍ରଙ୍କ ସହିତ ସମାନ ପଦକ୍ଷେପ ଗ୍ରହଣ କଲେଣି । ସେହି ଦୃଷ୍ଟିରୁ ବିଗତ ଦଶଟି ବର୍ଷର ଓଡ଼ିଆ ସାହିତ୍ୟର ଆଲୋଚନା ଅସଙ୍ଗତ ହେବ ନାହିଁ ।

ଅବଶ୍ୟ ଦଶଟି ବର୍ଷ ମଧ୍ୟରେ ଗୋଟିଏ ବଳିଷ୍ଠ ସାହିତ୍ୟ ଜନ୍ମଲାଭ କରି ପ୍ରତିଷ୍ଠା ଲାଭ କରିବା ପୂର୍ବେ ଆଦୌ ସମ୍ଭବ ହେଉ ନ ଥିଲା । ମାତ୍ର ରେଡ଼ିଓ, ଟେଲିଭିଜନ୍, ଚଳଚ୍ଚିତ୍ର, ବିଶ୍ୱବିଦ୍ୟାଳୟ ଓ ଖବରକାଗଜ ମାଧ୍ୟମରେ ଏ ଯୁଗର ସାହିତ୍ୟ ଏତେ ଦ୍ରୁତଗତିରେ ପ୍ରକାଶିତ, ପ୍ରସୃତ ଓ ଆଲୋଚିତ ହେଉଛି ଯେ ସାହିତ୍ୟର ସ୍ପଷ୍ଟ ଗତି ଧରି ପାରିବା ଆଜି ସମ୍ଭବ ହୋଇ ପାରୁଛି । ଏହି ମର୍ମରେ ସ୍ୱାଧୀନତା-ପର ଓଡ଼ିଆ ଆଲୋଚନା ସାହିତ୍ୟ ଆମର ଆଲୋଚ୍ୟ ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ ପ୍ରଥମ କରି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ଯାଇଥିଲା ଏବଂ ତାହାର ଅଧୀନରେ ବିଭିନ୍ନ ଜିଲ୍ଲାର କେନ୍ଦ୍ରସ୍ଥଳୀମାନଙ୍କରେ କଲେଜ ପ୍ରତିଷ୍ଠା ସମ୍ଭବ ହେଲା ଏବଂ ଓଡ଼ିଆରେ ସର୍ବୋଚ୍ଚ ଉପାଧି ପରୀକ୍ଷାର ଅଧ୍ୟାପନାପାଇଁ ରେଭେନ୍ସା କଲେଜରେ ବ୍ୟବସ୍ଥା କରାଗଲା । ଓଡ଼ିଆକୁ ଏକ ବାଧ୍ୟତାମୂଳକ ବିଷୟ ଭାବରେ କିଛିବର୍ଷ ପରେ ମଧ୍ୟ ଗ୍ରହଣ କରି ନିଆଗଲା । ଫଳରେ ବିଶ୍ୱବିଦ୍ୟାଳୟରେ ଆଧୁନିକ ତଥା ପ୍ରାଚୀନ ଓଡ଼ିଆ ଭାଷା ଓ ସାହିତ୍ୟର ଆଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଗଲା । ଓଡ଼ିଆର ସର୍ବୋଚ୍ଚ ଉପାଧିଧାରୀ ଛାତ୍ରମାନେ ଅଧ୍ୟୟନ ଓ ଅଧ୍ୟାପନାର ସୁଯୋଗ ପାଇ ଓଡ଼ିଆ ସାହିତ୍ୟର ଆଲୋଚନାରେ ଯେପରି ମନୋନିବେଶ କଲେ, ଠିକ୍ ସେହିପରି ବିଭିନ୍ନ କଲେଜ ଆନୁକୂଲ୍ୟରେ ସାହିତ୍ୟ ସପ୍ତାହ ଅଥବା ସାହିତ୍ୟ ସଂସଦ ମାଧ୍ୟମରେ ଓଡ଼ିଆ ସାହିତ୍ୟର ଚର୍ଚ୍ଚାପାଇଁ କ୍ରମଶଃ ଆଗ୍ରହ ପ୍ରକାଶ ପାଇଲା । ପୁନଶ୍ଚ ସ୍ୱାଧୀନତା ପରେ 'ଦୈନିକ ଆଶା' ଓ 'ଦୈନିକ ପ୍ରଜାତନ୍ତ୍ର' ଭଳି ସମ୍ବାଦପତ୍ରଗୁଡ଼ିକ

ସାପ୍ତାହିକ ସାହିତ୍ୟସଂଖ୍ୟା ପ୍ରକାଶ କରି ତରୁଣ ଲେଖକମାନଙ୍କୁ ସୁଯୋଗ ଦେଲେ । ପୂର୍ବେ 'ସହକାର', 'ନବ ଭାରତ' ଭଳି ପତ୍ରିକାରେ ଅତି ମୁଷ୍ଟିମେୟ ଓ ପ୍ରତିଷ୍ଠିତ ଲେଖକ ସ୍ଥାନ ଲାଭ କରୁଥିବାରୁ ନୂତନ ଲେଖକଗଣ ନିଜର ବିକାଶପାଇଁ ଉପଯୁକ୍ତ କ୍ଷେତ୍ର ପାଉ ନ ଥିଲେ । ସ୍ୱାଧୀନତା ପରେ 'ଶଙ୍ଖ' 'ଚତୁରଙ୍ଗ', 'ବାଣୀ', 'ଶତାବ୍ଦୀ', 'ଝଙ୍କାର', 'ଆସନ୍ତାକାଲି', 'କୁଙ୍କୁମ' 'ଯୁଗବାଣୀ' ପ୍ରଭୃତି ବହୁ ପତ୍ରିକା ଓଡ଼ିଶାର ବିଭିନ୍ନ ସ୍ଥାନରୁ ତଥା ଓଡ଼ିଶା ବାହାରୁ ମଧ୍ୟ ପ୍ରକାଶିତ ହେଲା । ନାନା ସ୍ଥାନରେ ସ୍ଥାନୀୟ ସାହିତ୍ୟ-ଅନୁଷ୍ଠାନ ଉଦ୍ୟମରେ ସାହିତ୍ୟ ସମ୍ମିଳନୀର ମଧ୍ୟ ଆୟୋଜନ ହେଉଥିଲା । ମୋଟ ଉପରେ ଦେଶରେ ପ୍ରବଳ ଉତ୍ସାହ ଦେଖା ଦେଇଥିଲା ଏବଂ ଉପର୍ଯ୍ୟୁକ୍ତ ପତ୍ରିକା-ଗୁଡ଼ିକରେ ବହୁ ତରୁଣ ଲେଖକ ଲେଖନୀ ଚାଳନା କରିବାକୁ ଆରମ୍ଭ କଲେ । ଏହି ଅଳ୍ପକାଳ ମଧ୍ୟରେ ବହୁ ପତ୍ରିକା ଜନ୍ମଲାଭ କରି ଯେପରି ମୃତ୍ୟୁ ବରଣ କରିଛନ୍ତି, ଅସଂଖ୍ୟ ଲେଖକ ମଧ୍ୟ ଲେଖନୀ ଧାରଣ କରି କିଛିକାଳ ପରେ ମଉଳି ଯାଇଛନ୍ତି । ମାତ୍ର ଏହି ଅପୂର୍ବ ଉତ୍ସାହିତ ବାତାବରଣ ମଧ୍ୟରେ ବହୁ ତରୁଣ କବି, ଗାଳ୍ପିକ ଓ ସମାଲୋଚକ ଜନ୍ମ ହୋଇ ଉଜ୍ଜ୍ୱଳ ଭବିଷ୍ୟତର ଯେ ଇଙ୍ଗିତ ଦେଇଛନ୍ତି, ଏଥିରେ ଆଦୌ ସନ୍ଦେହ କରିବାର ନାହିଁ ।

ବିଶେଷତଃ ସ୍ୱାଧୀନତା ପରେ ଓଡ଼ିଶାର ସାଂସ୍କୃତିକ ଜୀବନରେ ନୂତନରଙ୍ଗ ବାତାବରଣ ଯେ ଚହଲି ଯାଇଛି, ତାହାର ସୂଚନା ବହୁ ସ୍ଥାନରୁ ମିଳୁଅଛି । ଆଜିକାଲି ଓଡ଼ିଆ ପତ୍ରିକା ଓ ପୁସ୍ତକର ପ୍ରକାଶ ତଥା ପ୍ରଚାର ଯେପରି ବୃଦ୍ଧିଲାଭ କରିଛି, ଓଡ଼ିଆ ସାହିତ୍ୟର ସାହିତ୍ୟିକ ବୀରମାନଙ୍କର ସ୍ମୃତି-ରକ୍ଷାପାଇଁ ଦେଶ ମଧ୍ୟ ସେତିକି ବ୍ୟଗ୍ର ହୋଇଛି । ତେଣୁ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଜଗନ୍ନାଥ ଦାସ, ଗୋପାଳକୃଷ୍ଣ, ସାରଳା ଦାସ ପ୍ରଭୃତିଙ୍କ ଜୀବନୀ ଯେପରି ନାଟକ-ରୂପ ନେଇଅଛି, ସେହିପରି ବହୁ କବିଙ୍କର ସାମୟିକ ଶ୍ରାଦ୍ଧ ସଭା ମାଧ୍ୟମରେ ଗୁଣକୀର୍ତ୍ତନ କରାଯାଇ ସେମାନଙ୍କ ସାହିତ୍ୟ ଆଲୋଚିତ ହେଉଅଛି । ଏହି ପ୍ରକାର ଆଗ୍ରହ ଓ ଆଲୋଚନା ଫଳରେ କଳିଙ୍ଗ ଭାରତୀର 'ଭଞ୍ଜପ୍ରଭା', ପ୍ରଜାତନ୍ତ୍ର-ପ୍ରଚାରସମିତିର 'ସାରଳା ସ୍ମରଣିକା' ଅଥବା ଫକୀରମୋହନ ସାହିତ୍ୟ-ପରିଷଦର 'ଫକୀରମୋହନ ପରିକ୍ରମା' ଭଳି ଆଲୋଚନାମୂଳକ ଗ୍ରନ୍ଥ ପ୍ରକାଶିତ ହେବା ସହଜ ହୋଇ ଉଠିଲା । କେବଳ ସେତିକି ନୁହେଁ, ଗତ କେତେ ବର୍ଷ ମଧ୍ୟରେ ପଣ୍ଡିତ ନୀଳକଣ୍ଠଙ୍କ ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ସଂସ୍କୃତ ଓ ସଂସ୍କୃତି, ଓଡ଼ିଆ ଭାଷା ଓ ସାହିତ୍ୟ, ସୁରେନ୍ଦ୍ର ମହାନ୍ତିଙ୍କର ଫକୀରମୋହନ ଓ ଫକୀରମୋହନ ସମୀକ୍ଷା, ବଂଶୀଧର ମହାନ୍ତିଙ୍କର ସାହିତ୍ୟ ଓ ସଂସ୍କୃତି, ସର୍ବେଶ୍ୱର ଦାଶଙ୍କର ଯୁଗସ୍ରଷ୍ଟା ଫକୀରମୋହନ, ସାହିତ୍ୟ ସନ୍ଦର୍ଶନ, ନାଟକ ବିଚାର, ଗୌରୀକୁମାର ବ୍ରହ୍ମାଙ୍କର ଉପସ୍ୱିନୀ ଓ ମେହେର ସାହିତ୍ୟ, ସମସ୍ୟା ଓ ସମାଧାନ, କାହ୍ନୁଚରଣ ମିଶ୍ରଙ୍କର ସାହିତ୍ୟ ସମୀକ୍ଷା, ଆଲୋଚନା-ମାଳା, ଉପେନ୍ଦ୍ର ମିଶ୍ରଙ୍କର ଔପନ୍ୟାସିକ ଫକୀରମୋହନ, ନରେନ୍ଦ୍ର ମିଶ୍ରଙ୍କର ବଳରାମ ଦାସ ଓ ଓଡ଼ିଆ ରାମାୟଣ, ଚିତ୍ତରଞ୍ଜନ ଦାସଙ୍କର ଅଚ୍ୟୁତାନନ୍ଦ ଓ ପଞ୍ଚସଖା, ମାୟାଧର

ମାନସିଂହଙ୍କର କବି ଓ କବିତା, ଚିନ୍ତାମଣି ପାଣିଗ୍ରାହୀଙ୍କର ଯୁଗ ସାହିତ୍ୟ, ଗୋଲୋକ-ବିହାରୀ ଧଳଙ୍କର ମଣିପରି ଭାଷା ପ୍ରଭୃତି ବହୁ ଆଲୋଚନାମୂଳକ ପୁସ୍ତକ ପ୍ରକାଶିତ ହୋଇଛି । ସେ ସମସ୍ତର ନିର୍ଭୁଳ ବିବରଣୀ ଦେବା ନିଷ୍ପ୍ରୟୋଜନ । କାରଣ ଆଲୋଚନା ସାହିତ୍ୟର ଗତି ବିଚାର କଲାବେଳେ ପ୍ରକାଶିତ ପୁସ୍ତକର ହିସାବ ନିକାଶ ଆମର କାମ୍ୟ ନୁହେଁ । ଉପର୍ଯ୍ୟୁକ୍ତ ପୁସ୍ତକଗୁଡ଼ିକ ବିଚାର କଲେ ଜଣାଯାଏ ଯେ ଏତେ ଅଳ୍ପକାଳ ମଧ୍ୟରେ ଆଧୁନିକ ଓଡ଼ିଆ ସାହିତ୍ୟରେ କେବେହେଲେ ଏହି ପରିମାଣରେ ଆଲୋଚନା-ମୂଳକ ପୁସ୍ତକ ପ୍ରକାଶିତ ହେବା ସମ୍ଭବ ନ ଥିଲା ।

ଏହି ପୁସ୍ତକ ବିଚାର ଛାଡ଼ି ଦେଲେ ଓଡ଼ିଆ ପତ୍ର-ପତ୍ରିକାରେ ପ୍ରତି ମାସରେ ବହୁ ଆଲୋଚନାମୂଳକ ଲେଖା ଗତ କେତେବର୍ଷ ଧରି ପ୍ରକାଶିତ ହୋଇ ଆସୁଛି । ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ପୁସ୍ତକରୂପ ନେଇ ନ ଥିବାରୁ ସେହି ସବୁ ଲେଖକମାନଙ୍କୁ ଆଲୋଚନା କ୍ଷେତ୍ରକୁ ଆଣିବା ସହଜ ନୁହେଁ । ତେବେ ଏ ପ୍ରକାର ଆଲୋଚନାରେ ନଟବର ସାମନ୍ତରାୟ, ରାଧାମୋହନ ମହାପାତ୍ର, ଚିନ୍ତାମଣି ବେହେରା, ଶ୍ରୀନିବାସ ମିଶ୍ର, ସିଦ୍ଧେଶ୍ୱର ହୋତା, ଜାନକୀ ମହାନ୍ତି, ବେଣୁଧର ରାଉତ, କୁଞ୍ଜବିହାରୀ ଦାସ, କେଶବ ମେହେର, ଅଶ୍ୱିନୀକୁମାର ପୂଜାରୀ, ପ୍ରାଣନାଥ ପଟ୍ଟନାୟକ ପ୍ରଭୃତି ବହୁ ଲେଖକ ଧାରାବାହିକ ଭାବରେ ଲେଖନୀ ଚାଳନା କରିଅଛନ୍ତି । ଉପରେ ଯେଉଁମାନଙ୍କ ନାମ ଉଲ୍ଲେଖ କରାଗଲା, ସେମାନଙ୍କ ଅପେକ୍ଷା ବହୁ ଓଡ଼ିଆ ଲେଖକ ପ୍ରବନ୍ଧ ଓ ସମାଲୋଚନା-ସାହିତ୍ୟର ବିକାଶ ଦିଗରେ ଧ୍ୟାନ ଦେଇ ଅଛନ୍ତି । ଏ ପର୍ଯ୍ୟନ୍ତ ବାହ୍ୟ ଦୃଷ୍ଟିରୁ କେବଳ ଆଧୁନିକ ସମାଲୋଚନା-ସାହିତ୍ୟର ବିଚାର କରାଯାଇଛି । କେତୋଟି ଦଶକ ପରେ ଆଜି ହିସାବ ନିକାଶ ଚାଲିଥିବାରୁ ସ୍ୱତଃ ପଚାରିବାକୁ ଇଚ୍ଛା ହୁଏ—ଆମ ଆଲୋଚନା-ସାହିତ୍ୟର ଗତି କେଉଁଆଡ଼େ ? ବାସ୍ତବିକ ଆମେ ଅଗ୍ରଗତି କରିଚୁ ତ !

ଆଜିର ଆଲୋଚନା-ସାହିତ୍ୟ ମାନଦଣ୍ଡରେ ଯୁଦ୍ଧପୂର୍ବ ଆଲୋଚନା-ସାହିତ୍ୟର ରୂପ ନିର୍ଣ୍ଣୟ କଲେ, ସ୍ୱୀକାର କରିବାକୁ ହେବ ଯେ, ପ୍ରାଚୀନ ଆଲୋଚକମାନଙ୍କ ଆଲୋଚନାର ଅନ୍ତରାଳରେ ଯେଉଁ ପାଣ୍ଡିତ୍ୟ, ବହୁପାଠନ, ଧୈର୍ଯ୍ୟ, ସାଧନା ବର୍ତ୍ତମାନ ଥିଲା, ତାହା ଆଜିର ଅଧିକାଂଶ ଆଲୋଚକଙ୍କ ନିକଟରେ ପ୍ରତିଭାତ ହେଉନାହିଁ । ସେହି କାଳର ଉତ୍କଳ ସାହିତ୍ୟ, ମୁକୁର, ସତ୍ୟବାଦୀ ପତ୍ରିକାର ପୃଷ୍ଠା ଉନ୍ମୋଚନ କଲେ, ମତ୍ତୁବା ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ନନ୍ଦ, ଜଗବନ୍ଧୁ ସିଂହ ପ୍ରଭୃତିଙ୍କ ରଚନା ବିଶ୍ଳେଷଣ କଲେ, ଏହି ଉକ୍ତିର ସତ୍ୟତା ଉପଲବ୍ଧି କରି ହେବ । ଅବଶ୍ୟ ସେ କାଳର ସମାଲୋଚନା ଅନେକ ସମୟରେ କେବଳ କବିଜୀବନୀ, କାବ୍ୟରେ ରସାନୁଭୂତି ଅଥବା କବିଙ୍କ ଧର୍ମମତର ବିଚାର ଉପରେ ହିଁ ନିର୍ଦ୍ଦିଷ୍ଟ ହେଉଥିଲା । ସଂସ୍କୃତ ଆଲୋଚନା ସାହିତ୍ୟର ପ୍ରଭାବ ସେମାନଙ୍କୁ ନିୟନ୍ତ୍ରିତ କରୁଥିଲା । ହେଲେ ବି ଭାରତ ଦର୍ପଣ, ଓଡ଼ିଆ ଭାଷାତତ୍ତ୍ୱ, ସାରଳା ଚରିତ, ପ୍ରାଚୀନ ଉତ୍କଳ ଭଳି କେତେଖଣ୍ଡି ପୁସ୍ତକ ଆଜିକାଲି ଦେଖିବାକୁ ମିଳୁଛି ? କେବଳ ସେତିକି ନୁହେଁ, ଯୁଦ୍ଧପୂର୍ବ ଓଡ଼ିଆ ସାହିତ୍ୟରେ ପଣ୍ଡିତ

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନେତୃତ୍ୱରେ ପ୍ରାଚୀସମିତି ପ୍ରାଚୀନ ସାହିତ୍ୟର ଶୁଦ୍ଧ ସଂକଳନ ଓ ଟୀକା ତଥା ପାଣ୍ଡିତ୍ୟପୂର୍ଣ୍ଣ ଭୂମିକା ଲେଖିବାରେ ଯେପରି ଅଗ୍ରଣୀ ହୋଇଥିଲା, ଆଜିର ଅଧିକାଂଶ ଆଲୋଚକଙ୍କ ନିକଟରେ ସେ ସାଧନା କାହିଁ ?

ଏ ତ ଗଲା ପ୍ରାଚୀନର କଥା । ଆଧୁନିକ ଆଲୋଚନା-ସାହିତ୍ୟର କ୍ଷେତ୍ର ଯେ ପୂର୍ବାପେକ୍ଷା ଅଧିକ ପ୍ରଶସ୍ତ ଓ ଉଦାର ହୋଇଛି, ଏ କଥା ସ୍ୱୀକାର କରିବାକୁ ହେବ । ପୂର୍ବେ ଆଲୋଚନା କେବଳ କାବ୍ୟଗତ ଶୈଳୀ ଆଲୋଚନାରେ ହିଁ ଅନେକ ସମୟରେ ପର୍ଯ୍ୟାପ୍ତ ଥିଲା । ଆଧୁନିକ ଆଲୋଚକଗଣ ଇଂରେଜୀ ଆଲୋଚନା ଆଦର୍ଶରେ ସାହିତ୍ୟର ରସାନୁଭୂତ ଆଲୋଚନାରେ କେବଳ ସନ୍ତୁଷ୍ଟ ନ ରହି ତାହାର ଐତିହାସିକ ତଥା ସାମାଜିକ ଦୃଷ୍ଟିଭଙ୍ଗୀ ଖୋଜି ବାହାର କରିବାକୁ ବ୍ୟଗ୍ର ହୋଇ ଅଛନ୍ତି । ଯୁଗ ସାହିତ୍ୟର ଗତି ଓ ପ୍ରକୃତି ନିର୍ଦ୍ଧାରଣପାଇଁ ମଧ୍ୟ ସାମଗ୍ରିକ ଭାବରେ ଉଦ୍ୟମ ହେଉଛି । କେବଳ ସଂସ୍କୃତ ସାହିତ୍ୟରେ ସନ୍ତୁଷ୍ଟ ନ ରହି ଇଂରେଜୀ ତଥା ପ୍ରାନ୍ତୀୟ ସାହିତ୍ୟର ଆଦାନ ପ୍ରଦାନରେ ଆଧୁନିକ ସାହିତ୍ୟର ରସବୋଧ ଓ ଗତି ମଧ୍ୟ ବିଗ୍ଭରକୁ ଅଣାଯାଉଛି । ବିଶେଷତଃ ବିନୋଦଚନ୍ଦ୍ର ନାୟକଙ୍କର ରାଧାନାଥ-ସମ୍ପର୍କୀୟ ବିଗ୍ଭର, ଚିନ୍ତାମଣି ବେହେରାଙ୍କ ଅଭ୍ୟୁଦୟ ସାହିତ୍ୟ, ନଟବର ସାମନ୍ତରାୟଙ୍କ ଫକୀରମୋହନ ବିଶ୍ଳେଷଣ, ଅଶ୍ୱିନୀକୁମାର ପୂଜାରୀଙ୍କ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷା, ସଚ୍ଚିଦାନନ୍ଦ ରାଉତରାୟଙ୍କ ଉପଧାମିଳନ, ଗୌରୀକୁମାର ବ୍ରହ୍ମାଙ୍କ ଯାନକୃଷ୍ଣ ଜଣେ ନା ଦୁଇଜଣ, ବଂଶୀଧର ମହାନ୍ତିଙ୍କ ଇନ୍ଦ୍ରଧନୁ ଓ ବିଜୁଳି, ସୁରେନ୍ଦ୍ର ମହାନ୍ତିଙ୍କ ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ ଭଳି ଆଲୋଚନାଗୁଡ଼ିକରେ ଯେଉଁ ବୈଜ୍ଞାନିକ ଦୃଷ୍ଟିକୋଣ, ସଯତ ବିଶ୍ଳେଷଣର ସ୍ୱାକ୍ଷର ରହିଛି, ତାହା ଯେ କୌଣସି ସାହିତ୍ୟରେ ଉଜ୍ଜ୍ୱଳ ଭବିଷ୍ୟତର ସଙ୍କେତ ଦେଇଥାଏ । ନଚେତ୍ ଆଧୁନିକ ପତ୍ରପତ୍ରିକାରେ ପ୍ରକାଶିତ ବହୁ ଆଲୋଚନା ପଢ଼ିଲେ ହତାଶ ହେବାକୁ ପଡ଼େ । କାରଣ ଅନେକ ଆଲୋଚକ କେବଳ ଶସ୍ତା ପ୍ରଗ୍ଭର ଉଦ୍ଦେଶ୍ୟରେ ଲେଖନୀ ଗ୍ଭଳନା କରୁଥିବାରୁ ସେମାନେ କେତେକ ପୁସ୍ତକର ଶ୍ଳୋକ ଉଦ୍ଧାର କରି ଆଲୋଚନାକୁ ସାଙ୍ଗ କରି ଥାଆନ୍ତି । ଏପରି ଆଲୋଚନା ଯେପରି ନୀରସ, ସେହିପରି ପାଠକ ତଥା ରସିକମହଲରେ ପରିତ୍ୟଜ୍ୟ । ତା ଛଡ଼ା ଅନେକ ଆଲୋଚନା ମୂଳ ରଚନାକୁ ଅତି କ୍ଲିଷ୍ଟ କରି ଦେଉଥିବାରୁ ତାହା ଅତିଶୟ ଅପ୍ରାକୃତିକ ଦୋଷରେ ଦୁଷ୍ଟ ହୋଇ ଅପାଠ୍ୟ ହୋଇପଡ଼େ । ଏ ସମ୍ପର୍କରେ ପତ୍ରପତ୍ରିକାର ସମ୍ପାଦକମାନଙ୍କ ଗୁରୁ ଦାୟିତ୍ୱ ରହିଛି । ଲୋକପ୍ରିୟ ଭାଷା ଓ ଶୈଳୀ ମାଧ୍ୟମରେ ଭାବ ପ୍ରକାଶ ନ କଲେ, ଏ ପ୍ରଗ୍ଭରଯୁଗରେ ସାହିତ୍ୟ ଆଦୃତ ହୋଇ ପାରିବ ନାହିଁ । ପୁନଶ୍ଚ ଅନେକ ସାହିତ୍ୟ ଆଲୋଚନା ନାମରେ କଲେଜରେ ଆବଶ୍ୟକ ହେଲାଭଳି ନୋଟ୍ ବହି ପ୍ରକାଶ କରୁଛନ୍ତି । ଅର୍ଥ ଅର୍ଜନ କରିବା ଏମାନଙ୍କର ପ୍ରଧାନ ଲକ୍ଷ୍ୟ ଥିବାରୁ ଏ ପ୍ରକାର ଆଲୋଚନା ନୋଟ୍ ଅଥବା ସାହିତ୍ୟ କାହାର ସ୍ଥାନ ଗ୍ରହଣ କରି ପାରୁ ନାହିଁ ଏବଂ ଏ ପ୍ରକାର ପୁସ୍ତକର ମଧ୍ୟ କୌଣସି ପ୍ରକାର ଚିରନ୍ତନ ମୂଲ୍ୟ ନାହିଁ । ଆହୁରି ଅନେକେ ମତ ପୋଷଣ କରନ୍ତି ଯେ ଆଲୋଚନା-ସାହିତ୍ୟ

ଅତି ସହଜ । ମାତ୍ର ଦଶ ପାଞ୍ଚ ଖଣ୍ଡି ପୁସ୍ତକ ପଢ଼ି ତାହାର ଅବଲମ୍ବନରେ ଏକ ପ୍ରବନ୍ଧ ପ୍ରକାଶ କରିଦେଲେ, ଲେଖକର ପାଣ୍ଡିତ୍ୟ ତଥା ସମାଲୋଚନା-ଶକ୍ତି ପ୍ରକାଶିତ ହୋଇଯାଏ । ଏହି ଧାରଣାରେ ଅନେକ ଲେଖକ ଲେଖନୀ ଚାଳନା କରୁଥିବାରୁ ସମାଲୋଚନା-ସାହିତ୍ୟ ମୌଳିକ ଅଗ୍ରଗତି କରି ପାରୁନାହିଁ । ଆହୁରି ମଧ୍ୟ ଅନେକ ଲେଖକ ନିଜ ପ୍ରକାଶିତ ରଚନାର ପାଦଦେଶରେ ବହୁ ପୁସ୍ତକ ଓ ପତ୍ରିକାର ଟିପ୍ପଣୀ ତଥା ଉଦ୍ଧୃତାଂଶ ଦେଇ ଗୌରବ ଗ୍ରହଣ କରି ଥାଆନ୍ତି । ମାତ୍ର ଏହିଭଳି ଅନେକ ରଚନା ପଢ଼ିଲେ ଜଣାଯାଏ ଯେ ସେଥିରେ ଲେଖକ ନିଜେ କିଛି ଆଲୋଚନା କରି ନାହାନ୍ତି । କେବଳ ଗୁଡ଼ିଏ ବ୍ୟବଚ୍ଛିନ୍ନ ଭାବ-ସମ୍ପଦକୁ ଏକାଠି କରିଛନ୍ତି । ସମାଲୋଚନା ଏକ ସୃଷ୍ଟିମୂଳକ ସାହିତ୍ୟ । ଏହା ବୋଧହୁଏ ସବୁଠାରୁ କଷ୍ଟକର ରଚନା । କାରଣ ସମାଲୋଚକ ଏକାଧାରରେ ବହୁପାଠୀ, ଉଦାର-ଭାବାପନ୍ନ ଏବଂ ପଣ୍ଡିତ ହେବା ଉଚିତ । କେବଳ ସେତିକି ନୁହେଁ, ତାହାର ରଚନାରେ ଭାଷାର ଶାଳୀନତା ଓ ଅପୂର୍ବ ଚିନ୍ତାଶୀଳତା ପରିଦୃଷ୍ଟ ନ ହେଲେ ସମାଲୋଚନା ଉଚ୍ଚାଙ୍ଗ ହୁଏ ନାହିଁ । ଓଡ଼ିଆରେ ପ୍ରକାଶିତ ଅନେକ ଆଲୋଚନାରେ ଏ ପ୍ରକାର ଦୁର୍ବଳତା ଦୃଷ୍ଟିଗୋଚର ହୁଏ । ପୂର୍ବରୁ କହିଛି, ସମାଲୋଚନା ଉଦାର ଓ ମହତ୍ ହେବା ଉଚିତ । ବ୍ୟକ୍ତିଗତ ଈର୍ଷା ଅଥବା ବଦ୍ଧମୂଳ ଅନ୍ଧବିଶ୍ୱାସ ତହିଁରେ ପ୍ରତିଫଳିତ ହେଲେ, ସମାଲୋଚନା କୁତ୍ସାରେ ପରିଣତ ହୋଇଯାଏ । ସମାଲୋଚନାରେ ଭାବପ୍ରବଣତାର ମଧ୍ୟ ସ୍ଥାନ ନାହିଁ । ଯେତେବେଳେ ଅଷ୍ଟାଦଶ ଶତାବ୍ଦୀର ଖ୍ରୀଷ୍ଟ କବିବରର ଉପେନ୍ଦ୍ରଭଞ୍ଜଙ୍କୁ ସମକବିବରରେ ଷୋଡ଼ଶ ଶତାବ୍ଦୀର ସେକ୍ସପିୟରଙ୍କ ସହିତ ତୁଳନା କରି ବାହାବା ଦିଆଯାଉଛି, ସାରଳା ଦାସଙ୍କ ରଚନାରେ କୋଣାର୍କ, ଭୁବନେଶ୍ୱର ମନ୍ଦିରର ବର୍ଣ୍ଣନା ନାହିଁ ବୋଲି ତାଙ୍କ କାଳକୁ ନବମ ଦଶମ ଶତାବ୍ଦୀରେ ନିର୍ଦ୍ଦିଷ୍ଟ କରି ଦିଆଯାଉଛି, ଗୋଟିଏ ଦୁଇଟି ଭାଷା ଓ ସାହିତ୍ୟ ସମ୍ପର୍କରେ ସାଧାରଣ ଧାରଣା ଥାଇ ଯଦି ଓଡ଼ିଆ ସାହିତ୍ୟକୁ ପୃଥିବୀ ସାହିତ୍ୟର ଦରବାରରେ ତୁଳନା କରି ଦିଆଯାଇ ପାରୁଛି, ତେବେ ସମାଲୋଚକମାନଙ୍କ ମଧ୍ୟରେ ଭାବପ୍ରବଣତା ତଥା ଅନ୍ଧ ଜାତୀୟତାବୋଧ କେତେ ପରିମାଣରେ କାର୍ଯ୍ୟ କରୁଛି, ସେ କଥା କେବଳ ବିବେଚନା କରିବାର କଥା ।

ସମାଲୋଚକ ସାହିତ୍ୟ-ରୂପକ ଜାହାଜର କାପ୍ତାନ ଭଳି । ସାହିତ୍ୟରେ କେବଳ ମହତ୍ତ୍ୱର ସୃଷ୍ଟି ଓ ଦିଗ୍‌ଦର୍ଶନ ତାହାର କାମ ନୁହେଁ, ସମାର୍ଜନୀ ଭଳି ଆବର୍ଜନା ବହିଷ୍କାର କରିବାରେ ସେ ଲେଖନୀ ଧାରଣ କରିବା ଉଚିତ । ଓଡ଼ିଆ ସାହିତ୍ୟରେ ସେ ପ୍ରକାର ସମାଲୋଚକର ଅଭାବ ନିଶ୍ଚୟ ରହିଛି । ତାହା ନ ହେଲେ ବହୁ ଅବାଞ୍ଛିତ ପତ୍ରିକା ଓ ପୁସ୍ତକ ପ୍ରକାଶିତ ହୋଇ ପ୍ରଶଂସିତ ହୋଇ ନ ଥାନ୍ତା । ଏଥିପାଇଁ ଓଡ଼ିଆ ସମ୍ପାଦକଗଣ ଲେଖନୀ ଧାରଣ ନ କରିବା ବାସ୍ତବିକ କ୍ଷୋଭର କଥା ।

ଆଲୋଚନାର ଉପସଂହାର ପୂର୍ବରୁ ଆଉ କେତୋଟି କଥା ସୂଚେଇ ଦେବାର ଅଛି । ସମାଲୋଚନା-ସାହିତ୍ୟ କେବଳ କବି ଓ କବିତାରେ ଆବଦ୍ଧ ହୋଇଛି କହିଲେ

ଅଖଣ୍ଡ ହେବ ନାହିଁ । ନୀଳକଣ୍ଠଙ୍କ କ୍ରମ ପରିଣାମରେ ଯେଉଁ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ, ସେ ପ୍ରକାର ଉଦ୍ୟମ ଆଉ କାହିଁ ହୋଇଛି ବୋଲି ମନେ ହେଉନାହିଁ । ସାହିତ୍ୟରେ କଳା, ସ୍ଥପତି, ଅର୍ଥନୀତି, ଶାସନନୀତି, ଯୌନନୀତି, ସମାଜସଂସ୍କାର, ବିଜ୍ଞାନ, ସଙ୍ଗୀତ ଭଳି ବହୁ ବିଭାଗର ଅବତାରଣା କରାଯାଇ ପାରେ । ସ୍ୱାଧୀନତା ପରେ ବିଭିନ୍ନ ଅର୍ଥନୈତିକ ତଥା ସାମାଜିକ ସମସ୍ୟା ଉପରେ କିଛିକାଳ ଧରି ମୃତ୍ୟୁଞ୍ଜୟ ଦାସ ଆଲୋଚନା କରିଥିଲେ । ମାତ୍ର ବର୍ତ୍ତମାନ ଏହି ବିଷୟରେ ଅଧ୍ୟାପକ ବୈଦ୍ୟନାଥ ମିଶ୍ର ଓ ଶ୍ରୀରାମଚନ୍ଦ୍ର ଦାସ ସେହିପରି ଆଲୋଚନା କରୁଛନ୍ତି । ସେହିପରି ବିଜ୍ଞାନ-ବିଷୟକ ଆଲୋଚନାରେ ବସନ୍ତକୁମାର ବେହେରା, ଗୋକୁଳାନନ୍ଦ ମହାପାତ୍ର ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ଆଲୋଚନାଗୁଡ଼ିକରେ ଜାଗ୍ରତ ଯୁଗର ମନୋଭାବ ଅଧିକ ପ୍ରକଟିତ ହେଲେହେଁ ଏହି ଶ୍ରେଣୀର ଲେଖାଗୁଡ଼ିକ ଥିଓରି ସର୍ବସ୍ୱ ହୋଇ ପଡ଼ୁଥିବାରୁ ସାଧାରଣ ପାଠକର ଗ୍ରାହ୍ୟ ହେବା ସମ୍ଭବ ନୁହେଁ । ତେବେ ସମାଜ-ଚେତନା ସମ୍ବଳିତ ଲେଖା ଯେ କ୍ରମେ ଗ୍ରହଣୀୟ ହେବ, ଏଥିରେ ଆଦୌ ସନ୍ଦେହ ନାହିଁ । ରାଧାନାଥ ରଥଙ୍କ 'ପ୍ରଗତି' ପୁସ୍ତକ ଓ 'ଆମର ରବିବାର କଥା' ଆଲୋଚନାଗୁଡ଼ିକରେ ଏହି ଧାରଣାର କଥିତ ରୂପଦାନ କରିବା ପାଇଁ ଚେଷ୍ଟା ହୋଇଅଛି ।

ବର୍ତ୍ତମାନ ଆଲୋଚନା ପ୍ରବନ୍ଧ ଏକ ବ୍ୟାପକ କ୍ଷେତ୍ରରେ ପରୀକ୍ଷିତ ହେଉଅଛି । ଆହୁରି ଅନେକ ବିଷୟରେ ଏ ପର୍ଯ୍ୟନ୍ତ ପରୀକ୍ଷା ମଧ୍ୟ ଆରମ୍ଭ ହୋଇ ନାହିଁ । ଉପରେ ଯେଉଁ ଦୁର୍ବଳତାଗୁଡ଼ିକ ନିର୍ଦ୍ଦିଷ୍ଟ ହେଲା, ତାହାର ମୂଳରେ ରହିଛି ଏ ଯୁଗର ଅଧିକାଂଶ ଆଲୋଚକମାନଙ୍କର ତାରୁଣ୍ୟ । ତାରୁଣ୍ୟର ପ୍ରବଣତା ବଳରେ ଅସଂଖ୍ୟ ସୃଷ୍ଟି ହୋଇପାରେ, ମାତ୍ର ସେ ସୃଷ୍ଟିରେ ଚିରନ୍ତନ ଛାପ ମାରିବାପାଇଁ ଯେଉଁ ଅବଗାହନ, ଚିନ୍ତାଶୀଳତା ଓ ବିଷୟବସ୍ତୁ ଦରକାର, ତାହା ଏବେ ମଧ୍ୟ ଦେଖିବାକୁ ଆଶା ରହିଛି । ତେବେ ବିଗତ ବର୍ଷଗୁଡ଼ିକରେ ସମାଲୋଚନା ସାହିତ୍ୟର ଯେଉଁ ପରୀକ୍ଷା ଚାଲିଛି, ତାହାକୁ ଲକ୍ଷ୍ୟକରି କେହି କେହି ଏହି ଅତି ଆଧୁନିକ ଓଡ଼ିଆ ଯୁଗ-ସାହିତ୍ୟକୁ "ସମାଲୋଚନା ଯୁଗ" ବୋଲି ନାମିତ କରିବାକୁ ଆଗ୍ରହ ପୋଷଣ କରିଛନ୍ତି । କେବଳ ସଂଖ୍ୟା ବା ରୂପାୟନ ଦୃଷ୍ଟିରୁ ନୁହେଁ, ଦୃଷ୍ଟିଭଙ୍ଗୀ ଓ ଆଲୋଚନାର ସଙ୍କେତରେ ଏ ଯୁଗର ଆଲୋଚନା ସାହିତ୍ୟ ଯେ ନିଶ୍ଚୟ ଅଗ୍ରଗତି କରୁଛି ଏବଂ ଉଜ୍ଜ୍ୱଳ ଭବିଷ୍ୟତର ସଙ୍କେତ ଦେଉଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ

**ପରାଧୀନତାର ଅନ୍ଧକାର—**

ଦୀର୍ଘକାଳର ପରାଧୀନତା ପରେ ଭାରତବର୍ଷ ସ୍ୱାଧୀନତାର ଗୋଟିଏ ଯୁଗ ଅତିକ୍ରମ କରିଅଛି । ଗୋଟିଏ ସ୍ୱାଧୀନ ଜାତିର ବିକାଶ ପାଇଁ ଏହି ସମୟ ବିଶେଷ କିଛି ନୁହେଁ । ତେବେ ଏହି ସ୍ୱଳ୍ପକାଳ ମଧ୍ୟରେ ଜାତୀୟ ଜୀବନର ଉନ୍ମେଷର ଧାରା ଲକ୍ଷ୍ୟ କଲେ ମନରେ ଅପୂର୍ବ ଆହ୍ଲାଦ ଜାତ ହୁଏ ।

ପରାଧୀନତା ଜାତୀୟ ବିକାଶରେ ପ୍ରଧାନ ପ୍ରତିବନ୍ଧକ । କାରଣ ଜାତି ତଥା ସମାଜର ସ୍ୱାଧୀନ ବିକାଶ ପ୍ରତିହତ ହେବା ଫଳରେ ମନ ଅତ୍ୟନ୍ତ ସଙ୍କୁଚିତ ହୋଇଯାଏ । ମୁସଲମାନ ଅଥବା ମରହଟ୍ଟା ଶାସନ କାଳରେ ଦେଶରେ ଅନେକ ସ୍ଥଳରେ ଅରାଜକତା, ଅଶାନ୍ତି ଅଥବା ବିଦ୍ରୋହ ଦେଖା ଦେଉଥିଲେହେଁ ଜାତୀୟ ଜୀବନରେ ଉନ୍ମାଦନା ଓ ଉତ୍ସାହ ମରିଯାଇ ନ ଥିଲା । ଦୁଇ ବିପରୀତ-ଧର୍ମୀ ସଂସ୍କୃତିର ଆଦାନ ପ୍ରଦାନ ଫଳରେ ଭାରତୀୟ ଜୀବନରେ ନୂତନ ଉନ୍ମେଷ ଓ ସଚେତନ ଭାବ ପ୍ରକଟିତ ହୋଇଥିଲା । ମାତ୍ର ଇଂରେଜ ଶାସନ କାଳରେ ଏକ ବିଦେଶୀ ସଂସ୍କୃତି ଓ ସାହିତ୍ୟର ଦାରୁଣ ପ୍ରଭାବ ଆର୍ଯ୍ୟ-ସଂସ୍କୃତିକୁ ହୀନପ୍ରଭ କରି ଏହି ବିଶାଳ ପରାଧୀନ ଜାତିକୁ ଆତ୍ମବିସ୍ମୃତ କରିଦେବା ଫଳରେ ଜାତୀୟ ପ୍ରଗତି ଯେପରି ପ୍ରତିହତ ହେଲା, ସେହିପରି ଜାତୀୟ ଜୀବନ ମଧ୍ୟ ହୀନବୀର୍ଯ୍ୟ ହୋଇଗଲା ।

ତେବେ ପରାଧୀନତାର ଏହି କଳଙ୍କିତ କାଳରାତ୍ରି ମଧ୍ୟରେ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ଏ ଦେଶର ସମାଜରେ ଏକ ନୂତନ ଚେତନାବୋଧ ଓ ଆତ୍ମବିଶ୍ୱାସର ସଞ୍ଚାର କଲା । ଫଳରେ ଶିଳ୍ପ, ସାହିତ୍ୟ ଓ ଶିକ୍ଷାଦିଗରୁ ଭାରତର କେତେକ ଅଞ୍ଚଳ ବହୁ ଭାବରେ ଅଗ୍ରସର ହେଲେ; ମାତ୍ର ଏ ସମ୍ପର୍କରେ ଓଡ଼ିଶାର କଥା ବିଚାର କଲେ ହତାଶ ହେବାକୁ ପଡ଼େ । ଦୀର୍ଘକାଳର ଇଂରେଜ ଶାସନ କାଳରେ ଭାରତବର୍ଷରେ ଯଦି କୌଣସି ଅଞ୍ଚଳର ମାରାତ୍ମକ କ୍ଷତି ସାଧିତ ହୋଇଥାଏ, ତେବେ ତାହା ଓଡ଼ିଆଭାଷୀ ଭୂଖଣ୍ଡର ବୋଲି ଗ୍ରହଣ କରିବାକୁ ହେବ ।

ବଙ୍ଗ ଦେଶ ଦଖଲ କରିବାର ପ୍ରାୟ ପଚାଶବର୍ଷ ପରେ ଇଂରେଜବାହିନୀ ଓଡ଼ିଶା ଅଧିକାର କରିଥିଲେ । ମାତ୍ର ସୁଦୃଢ଼ ଶାସନର ବ୍ୟବସ୍ଥା କାର୍ଯ୍ୟକାରୀ ହେବା ପୂର୍ବରୁ

ଇଂରେଜ ଶାସନସଂସ୍ଥା ବିରୁଦ୍ଧରେ ଓଡ଼ିଶାରେ ପ୍ରବଳ ବିଦ୍ରୋହ ଓ ବିକ୍ଷୋଭ ଦେଖା ଦେଇଥିଲା । ତେଣୁ ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗିଦେବାପାଇଁ ଇଂରେଜମାନେ ପ୍ରଥମରୁ ବଦ୍ଧପରିକର ହୋଇଥିଲେ । ରାଜନୈତିକ ଶାସନ-ସଂସ୍ଥା ଦୃଷ୍ଟିରୁ ଓଡ଼ିଶା ଖଣ୍ଡବିଖଣ୍ଡିତ ହୋଇ ବହୁକାଳଯାଏଁ ମାନ୍ଦ୍ରାଜ, ବଙ୍ଗଳା ଏବଂ ବିହାର ସହିତ ଜଡ଼ିତ ହୋଇ ରହିଥିଲା । ଓଡ଼ିଆଭାଷୀ ଲୋକଙ୍କର ସ୍ୱତନ୍ତ୍ର ପ୍ରଦେଶ, ବିଶ୍ୱବିଦ୍ୟାଳୟ କିମ୍ବା ହାଇକୋର୍ଟ ନ ଥିଲା । ତେଣୁ ଉଚ୍ଚ ଦରବାରରେ ଓଡ଼ିଆ ଲୋକେ ସର୍ବଦା ନ୍ୟାୟ ଆଶା କରିପାରୁ ନ ଥିଲେ । ଇଂରେଜ ଶାସନର ପ୍ରଥମ କାଳରେ କେବଳ ଅର୍ଥନୀତି ଅଥବା ଶିକ୍ଷାର ବିସ୍ତାରଦିଗରୁ ଯେ ଓଡ଼ିଆମାନେ ପଛରେ ପଡ଼ିଥିଲେ ତାହା ନୁହେ, ଓଡ଼ିଆ ଭାଷାକୁ ଲୋପ କରିଦେବା ପାଇଁ ପ୍ରବଳ ଉଦ୍ୟମ ହୋଇଥିଲା । ବିଂଶ ଶତାବ୍ଦୀର ତୃତୀୟ ଦଶକ ପର୍ଯ୍ୟନ୍ତ ଓଡ଼ିଶାରେ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେବା ସମ୍ଭବପର ହୋଇ ନ ଥିଲା ।

## ସ୍ୱାଧୀନତାର ପ୍ରଭାବ—

ସୁଖର କଥା ଯେ ସ୍ୱାଧୀନତାର ଉଜ୍ଜ୍ୱଳ ଆଲୋକରେ ଦେଶର ବହୁମୁଖୀ ବିକାଶ ପାଇଁ ନୂତନ ଆଶା ଓ ଉନ୍ମାଦନା ପ୍ରକାଶ ପାଇଅଛି । ଅନେକ ସମୟରେ ଇତିହାସର ଦୁର୍ଘଟଣାକୁ ବିସ୍ମୃତ ହୋଇ ବହୁ ସମାଲୋଚକ ଓଡ଼ିଆ ଜାତିର ଅଧଃପତନକୁ ତାଚ୍ଛଲ୍ୟ କରିଥାନ୍ତି । ମାତ୍ର ପ୍ରଗତିଚକ୍ରର ଘୂର୍ଣ୍ଣନ ଫଳରେ ଅମାବାସ୍ୟାର ଅନ୍ଧକାର ଅପସାରିତ ହୋଇ ନୂତନ ଆଲୋକ ପ୍ରତିଭାତ ହୋଇଅଛି । ଏଣିକି ଆଶା କରାଯାଇପାରେ ଯେ ଏ ଜାତିର ଶିଳ୍ପ, ସାହିତ୍ୟ ଓ ସଂସ୍କୃତିର ବିକାଶ ଅବଶ୍ୟମ୍ଭାବୀ ।

କାରଣ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଏହା ପୂର୍ବରୁ ଏ ପ୍ରଦେଶରେ ଗୋଟିଏ ମାତ୍ର ସରକାରୀ ପରିଚାଳିତ କଲେଜ ବିଦ୍ୟମାନ ଥିଲା । ମାତ୍ର ସ୍ୱାଧୀନତା ସଙ୍ଗେ ସଙ୍ଗେ ପ୍ରାୟ ପ୍ରତ୍ୟେକ ଜିଲ୍ଲା ଓ ସହରରେ ବହୁ ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଅଛି । ଓଡ଼ିଆ ପିଲାମାନଙ୍କର ଉଚ୍ଚଶିକ୍ଷାର ପଥ କ୍ରମଶଃ ସୁଗମ ହୋଇଅଛି । ବିଶ୍ୱବିଦ୍ୟାଳୟ ନେତୃତ୍ୱରେ ଗବେଷଣା ଓ ଅଧ୍ୟୟନ ପାଇଁ ଅଧିକ ବ୍ୟବସ୍ଥା ଅବଲମ୍ବିତ ହେଉଅଛି ।

## ପତ୍ରପତ୍ରିକାର ଅଭ୍ୟୁଦୟ—

ସ୍ୱାଧୀନତା ପରେ ପରେ ଓଡ଼ିଶାର ପ୍ରଗତିରେ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ବହୁ ପତ୍ରପତ୍ରିକାର ବିକାଶ । ଦିନ ଥିଲା ଯେତେବେଳେ ଏ ଦେଶର ଏକମାତ୍ର ସାହିତ୍ୟ ପତ୍ରିକାର ଗ୍ରାହକସଂଖ୍ୟା ପାଞ୍ଚଶତରୁ ଅଧିକ ହୋଇ ପାରି ନ ଥିଲା । ମାତ୍ର ସ୍ୱାଧୀନତାର ଅଳ୍ପକାଳ ମଧ୍ୟରେ ବହୁ ମାସିକ, ପାକ୍ଷିକ ଓ ସାପ୍ତାହିକ ପତ୍ର ଜନ୍ମ ଲାଭ କଲେ । ଅନେକ ପତ୍ରିକା କ୍ଷୀଣଜୀବୀ ହେଲେହେଁ ନିଜର ସ୍ୱଳ୍ପ କାଳର ସାଧନା ମଧ୍ୟରେ ବହୁ ଲେଖକଙ୍କୁ

ଜନ୍ମ ଦେଇ ଗୌରବ ଅର୍ଜନ କରିଛନ୍ତି । ରବିବାର ପ୍ରଜାତନ୍ତ୍ର, ଝଙ୍କାର, ଡଗର, କୁଙ୍କୁମ, ଆସନ୍ତାକାଲି ଭଳି ପତ୍ରପତ୍ରିକା ନୂତନ ଲେଖକମାନଙ୍କୁ ଉତ୍ସାହିତ କରି ଏକ ନୂତନ ସାହିତ୍ୟ-ସମାରୋହ ସୃଷ୍ଟିକଲେ, ପୁନଶ୍ଚ ପୂର୍ବର ଗତାନୁଗତିକତାକୁ ଏଡ଼ିଦେଇ ଏ ଯୁଗର ପତ୍ରପତ୍ରିକା କଥାବସ୍ତୁ, ବିଷୟନିର୍ବାଚନ ତଥା ପ୍ରକାଶ ପରିପାଟୀରେ ବୈଚିତ୍ର୍ୟ ଓ ନୂତନ ଦୃଷ୍ଟିଭଙ୍ଗୀ ସୃଷ୍ଟି କଲେ । ଆଧୁନିକ ସାହିତ୍ୟସୃଷ୍ଟିରେ ପତ୍ରପତ୍ରିକାର ଦାନ ଉଲ୍ଲେଖଯୋଗ୍ୟ ।

## ପଞ୍ଚବାର୍ଷିକ ଯୋଜନା ଓ ଶିଳ୍ପ ବିପ୍ଳବ—

ଏ ଯୁଗ ହେଉଛି ପରିକଳ୍ପନାର ଯୁଗ । ଯୋଜନା ମାଧ୍ୟମରେ ଦେଶର ବିକାଶପାଇଁ ଉଦ୍ୟମ ସ୍ୱାଧୀନତା ଯୋଗୁଁହିଁ ସମ୍ଭବ ହୋଇଅଛି । ଦେଶର ବିଭିନ୍ନ ସ୍ଥଳରେ ବହୁ କ୍ଷୁଦ୍ର ଓ ବୃହତ୍ ଶିଳ୍ପ ପ୍ରତିଷ୍ଠିତ ହୋଇଅଛି । ବିଦ୍ୟୁତ୍ ଶକ୍ତି ଉତ୍ପାଦନ ପାଇଁ ବହୁ ବଡ଼ ବଡ଼ ଯୋଜନା କାର୍ଯ୍ୟକାରୀ ହେଉଅଛି । କୃଷିବହୁଳ ଭାରତବର୍ଷରେ ଏକପ୍ରକାର ଶିଳ୍ପବିପ୍ଳବ ଆରମ୍ଭ ହୋଇଛି କହିଲେ ଚଳେ । ଦେଶର ଚତୁର୍ଦ୍ଦିଗରେ ଉନ୍ନତ ଧରଣର ରାସ୍ତା, ପୋଲ, ନିର୍ମିତ ହେବା ଫଳରେ ଦେଶର ଅଭ୍ୟନ୍ତର ସହିତ ସମ୍ପର୍କ ସ୍ଥାପନ ସହଜ ହୋଇଅଛି ।

ପଲ୍ଲୀ ଜୀବନରେ ପୂର୍ବର ସେ ଅଜ୍ଞତା ଆଉ ନାହିଁ । ନଗର ଓ ପଲ୍ଲୀ ଜୀବନର ଭାବର ଆଦାନ ପ୍ରଦାନ ଫଳରେ ଜନସାଧାରଣଙ୍କର ଚିନ୍ତାଧାରା ସୀମିତ ନୁହେଁ । ନୂତନ ଜୀବନର ଅବବୋଧ ପାଇଁ ସେମାନେ ଆଜି ବ୍ୟାକୁଳ । ମାତୃଭାଷାରେ କେତେଗୋଟି ଦୈନିକ ପତ୍ରିକାର ବହୁଳ ପ୍ରଚାର ଏ ଯୁଗରେ ଜନଜାଗୃତି ଓ ଜନଶିକ୍ଷା ପାଇଁ ଯଥେଷ୍ଟ ପ୍ରେରଣା ଦେଉଅଛି । ଶିକ୍ଷାନୁଷ୍ଠାନର ଉତ୍ଥାନ ଫଳରେ ଶ୍ରମିକ-ଜୀବନର ମାନଦଣ୍ଡ କିଞ୍ଚିତ୍ ଉନ୍ନତ ହୋଇଅଛି । ତେଣୁ ସେ ଆଜି ତାହାର ଅର୍ଜିତ ଆୟର କେତେକାଂଶ ଶିକ୍ଷା ଓ ସାହିତ୍ୟ ଦିଗରେ ବ୍ୟୟ କରିବାକୁ କୁଣ୍ଠିତ ନୁହେଁ । ତେଣୁ ଆମ ଦେଶରେ ଶିକ୍ଷାର ପ୍ରସାର ପାଇଁ ଯେପରି ଆଗ୍ରହ ପ୍ରକାଶ ପାଇଅଛି ପତ୍ରପତ୍ରିକା ଏବଂ ପ୍ରକାଶିତ ପୁସ୍ତକର ପ୍ରଚାର ପାଇଁ ମଧ୍ୟ ସେତିକି କ୍ଷେତ୍ର ପ୍ରସ୍ତୁତ ହୋଇଅଛି ।

## ସରକାରୀ ପୃଷ୍ଠପୋଷକତା ଓ ପ୍ରଚାର ବିଭାଗ—

ବର୍ତ୍ତମାନର ସରକାରଙ୍କ ଆନୁକୂଲ୍ୟରେ ବହୁ ପୁସ୍ତକ ପ୍ରକାଶିତ ଅଥବା ପୁରସ୍କୃତ ହେଉଅଛି । ବିଭିନ୍ନ ପ୍ରକାର ପୁସ୍ତକ ରଚନାର ମାନବୃଦ୍ଧି କରିବାପାଇଁ ସରକାରଙ୍କ ତରଫରୁ ଉତ୍ସାହ ପ୍ରଦାନ କରାଯାଉଅଛି । ସାହିତ୍ୟର ବିକାଶ ଦିଗରେ ଅଧିକ ଯତ୍ନବାନ୍ ହେବାପାଇଁ ସରକାରୀ ପ୍ରଚେଷ୍ଟାରେ ସାହିତ୍ୟ ଏକାଡେମି ଭଳି ଅନୁଷ୍ଠାନ କାର୍ଯ୍ୟ କରୁଅଛି । ଏହାଛଡ଼ା ସରକାରଙ୍କ ବିଭିନ୍ନ କାର୍ଯ୍ୟବିଭାଗ ମାଧ୍ୟମରେ ଅସଂଖ୍ୟ ପ୍ରଚାରପତ୍ର ପୁସ୍ତିକା ଏବଂ ପତ୍ରପତ୍ରିକା ପ୍ରକାଶିତ ହେଉଅଛି । ଏକପ୍ରକାର ପ୍ରଚାରମୂଳକ ରଚନା ସାହିତ୍ୟର ମାପକାଠିରେ ଗ୍ରାହ୍ୟ ନ ହେଲେ ହେଁ ଏ ଯୁଗର ସାହିତ୍ୟସୃଷ୍ଟିକୁ ତାହା ପ୍ରକାରାନ୍ତରେ ପ୍ରଭାବିତ କରୁଛି ବୋଲି ସ୍ୱୀକାର କରିବାକୁ ହେବ ।

**ଆଧୁନିକ ସାହିତ୍ୟର ନୂତନ ରୂପ—**

ସଂଖ୍ୟାଦିଗରୁ ନ ହେଲେ ହେଁ ମୂଲ୍ୟବୋଧ ଦୃଷ୍ଟିରେ କେତେକ ବିଭାଗରେ ଓଡ଼ିଆ ସାହିତ୍ୟ ଅନ୍ତତଃ ଅବହେଳିତ ନୁହେଁ । ସ୍ୱାଧୀନତା ପର ଓଡ଼ିଆ ସାହିତ୍ୟରେ ଅନୁବାଦ, ସମାଲୋଚନା, ବିଜ୍ଞାନ ଏବଂ ଭ୍ରମଣ କାହାଣୀର ଉଲ୍ଲେଖଯୋଗ୍ୟ ସଂଯୋଗ ହୋଇଅଛି । ସ୍ୱାଧୀନଦେଶର ବହୁ ସରକାରୀ କର୍ମଚାରୀ, ଶିକ୍ଷକ, ଛାତ୍ର ଓ ଗବେଷକ ବିଦେଶ ଭ୍ରମଣର ସୁଯୋଗ ଲାଭ କରି ସେମାନଙ୍କର ମହାର୍ଘ ଅନୁଭୂତିକୁ ଲିପିବଦ୍ଧ କରିବା ଫଳରେ ଆମର ଭ୍ରମଣ-ସାହିତ୍ୟ ବିଭାଗଟି କ୍ରମଶଃ ସମୃଦ୍ଧ ହେଉଅଛି । ସେହିପରି ଉତ୍କଳ ବିଶ୍ୱବିଦ୍ୟାଳୟ, ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ, ଶାନ୍ତିନିକେତନର ଓଡ଼ିଆ ଗବେଷଣା ବିଭାଗ, ଓଡ଼ିଶା ମିଉଜିୟମ ଏବଂ ସର୍ବୋପରି ଝଙ୍କାର ଏବଂ ଡଗର ପତ୍ରିକା ମଧ୍ୟରେ ବହୁ ଉଚ୍ଚ-କୋଟୀର ଐତିହାସିକ, ସାଂସ୍କୃତିକ, ଅର୍ଥନୈତିକ ସମାଲୋଚନା ଓ ଗବେଷଣାମୂଳକ ରଚନା ପ୍ରକାଶିତ ହୋଇ ଜାତୀୟ ସାହିତ୍ୟର ଉନ୍ନତି ବିଧାନ କରିଅଛି । ବିଶେଷତଃ ବିଜ୍ଞାନସଂପର୍କୀୟ ପୁସ୍ତକ ସଂକଳନରେ ବିଜ୍ଞାନ ପ୍ରଚାରସମିତିର ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ । ସେହିପରି ଗତ କେତେବର୍ଷ ମଧ୍ୟରେ ବିଶ୍ୱସାହିତ୍ୟର ବହୁ ଉଚ୍ଚକୋଟୀର ଉପନ୍ୟାସ, ନାଟକ, କାହାଣୀ, କାବ୍ୟ, କବିତା ପ୍ରଭୃତି ଓଡ଼ିଆଭାଷାରେ ଭାଷାନ୍ତରିତ ହୋଇ ନୂତନ ଆଶାର ସଞ୍ଚାର କରିଅଛି ।

ଆଧୁନିକ ସାହିତ୍ୟର ଅନ୍ୟ ଏକ ବିଭାଗ ହେଉଛି ଶିଶୁସାହିତ୍ୟ । ଏ ଦିଗରେ ଆଶାତୀତ ସଫଳତା ହାସଲ ହୋଇ ନ ଥିଲେହେଁ ସୃଷ୍ଟିଦିଗରୁ ଉଦ୍ୟମ ମନ୍ଥର ହୋଇ ନାହିଁ । ଏକାଦିକ୍ରମେ ଏକାଧିକ ସୁରୁଚିପୂର୍ଣ୍ଣ ଶିଶୁ ପତ୍ରିକା ପ୍ରକାଶିତ ହେବା ସୌଭାଗ୍ୟର କଥା । ଏତଦ୍‌ବ୍ୟତୀତ ବିଭିନ୍ନ ଶିରୋନାମାରେ ଶିଶୁଉପଯୋଗୀ କାହାଣୀ, ଗଳ୍ପ, କବିତା, ଜୀବନୀ, ଜ୍ଞାନବିଜ୍ଞାନ ଇତ୍ୟାଦି ସଂପର୍କୀୟ ପୁସ୍ତକ ପ୍ରକାଶିତ ହେଉଅଛି । କେତେବର୍ଷତଳେ ଏ ଦିଗରେ ଆମ ସାହିତ୍ୟରେ କିଛି ନ ଥିଲା କହିଲେ ଚଳେ । ଆନ୍ତର୍ଜାତିକ ସାହିତ୍ୟ ସହିତ ସମାନ ପଦକ୍ଷେପ ଗ୍ରହଣ କରି ଆଧୁନିକ ଓଡ଼ିଆ ସାହିତ୍ୟରେ ସମସ୍ୟାମୂଳକ ଏବଂ ମନସ୍ତାତ୍ତ୍ୱିକ ରଚନାର ବିକାଶ ସମ୍ଭବ ହେଉଅଛି ।

**ଆମର ସାଂପ୍ରତିକ ସମସ୍ୟା—**

ଆଧୁନିକ ସମାଜରେ ବହୁପରିମାଣରେ ଦୋଷଦୁଷ୍ଟ, ଯୌନବିକାରଗ୍ରସ୍ତ ଓ ଅତ୍ୟନ୍ତ ଶସ୍ତା ମନୋଭାବପୂର୍ଣ୍ଣ ଉପନ୍ୟାସର ବହୁଳ ପ୍ରଚାର ହେଉଅଛି । ଆଧୁନିକ ଜୀବନର ବିଚଳିତ ଓ ବିକାରଗ୍ରସ୍ତ ମନୋଭାବ ପାଇଁ ଏ ପ୍ରକାର ସାହିତ୍ୟ ଓ ଉଚ୍ଛୃଙ୍ଖଳ ଭାବଦ୍ୟୋତକ ଚଳଚ୍ଚିତ୍ର ବହୁ ପରିମାଣରେ ଦାୟୀ ।

ଆଧୁନିକ କବିତା ଅତ୍ୟନ୍ତ ଦୁର୍ବୋଧ । ମନେହୁଏ, ଅତିରିକ୍ତ ପରିମାଣରେ ଗୌଣ ମନୋଭାବ, ଅନୁକରଣପ୍ରବୃତ୍ତି, ପାଶ୍ଚାତ୍ୟ ମାପକାଠିରେ ଆଧୁନିକତାର ବିଚିତ୍ର ମୋହଯୋଗୁ ଆଧୁନିକ କବିତାର ଲେଖକଗଣ ଦୁର୍ବୋଧ ହେବା ସଙ୍ଗେ ସଙ୍ଗେ ଅର୍ଥଓଭା-

ମୂଳକ ରଚନା ପାଇଁ ଆଗ୍ରହୀ ହୁଅନ୍ତି । ଅଳ୍ପ କେତେକ ପଣ୍ଡିତ କବିଙ୍କୁ ଛାଡ଼ିଦେଲେ ଅଧିକାଂଶ ଆଧୁନିକମନ୍ୟ କବି କେବଳ ବିଶୃଙ୍ଖଳ ହୋଇଛନ୍ତି ବୋଲି କୁହାଯାଇ ପାରେ ।

ଆଧୁନିକ ଜୀବନ ଅତ୍ୟନ୍ତ ଜଟିଳ । ଜୀବନସଂଗ୍ରାମର ଘନଘଟା ମଧ୍ୟରେ ବହୁ ତରୁଣ ଲେଖକର ସବୁଜ ସ୍ୱପ୍ନ ମ୍ରିୟମାଣ ହୋଇଯାଉଛି । ନିରବଚ୍ଛିନ୍ନ ସାଧନା ସମ୍ଭବପର ହେଉ ନାହିଁ । ଜୀବନର ମାନଦଣ୍ଡ-ବୃଦ୍ଧି ଏବଂ ଅର୍ଥ-ସର୍ବସ୍ୱ ସମାଜରେ ପ୍ରତିଷ୍ଠାର କାମନା ବହୁ ପ୍ରବୀଣ ଓ ଶକ୍ତିଶାଳୀ ଲେଖକଙ୍କୁ ସାରସ୍ୱତ ପୀଠରୁ ଟାଣିନେଇ ଲକ୍ଷ୍ମୀଙ୍କର ଆନୁଗତ୍ୟ ସ୍ୱୀକାର କରିବାର ଦେଖା ଯାଉଅଛି ।

ରାଜନୀତି ପ୍ରବୃତ୍ତିମୁଖୀ ସହଜ ମନୋଭାବ ସାହିତ୍ୟିକର ଜୀବନକୁ ଦିଗ୍‌ଭ୍ରାନ୍ତ କରୁଅଛି । ସମୟେ ସମୟେ ଜାତିଆଣ ମନୋଭାବ ପବିତ୍ର ସାହିତ୍ୟ ସାଧନାରେ ବିଶୃଙ୍ଖଳବୋଧ ଉତ୍ଥାପିତ କରିବା ଜଣାଯାଏ । ତେବେ ଏ ସବୁ ବିସମ୍ବାଦ ମଧ୍ୟରେ ଓଡ଼ିଆ ଲେଖକର ପ୍ରାଣରେ ଆତ୍ମବିଶ୍ୱାସ ଫେରି ଆସୁଛି । ଏ ଦେଶରେ ଶିକ୍ଷା ଓ ସଂସ୍କୃତିର ବିକାଶ ପାଇଁ ସ୍କୁଲ, କଲେଜ, ପତ୍ରପତ୍ରିକା ଅଥବା ପୁସ୍ତକାଳୟର ଯେତିକି ଆବଶ୍ୟକତା ରହିଛି, ତାହାଠାରୁ ଅଧିକ ପ୍ରୟୋଜନ ପୁସ୍ତକ କିଣିବାର ମନୋଭାବ । ତେଣୁ ଆଜି ଘରେ ଘରେ ପୁସ୍ତକ-ଆନ୍ଦୋଳନ ଆବଶ୍ୟକ ।

ଆଧୁନିକ ସମାଜର ବହୁ ନ୍ୟସ୍ତ-ସ୍ୱାର୍ଥ ଅନୁଷ୍ଠାନ ଓ ଶକ୍ତିଶାଳୀ ବ୍ୟକ୍ତି ଅର୍ଥର ପ୍ରଲୋଭନ ଦେଇ ବାଣୀପୁତ୍ରଙ୍କୁ ବନ୍ଦୀ କରିବାକୁ ବ୍ୟଗ୍ର । ଅବଶ୍ୟ ଦାରିଦ୍ର୍ୟର ପୀଡ଼ନ ମଧ୍ୟରେ ମନ ସଂକୁଚିତ ହେଲେ ଏ ପ୍ରକାର ଲାଳସା ଲେଖକକୁ ପରାଜିତ କରେ । ଲେଖକର ଜୀବନରେ ଅର୍ଥର ଆବଶ୍ୟକ । କାରଣ ସେ ଏହି ଅର୍ଥ-ସର୍ବସ୍ୱ ବସ୍ତୁବାଦୀ ସମାଜର ଜଣେ ଚେତନଶୀଳ ସଭ୍ୟ । ମାତ୍ର ସାହିତ୍ୟର ସୁସ୍ଥୁ ବିକାଶ ପାଇଁ ଲେଖକ ଅର୍ଥ ଚାହେଁ ନାହିଁ, ସେ ଚାହେଁ ସ୍ୱୀକୃତି ଓ ସମ୍ମାନ । ଯେଉଁ ରାଷ୍ଟ୍ର ଓ ସମାଜ ତା'ର ଲେଖକକୁ ଯେତିକି ପରିମାଣରେ ଏହି ସ୍ୱୀକୃତି ଓ ସମ୍ମାନ ପ୍ରଦାନ କରିଛି, ତାହାର ବିନିମୟରେ ସେ ସମାଜ ଓ ରାଷ୍ଟ୍ର ଲେଖକର ସର୍ଜନା ସ୍ୱପ୍ନରେ ସେତିକି ପ୍ରାଣବନ୍ତ ଓ ଶକ୍ତିଶାଳୀ ହୋଇଅଛି ।

# ଭଞ୍ଜ ସାହିତ୍ୟରେ ପ୍ରକୃତି

ଭାରତର ସଭ୍ୟତା ହେଉଛି ଉପବନର ସଭ୍ୟତା । ନିବିଡ଼ ଅରଣ୍ୟ ପ୍ରକୃତି କୋଳରେ ଭାରତର ଆର୍ଯ୍ୟ ମହର୍ଷିଗଣ ସଭ୍ୟତା ଓ ସମାଜର ବିକାଶ ପାଇଁ କାଳ କାଳ ଧରି ସାଧନା କରି ଆସିଥିଲେ । ତେଣୁ ଭାରତୀୟ ସାହିତ୍ୟ ଓ ସଭ୍ୟତା ଅରଣ୍ୟ ପ୍ରକୃତିଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଥିବା ଜଣାଯାଏ । ବେଦ ପୁରାଣଠାରୁ ଆରମ୍ଭ କରି କାବ୍ୟ ନାଟକ ପର୍ଯ୍ୟନ୍ତ ପ୍ରକୃତିର ବିଚିତ୍ର ବର୍ଣ୍ଣସମ୍ଭାର କବି ଓ ଲେଖକମାନଙ୍କୁ ପ୍ରେରଣା ପ୍ରଦାନ କରିଛି, ଉଦ୍‌ବେଳିତ ମଧ କରିଛି । ତେଣୁ ସବୁ କାଳରେ ସାହିତ୍ୟରେ ପ୍ରକୃତିର ପ୍ରାଧାନ୍ୟ ଖୁବ୍ ବେଶି ।

ପୁନଶ୍ଚ ମନୁଷ୍ୟ ପ୍ରକୃତି କୋଳରେ ଜନ୍ମଗ୍ରହଣ କରେ, ତାହାରି ଅବହାଉଆ ମଧ୍ୟରେ ଆତଯାତ ଓ ପରିପୁଷ୍ଟ ହୁଏ । ଶେଷରେ ସେହି ପ୍ରକୃତି କୋଳରେ ତାହାର ପଞ୍ଚଭୂତ ଆତ୍ମା ବିଲୀନ ହୋଇଯାଏ । ତେଣୁ ପ୍ରକୃତି ସଂସାର ସହିତ ମନୁଷ୍ୟସମାଜର ସମ୍ପର୍କ ଅତି ନିବିଡ଼ । ପ୍ରକୃତି-ସଂସାରରେ ନିରବଚ୍ଛିନ୍ନ ଭାବରେ ଏକ ବିଚିତ୍ର ସ୍ରୋତ କେଉଁ ଅନାଦି କାଳରୁ ପ୍ରବାହିତ ହେଉଛି । ଏହି ବହମାନ ସ୍ରୋତର ଯେପରି ବିଶ୍ରାମ ନାହିଁ । ମନୁଷ-ସଂସାର ମଧ୍ୟରେ ସେହିଭଳି ପ୍ରକୃତି-ସଂସାର ସହିତ ଏକ ନିରବଚ୍ଛିନ୍ନ ଯୋଗସୂତ୍ର ସ୍ଥାପିତ ହୋଇଛି । କେଉଁ ଏକ ଅଦୃଶ୍ୟ ଶକ୍ତି ପ୍ରକୃତି-ସଂସାରକୁ ସର୍ଜନା ଓ ପାଳନ କରୁଅଛି, ଠିକ୍ ସେହିପରି ଏକ ଅଦୃଶ୍ୟ ଶକ୍ତିର ଇଙ୍ଗିତରେ ମନୁଷ୍ୟ ପ୍ରକୃତି ପାଗଳ ହେବା ସ୍ୱାଭାବିକ ହୋଇପଡ଼େ ।

ସେଥିପାଇଁ ସୂର୍ଯ୍ୟ ଉଦିତ ହୁଏ, ସନ୍ଧ୍ୟା-ଆକାଶରେ ଅସଂଖ୍ୟ ତାରକାବଳୀର ମେଳା ମଧ୍ୟରେ ଶୁଭ୍ର ଚନ୍ଦ୍ରମା ହସି ଉଠେ । ବସନ୍ତର ମୃଦୁମନ୍ଦ ହିଲ୍ଲୋଳରେ କୋଇଲିର ପଞ୍ଚମ ତାନ ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହୁଏ । ତରଙ୍ଗାୟିତ ସାଗରର ରୁଦ୍ର ସୁନ୍ଦର ରୂପ ତାହାର ନିର୍ଜନ ବାଲୁକା ପ୍ରଦେଶରେ ଅପୂର୍ବ ଭାଷାରେ କଥା କହେ । ଗ୍ରୀଷ୍ମ, ବର୍ଷା, ଶୀତ ଭଳି ଋତୁମାନଙ୍କର ଆତଯାତ ମଧ୍ୟରେ ପୃଥିବୀ ପୃଷ୍ଠରେ କେତେ ବିଚିତ୍ର ଲୀଳା ସୃଷ୍ଟି ହୁଏ । କେଉଁ ଆଦିମ କାଳରୁ ମନୁଷ୍ୟ ପ୍ରକୃତିର ଏହି ରୂପକ-ସଜ୍ଜା ଦେଖି ମୁଗ୍‌ଧ ଦୃଷ୍ଟିରେ ଚାହିଁ ଆସିଛି । ପ୍ରକୃତି କେତେବେଳେ ତାଙ୍କୁ ବିସ୍ମୟ ପ୍ରଦାନ କରିଛି, କେତେବେଳେ ଚମକିତ କରିଛି, କେତେବେଳେ ଅବା ଅପୂର୍ବ ଶ୍ରୀ ସମ୍ପାଦନ କରି ମୁଗ୍‌ଧ କରାଇଛି । ତେଣୁ ପ୍ରକୃତିକୁ ମନୁଷ୍ୟ କେତେବେଳେ ରୁଦ୍ର ଭାବରେ ସ୍ତବ କରିଛି ତ କେତେବେଳେ ପ୍ରେୟସୀ ଭାବରେ ସ୍ୱାଗତ କରିଛି । କିନ୍ତୁ ସର୍ବଦା ପ୍ରକୃତି ସହିତ ମନୁଷ୍ୟର

ଏକ ନିବିଡ଼ ସମ୍ପର୍କର ସୂଚନା ମିଳିଥାଏ । ତାହାରି ଫଳରେ ସଂସ୍କୃତ ସାହିତ୍ୟରେ ମେଘଦୂତ, ଋତୁସଂହାର ଭଳି ସର୍ବଯୁଗମର୍ଯ୍ୟାଦା ପ୍ରକୃତିକାବ୍ୟରେ ସୃଷ୍ଟି ସମ୍ଭବ ହୋଇଅଛି ।

ଓଡ଼ିଆ ସାହିତ୍ୟର କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ପ୍ରକୃତି ବର୍ଣ୍ଣନା ସମ୍ପର୍କରେ ଆଲୋଚନା କଲାବେଳେ ଉପର୍ଯ୍ୟୁକ୍ତ ମତାମତ ପ୍ରତି ଧ୍ୟାନ ଦେବା ଉଚିତ । ଯୁଗର ରୁଚି ଓ ଆଦର୍ଶକୁ ନେଇ ସାହିତ୍ୟର ମାନଦଣ୍ଡ ବିଗ୍ରହ କରି ଯାଇଥାଏ । ଉପେନ୍ଦ୍ର ଭଞ୍ଜ ଯେଉଁ ସମୟରେ କାବ୍ୟ କବିତା ଆଲୋଚନା ଓ ରଚନା କରୁଥିଲେ, ସେତେବେଳେ ସାମାଜିକ ପୃଷ୍ଠଭୂମି ଓ ସାହିତ୍ୟିକ ଆଦର୍ଶକୁ ବିଗ୍ରହକୁ ନ ଆଣି ଅନେକ ସମାଲୋଚକ ତାଙ୍କ ସମ୍ପର୍କରେ ନାନା ଅସଙ୍ଗତ ମତ ପୋଷଣ କରି ଥାଆନ୍ତି । କଲିକତା ବିଶ୍ୱବିଦ୍ୟାଳୟ ତରଫରୁ ପ୍ରକାଶିତ ଓଡ଼ିଆ ସାହିତ୍ୟର ପରିଚୟ ଗ୍ରନ୍ଥର ଭୂମିକାରେ ସମ୍ପାଦକ ବିଜୟଚନ୍ଦ୍ର ମଜୁମଦାର ଭଞ୍ଜଙ୍କ ପ୍ରକୃତି ବର୍ଣ୍ଣନା ସମ୍ପର୍କରେ ଏହିପରି ଏକ ଶସ୍ତା ମତ ପ୍ରକାଶ କରିଅଛନ୍ତି । ସେ କହନ୍ତି ଯେ "ଉପେନ୍ଦ୍ର ଭଞ୍ଜ କେବଳ ନାୟକ-ନାୟିକାଙ୍କର ଲୀଳାଖେଳା ବର୍ଣ୍ଣନା କରିବାରେ ସର୍ବଦା ବ୍ୟସ୍ତ ରହି ଅନ୍ୟାନ୍ୟ ବିଷୟ ପ୍ରତି ଆଦୌ ଦୃଷ୍ଟି ଦେଇ ପାରି ନାହାନ୍ତି । ତେଣୁ ବର୍ଣ୍ଣାଢ଼୍ୟ ଉତ୍କଳ ପ୍ରକୃତି କୋଳରେ ଜନ୍ମ ଗ୍ରହଣ କରି ମଧ୍ୟ କବି ଉପେନ୍ଦ୍ର ଭଞ୍ଜ ପ୍ରକୃତି ବର୍ଣ୍ଣନା ପ୍ରତି ଉଦାସୀନ ହୋଇଛନ୍ତି ।" ମାତ୍ର ଏପରି ଉକ୍ତି ଠିକ୍ ନୁହେଁ । ଭଞ୍ଜେ ଯେଉଁ ସମୟରେ ଲେଖନୀ ଧାରଣ କରିଥିଲେ, ସେତେବେଳେ ଓଡ଼ିଆ ସାହିତ୍ୟର ଆଦର୍ଶ ଥିଲା ସଂସ୍କୃତ ସାହିତ୍ୟ । ସଂସ୍କୃତ ଅଳଂକାରିକଗଣ କାବ୍ୟ ରଚନା କରିବାପାଇଁ ଯେଉଁ ଭାବରେ ନିର୍ଦ୍ଦେଶ ଦେଇଛନ୍ତି, ସେହି ଅନୁକ୍ରମେ କବିମାନେ କାବ୍ୟ ରଚନା କରୁଥିଲେ । ପଣ୍ଡିତ-କବି ଉପେନ୍ଦ୍ର ଅତି ବିଶ୍ୱସ୍ତ ଭାବରେ ପ୍ରାଚୀନ ଆଲଙ୍କାରିକ ଆଦର୍ଶ ଅନୁସରଣ କରି କାବ୍ୟ ରଚନା କରିଛନ୍ତି । ପ୍ରାଚୀନ ଆଲଙ୍କାରିକ ଆଦର୍ଶ ହେଉଛି କାବ୍ୟ ଓ ମହାକାବ୍ୟମାନଙ୍କର କବିମାନେ ପ୍ରକୃତିଚିତ୍ରଣ କଲାବେଳେ ସନ୍ଧ୍ୟା, ପ୍ରଭାତ, ନଦୀ, ସାଗର, ହ୍ରଦ, ସୂର୍ଯ୍ୟ, ଚନ୍ଦ୍ର, ଦିବସ, ଅନ୍ଧକାର, ମଧ୍ୟାହ୍ନ, ମୃଗୟା, ପର୍ବତ, ଋତୁ, ବନ ପ୍ରଭୃତିର ବର୍ଣ୍ଣନା କରି ପାରିବେ । ଉପେନ୍ଦ୍ର ଭଞ୍ଜ ପ୍ରସଙ୍ଗୋଚିତ ଭାବରେ ଉପର୍ଯ୍ୟୁକ୍ତ ବିଷୟଗୁଡ଼ିକର ଅଧିକାଂଶର ଯଥାଯଥ ବର୍ଣ୍ଣନା କରିଛନ୍ତି । ପ୍ରସଙ୍ଗକ୍ରମେ ସେ ସବୁର କିଞ୍ଚିତ ଆଲୋଚନା କେବଳ ଏଠାରେ ସମ୍ଭବ ଉପେନ୍ଦ୍ର ଭଞ୍ଜଙ୍କ ପ୍ରକୃତି ସମ୍ପର୍କରେ ଆଲୋଚନା କରିବାକୁ ଗଲାବେଳେ ଆଉ ଏକ ବିଷୟ ପ୍ରତି ମଧ୍ୟ ଧ୍ୟାନ ଦେବା ଉଚିତ । ସେ ହେଉଛନ୍ତି ମଧ୍ୟଯୁଗର କବି । ଆଧୁନିକ ସାହିତ୍ୟରେ ପ୍ରକୃତିବର୍ଣ୍ଣନାରେ ଲେଖକମାନଙ୍କର ଯେପରି ନୂତନ ଦୃଷ୍ଟିକୋଣ ପ୍ରକାଶ ପାଇଛି, ସେହି ଦୃଷ୍ଟିଭଙ୍ଗୀ ଭଞ୍ଜ ସାହିତ୍ୟରେ ଖୋଜି ବସିବା ବିଡ଼ମ୍ବନା ମାତ୍ର । ଇଂରେଜ ସାହିତ୍ୟରେ ରୋମାଣ୍ଟିକ୍ ଯୁଗର ଅଭ୍ୟୁଦୟ ପରେ କବିମାନେ ପ୍ରକୃତି-ସଂସାରକୁ ନୂତନ ଭାବରେ ଉପଲବ୍ଧି କରିବାକୁ ଲାଗିଲେ । ସେମାନେ ପ୍ରକୃତିକୁ କେବଳ ରୂପ, ରସ, ଗନ୍ଧର ସମନ୍ୱୟ ବୋଲି ବିଗ୍ରହ ନ ଥିଲେ କିମ୍ବା ଗଛ, ଲତା, ବଣ, ପାହାଡ଼, ହ୍ରଦ, ବନାନୀ ପ୍ରଭୃତିର ସମାହାର ବୋଲି କଳ୍ପନା କରି ନ ଥିଲେ ।

ପ୍ରକୃତି ସେମାନଙ୍କ ଚକ୍ଷୁରେ ନୂତନ ରୂପରେ ପ୍ରତିଭାତ ହେଲା । ସେମାନେ ବାହ୍ୟ ବର୍ଣ୍ଣାଢ୍ୟ ପ୍ରକୃତିରେ ନିଜକୁ ସୀମିତ ନ ରଖି ଅନ୍ତଃପ୍ରକୃତିର ରହସ୍ୟ ଉଦ୍‌ଘାଟନ କରିବାକୁ ଲାଗିଲେ । ପ୍ରକୃତି ସେମାନଙ୍କ ଚକ୍ଷୁରେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଭାବରେ ପ୍ରତିଭାତ ହେଲା । ଏହିଭଳି ଦୃଷ୍ଟିଭଙ୍ଗୀକୁ ଇଂରେଜୀରେ କୁହାଯାଏ subjective । ଉପେନ୍ଦ୍ର ଭଞ୍ଜ ଯୁଗାଦର୍ଶକୁ ଅବଲମ୍ବନ କରି objective ଦୃଷ୍ଟିଭଙ୍ଗୀ ଦେଇ ପ୍ରକୃତିକୁ ଉପଭୋଗ କରିଛନ୍ତି ଅର୍ଥାତ୍ ବାହ୍ୟ ବାସ୍ତବ ପ୍ରକୃତିର ରୂପାୟନ ତାଙ୍କ କାବ୍ୟକବିତାରେ ଅତି ଚମତ୍କାର ଭାବରେ ସମ୍ଭବ ହୋଇଛି ।

ଏତଦ୍‌ବ୍ୟତୀତ ଭଞ୍ଜ ସାହିତ୍ୟର ପ୍ରକୃତି ବର୍ଣ୍ଣନାର ଆଲୋଚନା ପ୍ରସଙ୍ଗରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ମଧ୍ୟ ସ୍ମରଣ କରିବାର କଥା । ଭଞ୍ଜ ସାହିତ୍ୟ ହେଉଛି ସଂପୂର୍ଣ୍ଣ ଭାବରେ ଭୋଗାବଳୀ କବିତାର ଅନ୍ତର୍ଗତ । ବିଭିନ୍ନ ଋତୁଭେଦରେ ଭୋଗୀ ଓ କାମୀ ପୁରୁଷଗଣ କେଉଁ କେଉଁ ବସ୍ତୁକୁ ଭଲ ପାଆନ୍ତି, ପ୍ରିୟତମା କେଉଁ ବସ୍ତୁ ସାହାଯ୍ୟରେ ତାହାର ହୃଦୟ-ଦେବତାର ଅର୍ଚ୍ଚନା କରି ନିଜକୁ ଧନ୍ୟ ମନେକରେ, କେଉଁ ଋତୁର ଭୂମିକାର ଅନ୍ତରାଳରେ ନାୟକ-ନାୟିକାମାନଙ୍କର ମିଳନ ଓ ବିରହ ଅନୁଭୂତି ଅଧିକ ପ୍ରାଣସ୍ପର୍ଶୀ ହୁଏ, ଏ ସମସ୍ତ ଘଟଣା ଭୋଗମୟ ସାହିତ୍ୟରେ ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଥାଏ । ଉପେନ୍ଦ୍ରଭଞ୍ଜ ମଧ୍ୟ ସେହି ଆଦର୍ଶର ଅନୁରୋଧରେ ନିଜର ପ୍ରକୃତିବର୍ଣ୍ଣନା କରିଅଛନ୍ତି । ଆଧୁନିକ କବି ଅନେକ ସମୟରେ ପ୍ରକୃତି-ପ୍ରାଣତାର ବଶବର୍ତ୍ତୀ ହୋଇ ଅପୂର୍ବ ପ୍ରକୃତି-ରସାଣିତ କାବ୍ୟ-କବିତା ସୃଷ୍ଟି କରି ଥାଆନ୍ତି । ମାତ୍ର ଉପେନ୍ଦ୍ର ଭଞ୍ଜ କୌଣସିଠାରେ କେବଳ ପ୍ରକୃତି ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ ଲେଖନୀ ଧାରଣ କରି ନାହାନ୍ତି । ନାୟକ-ନାୟିକାଙ୍କର ଭୋଗମୟ ପରିବେଷ୍ଟନୀକୁ ସାହାଯ୍ୟ କରିଭଳି ପଟ୍ଟଭୂମି ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେ ତାଙ୍କର ବିଭିନ୍ନ ପୁସ୍ତକରେ ଋତୁର ବୈଚିତ୍ର୍ୟ, ସନ୍ଧ୍ୟା, ପ୍ରଭାତ, ସରୋବର, କାନନ ପ୍ରଭୃତି ଅଭିନବ ବର୍ଣ୍ଣନା ପ୍ରଦାନ କରିଛନ୍ତି ।

ପୁନଶ୍ଚ ସେ ଯୁଗର ସାହିତ୍ୟରେ ଆଲଙ୍କାରିକତା ପ୍ରଦର୍ଶନ କରିବା ଥିଲା କବିର ପ୍ରଧାନ ଲକ୍ଷ୍ୟ । ତେଣୁ ନାୟକ-ନାୟିକାଙ୍କର ବିଭିନ୍ନ ସମ୍ଭୋଗଲୀଳାଠାରୁ ଆରମ୍ଭ କରି ବିଷୟବସ୍ତୁର ବିନ୍ୟାସ ପ୍ରସଙ୍ଗରେ ସବୁଠି ଲେଖକ ନିଜର ପାଣ୍ଡିତ୍ୟ, ଶବ୍ଦଚାତୁରୀ ଓ ନାନା ଅଳଙ୍କାରର ସମାବେଶରେ ଅଧିକ ମନୋଯୋଗ ଦେଇଛନ୍ତି । ସେଥିପାଇଁ ଭଞ୍ଜେ ପ୍ରକୃତି-ସୁନ୍ଦରୀଙ୍କ ନୈସର୍ଗିକ ରୂପ ଲାବଣ୍ୟ ପ୍ରତି ଦୃଷ୍ଟି ନ ଦେଇ ଅନେକ ସ୍ଥଳରେ ତାହାଙ୍କୁ ଆଲଙ୍କାରିକ ଆଭରଣରେ ମଣ୍ଡିତ କରିଛନ୍ତି । କିନ୍ତୁ ଏସବୁ ସତ୍ତ୍ୱେ ଭଞ୍ଜଙ୍କ ପ୍ରକୃତି ବର୍ଣ୍ଣନା କିପରି ସାର୍ଥକ ଓ ପ୍ରାକୃତିକ ତାହା ନିମ୍ନରେ କେତୋଟି ଉଦାହରଣରୁ ସ୍ପଷ୍ଟ ପ୍ରତୀୟମାନ ହେବ ।

ଆମ ଦେଶରେ କାବ୍ୟକବିତାରେ ସାଧାରଣତଃ ଋତୁ ବର୍ଣ୍ଣନା ଅଧିକ ପ୍ରାଧାନ୍ୟ ଲାଭ କରିଥାଏ । କୋଇଲି, ଚଉତିଶାଠାରୁ ଆରମ୍ଭ କରି ବିଭିନ୍ନ କାବ୍ୟକବିତାରେ ବର୍ଷା

ବସନ୍ତ, ଶରତ, ହେମନ୍ତର ବର୍ଣ୍ଣନା ଯେପରି ଜୀବନ୍ତ ହୋଇଥାଏ, ଗ୍ରୀଷ୍ମକାଳରେ ବର୍ଣ୍ଣନା ପ୍ରତି ସେପରି ଦୃଷ୍ଟି ଦିଆଯାଇ ନ ଥାଏ । ଅନେକ ସମୟରେ ଗ୍ରୀଷ୍ମ ବର୍ଣ୍ଣନା ପ୍ରତି କବିଗଣ ବିମୁଖ ଥିଲାପରି ଜଣାଯାଏ । ହେଲେ ବି ଉପେନ୍ଦ୍ର ଭଞ୍ଜ ତାଙ୍କର ପ୍ରସିଦ୍ଧ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଅଷ୍ଟାଦଶ ଛାନ୍ଦରେ ଗ୍ରୀଷ୍ମକାଳରେ ସୁନ୍ଦରୀର ବିରହଦଶା ବର୍ଣ୍ଣନା କରି ଋତୁଚକ୍ରର ଜୀବନ୍ତ ପ୍ରକାଶ କରିଅଛନ୍ତି ।

"ଶୁଣ ହେ ସାଧବ ମାଧବ ଶେଷେ ଟିଳିକା କହି
ଏ ଗ୍ରୀଷ୍ମମ ଋତୁ ବିଷମ ସମ ନୁହନ୍ତି କେହି ।
ସତ ଏ ଧରଣୀ ମାନବୁ ଜାତ ଗାତ୍ରରୁ ସ୍ୱେଦ
ଭାନୁ ବୃହଦ୍ଭାନୁ ଯା ଯୋଗୁଁ କଲେ ତେଜସ୍ପର୍ଦ୍ଧା ବାଦ ।
ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକର ଦିବସେ
ଜଳେ କୃଶାନୁ ମାନୁମାନମାନଙ୍କରେ ଅନଶେ ।
ଧରଣୀ ସରଣୀ ଧୂଳିକି କଲା ତପନ ତର୍ଦ୍ଧି
ପଥିକ ପଦ ବିପଦକୁ ପଦ ପଦକେ ଦେଇ ।
ତପ୍ତକାଳ କଲା ତଳ୍ପାଳ ଗଲା ମାର୍ଗକୁ ଯେହି
ସକଳ ମୃଗରେ ବିକଳ ଅନୁବିରତେ ବହି ।"

ଏହାର ଅର୍ଥ ହେଉଛି, ଏ ବିଷମ ଗ୍ରୀଷ୍ମ ଋତୁ ସମାନ କେହି ନୁହନ୍ତି । ଏହାର ଆଗମନ ସଙ୍ଗେ ସଙ୍ଗେ ଦେହରୁ ଝାଳ ବୋହିବାକୁ ଲାଗେ । ସୂର୍ଯ୍ୟ ଏବଂ ଅଗ୍ନି ତେଜର ପ୍ରଖରତାରେ ଯେପରି ବାଦ ସାଧିବାକୁ ଲାଗିଲେ । ସୂର୍ଯ୍ୟ ଦିନରେ ଆକାଶକୁ ଜ୍ୟୋତି ପ୍ରକାଶ କରନ୍ତି ଏବଂ ରାତ୍ରିରେ ପର୍ବତ ଗାତ୍ରରେ ଅଗ୍ନି ପ୍ରଜ୍ୱଳିତ ହୁଅନ୍ତି । ଗ୍ରୀଷ୍ମ ପ୍ରଚଣ୍ଡ ଫଳରେ ମାର୍ଗସ୍ଥ ଧୂଳି ତପ୍ତ ହେବାକୁ ଲାଗିଲା ଏବଂ ସେ ପଥର ପଥିକଗଣ ବିକଳ ହେବାକୁ ଲାଗିଲେ । କେବଳ ସେତିକି ନୁହେଁ, ସେ ପଥରେ ଯାତାୟାତ କରୁଥିବା ପଶୁମାନେ ମଧ୍ୟ ବହୁ କଷ୍ଟ ପାଇଲେ ।

ବର୍ତ୍ତମାନ ବର୍ଷା ବର୍ଣ୍ଣନା ଗ୍ରହଣ କରାଯାଉ । ଭଞ୍ଜଙ୍କ ନିକଟରେ ବର୍ଷାକାଳର ବର୍ଣ୍ଣନା ବଡ଼ କଥା ନୁହେଁ । ବର୍ଷାକାଳ ନାୟକ ନାୟିକାଙ୍କ ମନରେ କି ଅନୁଭବ ଓ ପ୍ରତିକ୍ରିୟା ଜାତ କରେ ତାହାହିଁ ହେଉଛି କବିଙ୍କର କହିବାର କଥା । ଏଥି ସହିତ ବିଭିନ୍ନ ଅଳଙ୍କାର ସମାବେଶ ବର୍ଣ୍ଣନାର ମାଧୁର୍ଯ୍ୟକୁ ଅନେକ ପରିମାଣରେ ବର୍ଦ୍ଧିତ କରିଅଛି । ତାଙ୍କର "ପ୍ରେମସୁଧାନିଧି" ତ୍ରୟୋଦଶ ଛାନ୍ଦରେ ବର୍ଷାକାଳରେ ନାୟକର ଅନୁଚିନ୍ତା ଲକ୍ଷ୍ୟ କରିବାର କଥା ।

"ଘେନ ଘନ କାଳ କାଳ ମଣି ବିଦ୍ୟୁଜ୍ଜାଳ ଜାଳ । ଅଗ୍ନି ବୃଷ୍ଟି ମହୋଜ୍ଜ୍ୱଳ ଜଳ । ରସିକ ବିକଳ କଳନାକି କି ବୋଲେ ଚଳ ଚଳ ପ୍ରିୟା ପାଶେ ଖଗ ମାଳ ମାଳ ହେ । ଜଳଧର । ଦମ୍ଭକୁ କମ୍ପା କଟାଳ ଟାଳ । ଦୁଃଖ ଅସମ୍ଭାଳ ଭାଳ । ହୃଦ କି ସୁଶୀଳ ଶୀଳ ହେଲା ଅଛୁ କୋଟିହେ ଫାଳ ଫାଳ ହେ । ଜଳଧର । ୧ ।"

ଏଠାରେ କବି ରସିକ ରାଜପୁତ୍ରର ବିରହଜନିତ ବିକଳତାକୁ କଳନା କରିପାରୁ ନାହାନ୍ତି । ବର୍ଷାକାଳକୁ ରସିକ କାଳ ପରି ମନେ କରୁଛି । ସେ କାଳର ବିଦ୍ୟୁତ୍‌ର ସ୍ଫୁରଣ ତାହାର ମନରେ ଅଗ୍ନିର ଚମକ ସୃଷ୍ଟି କରୁଛି । ରସିକ ମେଘମାଳାକୁ ପ୍ରିୟା ନିକଟକୁ ଯିବାପାଇଁ ଅନୁରୋଧ କରୁଛି । ରାଜପୁତ୍ରର ଦମ୍ଭକୁ ଅଧିକ କଷ୍ଟାଳ ନ କରିବା ପାଇଁ ସେ ଅନୁରୋଧ ଜଣାଇଛନ୍ତି । କାରଣ ତାଙ୍କର ଦୁଃଖ ଅସମ୍ଭାଳ ହେଲାଣି ବୋଲି ମେଘମାନେ ବିଚାର କରିବା ଉଚିତ । ଶେଷରେ ରାଜପୁତ୍ର କଳନା କରୁଛି, ତାହାର ଛାତି ବୋଧହୁଏ ଅତି ଟାଣୁଆ ପଥର ପରି । ନଚେତ୍ ପ୍ରିୟା ବିରହରେ ଯାହା ନ ଫାଟି ଏ ପର୍ଯ୍ୟନ୍ତ ରହି ଯାଇଛି । ଏହିପରି ବୈଦେହୀଶବିଳାସର ଊନବିଂଶ ଛାନ୍ଦ ମଧ୍ୟ ଉଦାହରଣ ଦିଆଯାଇପାରେ । କବି ଏହି ଛାନ୍ଦକୁ ବିରୋଧାଭାଷ ଅଳଙ୍କାର ମାଧ୍ୟମରେ ପ୍ରକାଶ କରିଅଛନ୍ତି । ଯେପରି—

"ବିରୋଧାଭାଷ ପ୍ରକଟାଇ କବିରେ ବରଷା ସମୟ ସଞ୍ଚରି
ବ୍ୟାପି ଶୋଭି ଦିଶେ ଭୟଙ୍କର ଦିଶେ ଗରଜେ ଘନାଘନ ହରି
ବିସର୍ଜଇ ଯେ, ବଡ଼ ଆନନ୍ଦରେ ଜୀବନ
ବିଧିରେ କାଳିକା ମହିଷସନ୍ତାପ ନାଶି ପ୍ରମୋଦ କରେ ଦାନ ।"

ବିରୋଧାର୍ଥରେ ଏହିପରି ଜଣାପଡ଼େ—ବର୍ଷାକାଳରେ ଜଳ, ସ୍ଥଳ ଓ ଆକାଶ ସମସ୍ତେ ସୁନ୍ଦର ଦେଖାଗଲେ, ଭୟଙ୍କର ମଧ୍ୟ । ମତ୍ତହସ୍ତୀ ସିଂହକୁ ଗ୍ରାସ କରିବାରୁ ସିଂହ ଆନନ୍ଦରେ ପ୍ରାଣତ୍ୟାଗ କଲା । କାଳିକା ଠାକୁରାଣୀ ମହିଷାସୁରକୁ ହତ୍ୟା କରି ତାକୁ ଆନନ୍ଦ ଦାନ କଲେ । ବାହ୍ୟ ଦୃଷ୍ଟିରୁ ଏ ସବୁ ବିରୋଧ ଅର୍ଥ ପରି ପ୍ରତୀତ ହେଉଥିଲେ ହେଁ ଏହାର ପ୍ରକୃତ ଅର୍ଥ ହେଉଛି—ବର୍ଷୁକ ମେଘ ଚାରିଆଡ଼େ ବ୍ୟାପିଯାଇ ଅତିଶୟ ସୁନ୍ଦର ଦେଖାଗଲେ; କିନ୍ତୁ ଦିଗଗୁଡ଼ିକ ଭୟଙ୍କର ଦିଶିଲେ । ଅର୍ଥାତ୍ ମେଘ ଅନ୍ଧାର ଘୋଟି ଯିବାରୁ ଲୋକମାନେ କେଉଁ ଦିଗକୁ ଯିବେ ଠିକ୍ କରି ନ ପାରି ଭୀତ ହେଲେ । ଘନ ରୂପକ ମତ୍ତହସ୍ତୀ ହରି ଅର୍ଥାତ୍ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଗ୍ରାସ ବା ଘୋଡ଼ାଇ ପକାଇଲା । ମେଘ ଆନନ୍ଦରେ ବର୍ଷା କଲା । 'କାଳିକା' ଅର୍ଥାତ୍ ମେଘ ବର୍ଷା କରିବା ଫଳରେ ମହିଷିମାନଙ୍କର ଦୁଃଖ ଦୂର ହେଲା ।

ଏହିପରି ଭାବରେ ଭଞ୍ଜଙ୍କର ଋତୁ ବର୍ଣ୍ଣନାର ବିରାମ ନାହିଁ । ଉଦ୍ଧାର କରି ବିଭିନ୍ନ ଋତୁର ସମ୍ଭାର ପରିବେଷଣ କରିବା ମଧ୍ୟ ଏଠାରେ ସମ୍ଭବ ନୁହେଁ । ତେବେ ଲାବଣ୍ୟବତୀର ଷଷ୍ଠ ଛାନ୍ଦରେ ଲାବଣ୍ୟବତୀର କେଳିସରୋବର ବର୍ଣ୍ଣନା ଭଙ୍ଗୀୟ ପ୍ରକୃତି ବର୍ଣ୍ଣନାରେ ଅଧିକ ପ୍ରଣିଧାନ ଯୋଗ୍ୟ । ସମଗ୍ର ଓଡ଼ିଆ ସାହିତ୍ୟରେ ତାହାର ପଟାନ୍ତର ନାହିଁ । ଯଥା—

"ଦେଖିରେ ନଳିନୀ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।
ବି—ରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜୀବ ରାଜୀବ-ନୟନା ଏଥି ଖେଳା କରଇ ।

ସଳିଳେ ଉତ୍ପଳ ଦେଖରେ ହୋଇଅଛୁ ଶୋଭନ
ସଳିଳେ ଉତ୍ପଳ-ବଦନ ଖେଳିବାକୁ ମୋ ମନ ।
ନବୀନ ଜୀମୂତ ଜୀମୂତ-ସ୍ତନା କି ଏ ଉଦିତ
ଏ ନୀଳ କମଳ କମଳ ବିନ୍ଦୁ ବିଦ୍ଧ ତେମନ୍ତ । ୧୮ । ୬୧.

ହେ ପଦ୍ମିନୀ କନ୍ୟା ଲାବଣ୍ୟବତୀ ଏ ପୁଷ୍କରିଣୀ ପଦ୍ମଲତାରେ ପୂର୍ଣ୍ଣ ହୋଇଅଛି । ଏଥିରେ ବହୁ ଭ୍ରମର ଭ୍ରମୁଅଛନ୍ତି । ଏ ସରୋବରଟି ବହୁ ଭଉଁରୀଦ୍ୱାରା ଶୋଭାଯୁକ୍ତ ହୋଇଅଛି ।

ମୀନ ଭକ୍ଷଣ ପାଇଁ ବହୁ ମତ୍ସ୍ୟରଙ୍କା ପକ୍ଷୀ ଶୋଭା ପାଇଛନ୍ତି । ଏଥିରେ ବହୁ ମାଛ ମଧ୍ୟ ସନ୍ତରଣ କରୁଅଛନ୍ତି । ଏହି ପୁଷ୍କରିଣୀର ଜଳ ଉପରେ ଲୀଳାର ସହିତ ନୌକା ଭାସୁଅଛି ଏବଂ ସେଥିରେ ଜଳବିହାର କରିବା ପାଇଁ ଇଚ୍ଛା ହେଉଅଛି । ହେ ଗିରିସ୍ତନା ! ଏହି ପୁଷ୍କରିଣୀର ନୀଳପଦ୍ମ କମଳ ବିନ୍ଦୁ ଧାରଣ କରିଥିବାରୁ ନୂତନ ମେଘର ଭାବନା ମନରେ ଆସୁଛି ।

ଭଞ୍ଜ ସାହିତ୍ୟ କାନନ ପ୍ରକୃତିର ବିଭିନ୍ନ ବର୍ଣ୍ଣାଢ୍ୟ ସମ୍ଭାରରେ ଶୋଭାଯୁକ୍ତ । ଆଧୁନିକ କବିଙ୍କ ପରି କବିସମ୍ରାଟ ପ୍ରକୃତିକୁ କୌଣସିଠାରେ ପ୍ରେମମୟୀ ଅଥବା ପ୍ରାଣମୟୀ ଭାବରେ ସ୍ୱପ୍ନ ଦେଖି ନାହାନ୍ତି । ମାତ୍ର ତାଙ୍କର objective ପ୍ରକୃତି ଅଧ୍ୟୟନ ପ୍ରାଣହୀନ ରୂପାୟନ ନୁହେଁ । ତାହା ଜୀବନ୍ତ । ଅବଶ୍ୟ ଭଞ୍ଜଙ୍କ ପ୍ରକୃତିବର୍ଣ୍ଣନାରେ ଉପଲବ୍ଧି ଅପେକ୍ଷା ଉପଭୋଗ ବେଶୀ ! ହେଲେ ବି ଭଞ୍ଜେ ଉପଭୋଗ ପାଇଁ କମ୍ ଉପାଦାନ ରଖିଯାଇ ନାହାନ୍ତି । ଆଧୁନିକ କବିତାର ପ୍ରକୃତି ପରି ଭଞ୍ଜଙ୍କ ପ୍ରକୃତି ଗତିଶୀଳ ନୁହେଁ । ତଥାପି ତାଙ୍କର ସମ୍ଭୋଗଚିତ୍ର ଅଥବା ଭୋଗମୟୀ ଭୂମିକାରେ ପ୍ରକୃତି ହେଉଛି ଏକ ଜୀବନ୍ତ ପ୍ରକାଶ ।

## କବି ରାଧାନାଥ—ଏକ ବିହଙ୍ଗାବଲୋକନ

**କବି ପରିଚୟ—**

କବି ଫକୀରମୋହନ ତାଙ୍କର 'ଉତ୍କଳ ଭ୍ରମଣ'ରେ ଲେଖିଥିଲେ—

'ଆହେ **କେଶୋରଗ୍ରାମ** କରେଁ ତୁମ୍ଭଙ୍କୁ ସମ୍ମାନ
ଆର୍ତ୍ତତ୍ରାଣ ସଦାଶିବ ନନ୍ଦ ଜନ୍ମସ୍ଥାନ
ଜନ୍ମିଛନ୍ତି ରାଧାନାଥ ଯୋଗ୍ୟ ପୁତ୍ରମଣି
ଅଟେ କି ଏ ଗ୍ରାମ ଗୋଟା ମରକତ ଖଣି ?'

ବାଲେଶ୍ୱର ଜିଲ୍ଲାର କାଂଶବାଂଶ ନଦୀର ଉତ୍ତର କୂଳରେ କେଶୋରେ ଗ୍ରାମ ଅବସ୍ଥିତ । ଏହି ଗ୍ରାମରେ ତାରିଣୀ ଦେବୀଙ୍କ ଗର୍ଭରେ ସୁନ୍ଦରନାରାୟଣଙ୍କ ଔରସରେ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗ ପ୍ରବର୍ତ୍ତକ ରାଧାନାଥ ୧୮୪୮ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୨୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ରାଧାନାଥ ଜନନୀଙ୍କୁ ହରାଇ ଅତ୍ୟନ୍ତ ଦୁଃଖୀ ହୋଇଥିଲେ । ରାଧାନାଥ ସେ କାଳରେ ପ୍ରଚଳିତ ଗୁରୁହାଲି ଶିକ୍ଷା ଲାଭ କରିଥିଲେ । ଦେଶରେ ଉଚ୍ଚଶିକ୍ଷା ପାଇଁ ବିଶେଷ ବ୍ୟବସ୍ଥା ନ ଥିଲା । ଊନବିଂଶ ଶତାବ୍ଦୀ ଓଡ଼ିଶାର ସମାଜ ଜୀବନ ପକ୍ଷରେ ଏକ ଅନ୍ଧକାର ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଧାନାଥଙ୍କ ଶିକ୍ଷା ଜୀବନ ସମ୍ପର୍କରେ ବ୍ୟାସକବି ଫକୀରମୋହନ ତାଙ୍କର ଆତ୍ମଚରିତରେ ଯାହା ଲିପିବଦ୍ଧ କରିଯାଇଛନ୍ତି ତାହା ଅତ୍ୟନ୍ତ କୌତୂହଳୋଦ୍ଦୀପକ ।

"ମୁଁ ବାରବାଟୀ ସ୍କୁଲରେ ପଢ଼ାଉଥିବା ସମୟରେ ବାଲେଶ୍ୱର ଜିଲା ସ୍କୁଲରୁ ଜଣେ ଛାତ୍ର ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବା ସକାଶେ କଲିକତାକୁ ପ୍ରେରିତ ହେଲେ । ତାଙ୍କ ନାମ ରାଧାନାଥ ରାୟ । କବିବର ରାଧାନାଥ ରାୟ ବାଲେଶ୍ୱର ଜିଲ୍ଲାର ସର୍ବପ୍ରଥମ ଏଣ୍ଟ୍ରାନ୍‌ସ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର । ସେ ୧୮୬୭ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ସ୍କୁଲରୁ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍‌ସ ପାଶ କରିଥିଲେ । × × × ×

ରାଧାନାଥ ବାବୁଙ୍କ ପିତା ସୁନ୍ଦରନାରାୟଣ ରାୟ କଚେରିରେ ଜଣେ ଅମଲା ଥିଲେ । ଏଫ୍. ଏ. ପଢ଼ିବା ସକାଶେ ରାଧାନାଥ ବାବୁ କଲିକତାକୁ ପଠାଗଲେ × × × ସୁନ୍ଦରନାରାୟଣ ବାବୁ ଜଣେ ସାଧାରଣ ଅମଲା ଥିଲେ । ତାହାଙ୍କ ଆୟ ମଧ୍ୟ ଅଳ୍ପ ଥିଲା । କଲିକତା ଖର୍ଚ୍ଚ ଯୋଗାଇ ନ ପାରିବାରୁ ରାଧାନାଥ ବାବୁ କେତେକ ମାସ କଲିକତାରେ ରହି ବାଲେଶ୍ୱରକୁ ବାହୁଡ଼ି ଆଇଲେ । ପରେ ପଢ଼ି ଏଫ୍. ଏ. ପାଶ କରିଥିଲେ ।"
(ଫକୀରମୋହନ ସେନାପତିଙ୍କ ଆତ୍ମ ଜୀବନଚରିତ—୧୯୨୭-ପୃ ୨୦-୨୪)

ରାଧାନାଥ ସ୍ୱାସ୍ଥ୍ୟହାନି ହେତୁ ଅଧିକ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇ କର୍ମମୟ ଜୀବନକୁ ଆଦର କଲେ । ସେ ପ୍ରଥମେ ବାଲେଶ୍ୱରରେ ଶିକ୍ଷକତା ଆରମ୍ଭ କରିଥିଲେ । ତାଙ୍କର ବିଦ୍ୟାନୁରାଗ ଥିଲା ଅସାଧାରଣ । ଛାତ୍ର ଅବସ୍ଥାରୁ ସେ ରାମାୟଣ ମହାଭାରତ ପ୍ରଭୃତି ପୁରାଣ ଗ୍ରନ୍ଥ ପାଠ କରିବାକୁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ । ବନ୍ଧୁମାନଙ୍କ ଗହଣରେ ପ୍ରାଚୀନ ଓଡ଼ିଆ ସାହିତ୍ୟ, ବଙ୍ଗ ସାହିତ୍ୟ, ସଂସ୍କୃତ ସାହିତ୍ୟ ଏବଂ ଇଂରାଜୀ ସାହିତ୍ୟ ଚର୍ଚ୍ଚା କରି ସେ ଅତ୍ୟନ୍ତ ସୁଖୀ ହେଉଥିଲେ । ତାଙ୍କର ଅବସର ବିନୋଦନ ଏକ ପ୍ରକାର ଶାସ୍ତ୍ର ଚର୍ଚ୍ଚାରେ ଏବଂ ଅଧ୍ୟୟନରେ ବିତିଯାଉଥିଲା । ବଙ୍ଗଳାର କବି ଭାରତଚନ୍ଦ୍ରଙ୍କଠାରୁ ହେମଚନ୍ଦ୍ରଙ୍କ ପର୍ଯ୍ୟନ୍ତ ସମସ୍ତ କବିଙ୍କ ପ୍ରଣୀତ ପ୍ରାଚୀନ କାବ୍ୟଗ୍ରନ୍ଥମାନ ସେ ଉତ୍ତମ ରୂପେ ଆଲୋଚନା କରିଥିବା ଜଣାଯାଏ । ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ପ୍ରଭୃତି ପ୍ରାଚୀନ କବିମାନଙ୍କର କାବ୍ୟଗ୍ରନ୍ଥ ସେ ବାରମ୍ବାର ଅଧ୍ୟୟନ କରିଥିଲେ । ସଂସ୍କୃତ ସାହିତ୍ୟ ଏବଂ ପାର୍ସି ସାହିତ୍ୟରେ କବିଙ୍କର ମଧ୍ୟ ଯଥେଷ୍ଟ ପ୍ରବେଶ ଥିଲା । ଇଂରେଜ କବି ଚସର, ସେକ୍ସପୀଅର, ସ୍ପେନ୍‌ସର, କାଉପର, ଗ୍ରେ, ମିଲ୍‌ଟନ୍, ଗୋଲ୍‌ଡସ୍ମିଥ, ବାଇରନ, ସ୍କଟ, ଶେଲୀ, ଓ୍ୱାର୍ଡ୍‌ସଓ୍ୱାର୍ଥ ଏବଂ ଟେନିସନ ପ୍ରଭୃତି କବିମାନଙ୍କୁ ସେ ଅତ୍ୟନ୍ତ ନିଷ୍ଠା ସହକାରେ ପାଠ କରିଥିଲେ ।

ବାଲେଶ୍ୱର, ପୁରୀ ଏବଂ ବାଙ୍କୁଡ଼ାରେ ଶିକ୍ଷକତା କରିସାରିବା ପରେ ରାଧାନାଥ ୧୮୭୨ ଜୁଲାଇ ମାସରେ ବାଲେଶ୍ୱର ଜିଲାର ଡେପୁଟି ଇନ୍‌ସ୍‌ପେକ୍ଟର ପଦକୁ ଉନ୍ନୀତ ହୋଇଥିଲେ । ସେ ଜଣେ ଆଦର୍ଶ ଶିକ୍ଷକ ଥିଲେ ଏବଂ ଛାତ୍ରମାନଙ୍କର କଲ୍ୟାଣ ପାଇଁ ସେ କେତେଗୁଡ଼ିଏ ଆଦର୍ଶ ପୁସ୍ତକ ପ୍ରଣୟନ କରିଥିଲେ । ସେଗୁଡ଼ିକ ମଧ୍ୟରେ ଉତ୍କଳ ରଚନା, ଗଣିତ, ଇତିହାସ, ଭୂଗୋଳ ପ୍ରଭୃତିର ଆଦର୍ଶ ପ୍ରଶ୍ନାବଳୀ, ବ୍ୟାକରଣ ପ୍ରବେଶ, ବ୍ୟାକରଣ ପରିଚୟ, ପଣିକିଆ ବୋଧିନୀ ପ୍ରଭୃତି ପ୍ରଧାନ । ଏହି ସମୟରେ କୁମାର ବୈକୁଣ୍ଠନାଥ ଦେଙ୍କ ପୃଷ୍ଠପୋଷକତାରେ ବାଲେଶ୍ୱରରେ ପ୍ରଥମ ବାଳିକା ସ୍କୁଲ ସ୍ଥାପିତ ହେଲା । ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ଉପଲବ୍ଧି କରି ରାଧାନାଥ 'ସାବିତ୍ରୀ' ନାମରେ ଖଣ୍ଡିଏ ପୁସ୍ତକ ପ୍ରକାଶ କରିଥିଲେ ।

ଡେପୁଟି ଇନ୍‌ସ୍‌ପେକ୍ଟର ହେବାର ପାଞ୍ଚବର୍ଷ ପରେ ରାଧାନାଥ ୧୮୭୭ ନଭେମ୍ବର ୨୭ ତାରିଖ ଦିନ ଓଡ଼ିଶା ବିଭାଗର ଜଏଣ୍ଟ ଇନସ୍‌ପେକ୍ଟର ପଦକୁ ଉନ୍ନୀତ ହେଲେ । ଏହି ଅବସରରେ ସେ ପ୍ରାକୃତିକ ଉତ୍କଳର ସମସ୍ତ ଅଂଶ ବାରମ୍ବାର ପରିଦର୍ଶନ କରିବାର ସୁଯୋଗ ଲାଭ କରିପାରିଥିଲେ । ଉତ୍କଳର ରମଣୀୟ ପ୍ରକୃତି ତାଙ୍କର ମନୋରାଜ୍ୟରେ ଗଭୀର ଭାବରେ ରେଖାପାତ କରିଥିଲା । କର୍ମକ୍ଷେତ୍ରର କର୍ତ୍ତବ୍ୟ ଅନୁରୋଧରେ ତାଙ୍କୁ ବହୁ ଶ୍ରେଣୀର ଲୋକଙ୍କ ସମ୍ପର୍କରେ ଆସିବାକୁ ହୋଇଥିଲା । କ୍ରମେ ଓଡ଼ିଶା ଡ଼ିଭିଜନ ଏକ ସ୍ୱତନ୍ତ୍ର ଶିକ୍ଷା ବିଭାଗରେ ପରିଣତ ହେଲା ଏବଂ ଓଡ଼ିଶା ସ୍କୁଲ ବିଭାଗ ପାଇଁ ଜଏଣ୍ଟ ଇନ୍‌ସପେକ୍ଟର ପଦ ସୃଷ୍ଟି ହେଲା । ଏସ୍ ଏଜର୍ ସାହେବ ଓଡ଼ିଶାର ଶିକ୍ଷା ବିଭାଗର ପ୍ରଥମ ଜଏଣ୍ଟ ଇନ୍‌ସ୍‌ପେକ୍ଟର । ତାଙ୍କ ପରେ ନନ୍ଦକିଶୋର ଦାସ କିଛିକାଳ ଏହି

ପଦରେ ଅଧିଷ୍ଠିତ ହୋଇଥିଲେ । ମାତ୍ର ଦୁଇବର୍ଷ ପରେ ସେ ଗଡ଼ଜାତ ସମୂହର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ହେବାରୁ ୱାଲ୍ସ ସାହେବଙ୍କ ସୁପାରିସ ଅନୁସାରେ ରାଧାନାଥ ରାଜ୍ୟ ଜଏଣ୍ଟ ଇନ୍‌ସପେକ୍ଟରର ପଦରେ ଅଧିଷ୍ଠିତ ହେଲେ । ୧୮୯୬ ସାଲ ପର୍ଯ୍ୟନ୍ତ ପ୍ରାୟ ପନ୍ଦର ବର୍ଷ କାଳ ସେ ଓଡ଼ିଶାର ଶିକ୍ଷା ଓ ସାହିତ୍ୟର ଉନ୍ନତିକଳ୍ପେ ମନୋନିବେଶ କରିଥିଲେ । ଏହି ସମ୍ପର୍କରେ ତାଙ୍କର କାର୍ଯ୍ୟାବଳୀର ପ୍ରଶଂସା କରି କଲିକତାର ଏଜୁକେଶନ ଗେଜେଟରେ ଏକ ଚମତ୍କାର ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏଥିରେ ତାଙ୍କୁ ଓଡ଼ିଶାର ବିଦ୍ୟାସାଗର ବୋଲି ଅଭିନନ୍ଦନ କରି ଲେଖାଯାଇଥିଲା । ଏହିପରି—

"ରାଧାନାଥ ବାବୁକେ ଉଡ଼ିଷ୍ୟାର 'ବିଦ୍ୟାସାଗର' ବଲିଲେ ଅସଙ୍ଗତ ହଇବେନା । ଇନି ଆବାର ଏକଜନ ଉତ୍ତମ କବି । ଉଡ଼ିୟା ଓ ବାଙ୍ଗାଲାୟ କୟେକଖାନି କାବ୍ୟ ଲିଖିୟା ସୁଧାବର୍ଷଣ କରିୟାଛେନ । ତାହାର ବାଙ୍ଗଲା କବିତାବଲୀକେ ଭୂତପୂର୍ବ 'ବଙ୍ଗଦର୍ଶନ' ସମ୍ପାଦକ ବଙ୍କିମବାବୁ ଓ ପ୍ରଶଂସା କରିୟାଛେନ । ଇନି ଉଡ଼ିଶ୍ୟାର ପ୍ରାୟ ପ୍ରତ୍ୟେକ ଜମିଦାର ଓ ଧନୀ, ସମ୍ଭ୍ରାନ୍ତ ବ୍ୟକ୍ତିଗଣକେ ଉତ୍ସାହିତ କରିୟା ପୁରସ୍କାରେର ବ୍ୟବସ୍ଥା କରିୟା ଅଧୀନସ୍ଥ ତାବତ୍ କର୍ମଚାରୀ ଓ ସ୍କୁଲ ବାଲକ ଗଣକେ ଏକପ୍ରକାର ଅଭୂତପୂର୍ବ ଉତ୍ସାହେ ଉତ୍ସାହିତ କରିତେଛେନ ।"

(ରାଧାନାଥ ଜୀବନୀ—ଶ୍ରୀ ଦୁର୍ଗାଚରଣ ରାୟ—ପୃ-୧୬୧)

ତଦାନୀନ୍ତନ ଶିକ୍ଷା ବିଭାଗର ଜଣେ କର୍ମକର୍ତ୍ତା ଶ୍ରୀ ଭୂଦେବ ମୁଖୋପାଧ୍ୟାୟ ବଙ୍ଗ ଦେଶର ଅନ୍ୟତମ କୃତୀ ସନ୍ତାନ ଥିଲେ । ତାଙ୍କର ଅଧୀନରେ କାର୍ଯ୍ୟ କରି ରାଧାନାଥ ଯଥେଷ୍ଟ ଉପକୃତ ହୋଇଥିଲେ । ଭୂଦେବ ବାବୁ ଜଣେ ବହୁଶାସ୍ତ୍ରଦର୍ଶୀ ପଣ୍ଡିତ ଥିଲେ । ତାଙ୍କର ବ୍ୟକ୍ତିତ୍ୱ ଥିଲା ଅସାଧାରଣ । ୧୮୭୯ ସାଲରେ ସେ ଓଡ଼ିଶାର ସ୍କୁଲଗୁଡ଼ିକ ପରିଦର୍ଶନ ପାଇଁ ଆଗମନ କରି ରାଧାନାଥଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲେ । ଭୂଦେବବାବୁଙ୍କୁ ସ୍ମରଣ କରି ରାଧାନାଥ ଲେଖିଥିଲେ—"ପୂଜ୍ୟପାଦ ଭୂଦେବ ମୁଖୋପାଧ୍ୟାୟଙ୍କର ଓଡ଼ିଶାକୁ ଶୁଭାଗମନ ମୋ ଜୀବନରେ ଗୋଟିଏ ପ୍ରଧାନ ଘଟଣା । ତାହାଙ୍କ ଚରଣରେ ମୁଁ ଯେତେଦୂର ଋଣୀ କୌଣସି ବଙ୍ଗବାସୀଙ୍କ ନିକଟରେ ସେତେଦୂର ଋଣୀ ନୁହେଁ ।

ରାଧାନାଥଙ୍କ ଘରର ଭାଷା ଥିଲା ବଙ୍ଗଳା । ତେଣୁ ସେ ବଙ୍ଗଳା ଭାଷାରେ ଲେଖନୀ ଚାଳନା କରିବା ସ୍ୱାଭାବିକ । ଅବଶ୍ୟ ସେହି ବଙ୍ଗଳା ରଚନା ମଧ୍ୟରେ ତାଙ୍କର ଓଡ଼ିଆପ୍ରୀତି ଯଥେଷ୍ଟ ପ୍ରକଟିତ ହୋଇଥିଲା ।

**ପ୍ରଥମ କବିତାର ଉଚ୍ଛ୍ୱାସ—**

ଯୌବନର ପ୍ରାରମ୍ଭରେ ରାଧାନାଥ ନିଜର ବନ୍ଧୁ ରସିକଚନ୍ଦ୍ରଙ୍କ ସମ୍ପର୍କରେ ଆସି ସଙ୍ଗୀତଚର୍ଚ୍ଚା ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ବୋଧହୁଏ ଏହି ସଙ୍ଗୀତଚର୍ଚ୍ଚା କାଳରେ ବାଣୀ ଆରାଧନା ପାଇଁ ତାଙ୍କର ସ୍ୱତଃ ଭାବନା ସୃଷ୍ଟି ହୋଇଥିଲା । ସେ ବେଳେବେଳେ ମାତୃଭାଷା ବଙ୍ଗଳାରେ ଗୀତ ରଚନା କରି ତାହା ଗାନ କରୁଥିଲେ

କିମ୍ବା କୌଣସି ସଂସ୍କୃତ ଶ୍ଳୋକର ବଙ୍ଗଳା ପଦ୍ୟାନୁବାଦ କରି ତାହା ବନ୍ଧୁମାନଙ୍କୁ ଶୁଣାଉଥିଲେ । ଦୁଃଖର କଥା ଯେ ପ୍ରଥମ କାଳର ଏହି ସବୁ କବିତା ସଂଗ୍ରହ କରାଯାଇ ପାରିନାହିଁ । ତେବେ ରାଧାନାଥ-ଜୀବନୀ ଲେଖକ ଉଦାହରଣ ଛଳରେ ଗୋଟିଏ ଶ୍ଳୋକର ଉଦ୍ଧାର କରିଅଛନ୍ତି ।

ଘଂଟିତ ପ୍ରବିଶ ଗେହଂ ମା ବହିସ୍ତିଷ୍ଠ କାନ୍ତେ
ଗ୍ରହଣ ସମୟ ବେଲା ବର୍ତ୍ତିତେ ଶୀତରଶ୍ମେଃ ।
ଅସ୍ମି ସୁବିମଲ କାନ୍ତଂ ବୀକ୍ଷ୍ୟ ନୂନଂ ସରାହୁଃ
ଗ୍ରସତି ଯଦି ମୁଖେନ୍ଦୁଂ ପୂର୍ଣ୍ଣଚନ୍ଦ୍ରଂ ବିହାୟ ।

ରାଧାନାଥଙ୍କର ବଙ୍ଗାନୁବାଦ ହେଲା—

ଗ୍ରହଣେର ବେଲା ହଲ ଓଲ ପ୍ରେୟସି
ଥାକ ତବ ମୁଖଶଶୀ ପଶି ଘରେ
ପାଛେ ପାପ ରାହୁ ପୂର୍ଣ୍ଣ ଶଶୀ ଜ୍ଞାନେ
ଭ୍ରମେ ତୁଚ୍ଛ ଚନ୍ଦ୍ରମୁଖ ଆସି ଧରେ ।

କବି ରାଧାନାଥ ବଙ୍ଗଳା ଲେଖାଗୁଡ଼ିକ ଦୁଇଟି ଖଣ୍ଡରେ ପ୍ରକାଶିତ ହୋଇ ସେ କାଳର ବଙ୍ଗ ପତ୍ରିକାରେ ବିଶେଷ ପ୍ରଶଂସିତ ହୋଇଥିଲା । ବଙ୍ଗଳା କବିତାବଳୀର ପ୍ରଥମ ଖଣ୍ଡରେ କବି ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ଗୌରୀଶଙ୍କର ପ୍ରଭୃତିଙ୍କ ବିଷୟରେ କବିତାମାନ ସ୍ଥାନ ଲାଭ କରିଥିଲା । ଉଦାହରଣ ସ୍ୱରୂପ—

**କବିବର ଉପେନ୍ଦ୍ର ଭଞ୍ଜ**

ଧନ୍ୟ ରାଜକବି ଭୂମି ଜନମ ସୁକ୍ଷଣେ
ଗ୍ରହିଲା ଏ ପ୍ରଦେଶେ ହେ କବୀନ୍ଦ୍ରମଣି ।
ସୁଯଶସ୍ୱୀ ସୁସମଯ୍ୱେ ସରସ ଲେଖନୀ
ଧରିଲା ଉପେନ୍ଦ୍ର ! ମରି ଯେ ଗୁରୁ ଭୂଷଣେ
ସାଜାୟେଛ ବୈଦେହୀଶେ ହେ କବି ରତନ
ତୋମା ବିନା ସାଧ୍ୟକାର ସାଜାୟ ଏସନ ।

**ଦୀନକୃଷ୍ଣ ଦାସ**

ଉତ୍କଳୀୟ ଜୟଦେବ ଦୀନକୃଷ୍ଣ କବି
ସୁଧନ୍ୟ ଭକତ-ଜନ-ଗଣ ଚୂଡ଼ାମଣି ।
ରସକର ! ରଚିୟାଛ ଯେ ସୁରୁଚି ଛବି
ଧରିବେ ଏ ଦାସ ତାହା ଦିବସ ରଜନୀ ।

× × × ×

ଧନଧାନ ଭୂମି ଯଦି ହେ କବି କେଶରୀ
କୋଥା ହତେ ପେଲେ ହେନ ମନୋଜ୍ଞ ଭୂଷଣ ?
ହେ ତୋମାରେ ଫଲ, ବଲ, ହେନ ସୁରସନ
ହେନ ବାଣୀ—ମିଷ୍ଟ ଯେନ ମୁରଲୀର ବା ଶର ?
ପ୍ରସବେ ଯେମତି ପାଙ୍କ ସୁରଭି ଶତଦଲ
ତୋମାର ଜନନୀ କବି ! ତେମତି ଉତ୍କଳ ।

ବଙ୍ଗଳା କବିତାବଳୀ ଦ୍ୱିତୀୟ ଭାଗ ୧୮୭୦ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ରାଧାନାଥଙ୍କ ପ୍ରଥମ ଯୌବନରେ ଲିଖିତ 'ଗ୍ରାମ୍ୟ ଶ୍ମଶାନ ଦର୍ଶନେ ବିଦେଶ ପ୍ରତ୍ୟାଗତ ମାତୃହୀନର ଉକ୍ତି' ଶୀର୍ଷକ କବିତାଟି ଏହି ଭାଗରେ ସ୍ଥାନ ଲାଭ କରିଥିଲା । ଏଥିରେ କବିଙ୍କର କଳ୍ପନାବିଳାସ ଏବଂ କବିତ୍ୱର ଉନ୍ମେଷ ଲକ୍ଷ୍ୟ କରିବାର କଥା ।

"ପଡ଼େ ମନେ ଆଜ ମାଗୋ ସେ ଦିନେର କଥା
ଯେ ଦିନ ଛଡ଼ାୟେ ଖଇ ବାଜାୟେ ବାଜନା
'ରାମ ନାମ ସତ୍ୟ' ବଲି ପ୍ରତିବାସି ଦଲେ
ଆନିଲ ଏ ଘୋର ସ୍ଥଲେ ତୋମାୟ ଜନନୀ ।
ଅବୋଧ ଅଜ୍ଞାନ ଆମି ନା ଜାନି କାରଣ
ମବାର ରୋଦନ ଶୁନି କାଁଦିନୁ ବିକଲେ ।
ଶୁନି ମମ ଆର୍ତ୍ତିନାଦ ତାତେର ଜନନୀ
ବଲିଯା ଆମାୟ, "କେନ କାନ୍ଦସ ଅବୋଧ
ମାସାନ୍ତେ ଜନନୀ ତୋର ଆସିବେ ରେ ଫିରେ ।"

## ଓଡ଼ିଆ ସାହିତ୍ୟ ଓ ରାଧାନାଥ—

ପ୍ରଥମ ଯୌବନରେ ବଙ୍ଗଳା ଭାଷାରେ କବିତା ରଚନା କରି କବି ଯଶସ୍ୱୀ ହୋଇଥିଲେ ହେଁ ଓଡ଼ିଆ ଭାଷାରେ ଲେଖିବା ପାଇଁ ସାହସ କରି ନ ଥିଲେ । କବି ଫକୀରମୋହନ ରାଧାନାଥଙ୍କୁ ଓଡ଼ିଆ ଭାଷାରେ ଲେଖନୀ ଧାରଣ କରିବା ପାଇଁ ପ୍ରବର୍ତ୍ତାଇଲେ । ଏହି ସମୟରେ ୧୮୭୩ ଖ୍ରୀଷ୍ଟାବ୍ଦରେ 'ଉତ୍କଳ ଦର୍ପଣ' ନାମରେ ଏକ ମାସିକ ପତ୍ରର ଅଭ୍ୟୁଦୟ ହେଲା । ରାଧାନାଥ ଏହି ପତ୍ରିକାରେ 'ଇତାଲୀୟ ଯୁବା' ନାମକ ଏକ କ୍ଷୁଦ୍ର ଉପନ୍ୟାସ ପ୍ରକାଶ କରିଥିଲେ । ଏକ ଇଂରେଜୀ ଗଳ୍ପର ଅବଲମ୍ବନରେ ଏହି ଉପନ୍ୟାସଟି ରଚିତ ହୋଇଥିଲା ଏବଂ 'ଉତ୍କଳ ଦର୍ପଣ' ପତ୍ରିକାରେ ତାହା ଧାରାବାହିକ ଆତ୍ମପ୍ରକାଶ କରିଥିଲା । ଏତଦ୍‌ବ୍ୟତୀତ ରାଧାନାଥ କେତେକ ପ୍ରବନ୍ଧ ମଧ୍ୟ ପ୍ରକାଶ କରିଥିଲେ । ସେଗୁଡ଼ିକ ମଧ୍ୟରେ 'ବିବେକୀ' ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ତେବେ ଓଡ଼ିଆ ସାହିତ୍ୟ ରଚନାରେ ରାଧାନାଥଙ୍କର ସେପରି ନିଷ୍ଠାର ଉଦୟ ହେବାପାଇଁ ସୁଯୋଗ ଉପସ୍ଥିତ ହୋଇ ନ ଥିଲା । ୧୮୭୪ ସାଲରେ ଭୂଦେବ ମୁଖୋପାଧ୍ୟାୟଙ୍କ ଓଡ଼ିଶା ଅବସ୍ଥାନ କାଳରେ କବି ତାଙ୍କର ଅଭିମତ ଜାଣିବା ପାଇଁ

ନିଜର ରଚିତ ଏକ ବଙ୍ଗଳା କାବ୍ୟର ପାଣ୍ଡୁଲିପି ଦେଖାଇଥିଲେ । କାବ୍ୟଟି ମାଇକେଲ ମଧୁସୂଦନଙ୍କ 'ବୀରାଙ୍ଗନା' କାବ୍ୟର ଅନୁକରଣରେ ଲିଖିତ ହୋଇଥିଲା । ଏହି କାବ୍ୟର ନାୟିକା ଥିଲେ ଶ୍ରୀକୃଷ୍ଣ ଭଗିନୀ ସୁଭଦ୍ରା । ଭୂଦେବ ବାବୁ ନିଜର ସୁଚିନ୍ତିତ ମତ ଦେବାକୁ ଯାଇ ତାଙ୍କୁ ଓଡ଼ିଶାର କଥା ଅବଲମ୍ବନରେ କାବ୍ୟ ରଚନା କରିବାକୁ ପ୍ରେରଣା ଦେଇଥିଲେ । ସେ କହିଥିଲେ—"ପୁରାତନ ବିଷୟ ଯେନି ଶକ୍ତିର ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି ? × × ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ (meet nurse for a poetic child) ଓଡ଼ିଶାର ଯେଉଁ ଆଡ଼କୁ ଚାହିଁବ, ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି ।

(ରାଃ ଜୀ·—ପୃ-୧୦୬)

ଆଉ ଥରେ ବଙ୍ଗଭାଷାରେ କେତେଗୁଡ଼ିଏ କବିତା ରଚନା କରି ରାଧାନାଥ ଭୂଦେବବାବୁଙ୍କୁ ଦେଖାଇବାରୁ ସେ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ କହିଥିଲେ—"ବଙ୍ଗଭାଷା ଅପେକ୍ଷାକୃତ ଉନ୍ନତ ଏବଂ ମାର୍ଜିତ, କିନ୍ତୁ ଓଡ଼ିଆ ଭାଷା ଅନୁନ୍ନତ । ଦ୍ୱିତୀୟତଃ ପ୍ରତ୍ୟେକ ଉତ୍କଳବାସୀର ଓଡ଼ିଆ ଭାଷାର ଉନ୍ନତି ବିଧାନରେ ବ୍ରତୀ ହେବା କର୍ତ୍ତବ୍ୟ ।"

(ରା. ଜୀ—ପୃ-୧୩୭)

ଏହି ସମୟରୁ ରାଧାନାଥ ବଙ୍ଗଳା ରଚନାପ୍ରୟାସ ସମ୍ପୂର୍ଣ୍ଣ ପରିତ୍ୟାଗ କରି ଓଡ଼ିଆ ସାହିତ୍ୟ ସୃଷ୍ଟିରେ ପ୍ରବୃତ୍ତ ହେଲେ ।

ବାଲେଶ୍ୱରରେ ଡେପୁଟି ଇନ୍‌ସପେକ୍ଟର ଥିଲାବେଳେ ରାଧାନାଥ କାଳିଦାସଙ୍କ ମେଘଦୂତ କାବ୍ୟକୁ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ । ୧୮୮୦ ସାଲ ପୂର୍ବରୁ ଓଡ଼ିଆ କବିତାବଳୀରେ ରାଧାନାଥଙ୍କର କେତେକ କବିତା ପ୍ରକାଶିତ ହୋଇଥିଲା । ୧୮୮୫ ସାଲରେ କେଦାରଗୌରୀ ଏବଂ ୧୮୮୬ ସାଲରେ ଚନ୍ଦ୍ରଭାଗା କାବ୍ୟ ପ୍ରକାଶିତ ହେଲା । ୧୮୮୭ ସାଲରେ ଊନବିଂଶ ଶତାବ୍ଦୀର ବିଖ୍ୟାତ ସାହିତ୍ୟ ସାପ୍ତାହିକ "ସମ୍ବଲପୁର ହିତୈଷିଣୀ" ବାମଣ୍ଡା ରାଜଧାନୀ ଦେବଗଡ଼ରୁ ଆତ୍ମପ୍ରକାଶ କରି ଆଧୁନିକ ଓଡ଼ିଆ ସାହିତ୍ୟରେ ନବଯୁଗର ସୂତ୍ରପାତ କରିଥିଲା । ଏହି ପତ୍ରିକାରେ ମଧୁସୂଦନ ରାଓ, ରାମନାରାୟଣ ଲାଲ୍, ବିଶ୍ୱନାଥ କର, ଫକୀରମୋହନ ସେନାପତି, ଚିନ୍ତାମଣି ମହାନ୍ତି, ଗଙ୍ଗାଧର ମେହେର, ଚନ୍ଦ୍ରମୋହନ ମହାରଣା ପ୍ରଭୃତିଙ୍କ ସହିତ କବି ରାଧାନାଥ ମଧ ଲେଖା ପ୍ରକାଶ କରୁଥିଲେ । ହିତୈଷିଣୀ ପତ୍ରିକାରେ ରାଧାନାଥଙ୍କର ପାର୍ବତୀ ଓ ଯଯାତିକେଶରୀ ପ୍ରଥମ ଥର ପାଇଁ ପ୍ରକାଶିତ ହେଲା । ୧୮୮୭ ସାଲରେ କବିଙ୍କର "ନନ୍ଦିକେଶରୀ" ଏବଂ ୧୮୮୮ ସାଲରେ "ଉଷା" କାବ୍ୟ ମୁଦ୍ରିତ ହେଲା । ୧୮୯୧ ସାଲରେ ଅସମ୍ପୂର୍ଣ୍ଣ ଅବସ୍ଥାରେ ରାଧାନାଥଙ୍କ ପାର୍ବତୀ ପ୍ରକାଶିତ ହେଲା । ୧୮୯୧ ସାଲରେ ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତାରେ ବାରିପଦାରୁ 'ଉତ୍କଳ ପ୍ରଭା'

ନାମରେ ଏକ ମାସିକ ସାହିତ୍ୟପତ୍ରର ଅଭ୍ୟୁଦୟ ହେଲା । ଏହି ପତ୍ରିକାରେ ଆଧୁନିକ ଉତ୍କଳ ସାହିତ୍ୟର ବହୁ ଉଦୟମାନ ଲେଖକ ଲେଖନୀ ଚାଳନା କରିଥିଲେ । ରାଧାନାଥଙ୍କର ଦୁଇଟି ପ୍ରସିଦ୍ଧ କାବ୍ୟ ଚିଲିକା ଏବଂ 'ମହାଯାତ୍ରା', 'ଉତ୍କଳ ପ୍ରଭା'ରେ କ୍ରମଶଃ ପ୍ରକାଶିତ ହୋଇଥିଲା । ସେହିପରି ୧୮୯୪ ସାଲ ଅଗଷ୍ଟ ମାସ ୨୧ ତାରିଖରେ ବାରବାଟୀ ଦୁର୍ଗରେ ଯେଉଁ ଦରବାର ଅନୁଷ୍ଠିତ ହୋଇଥିଲା, ସେଥିରେ ତଦାନୀନ୍ତନ କମିସନର କୁକ୍ ସାହେବ ପୌରହିତ୍ୟ କରିଥିଲେ ଏବଂ ଏହି ଦରବାରରେ ରାଧାନାଥଙ୍କ ଭଗିନୀପତି କାଉପୁରର ଜମିଦାର ଗୋବିନ୍ଦବଲ୍ଲଭ ରାୟ ସନନ୍ଦ ଲାଭ କରିଥିଲେ । ତାଙ୍କୁ ଲକ୍ଷ୍ୟ କରି ରାଧାନାଥ ୧୮୯୬ ଖ୍ରୀଷ୍ଟାବ୍ଦରେ ଦରବାର ଲେଖିଥିଲେ ବୋଲି ଶ୍ରୀ ଭବଭୂତି ରାୟ ରାଧାନାଥ ଜୀବନୀରେ ଆଲୋଚନା କରିଛନ୍ତି । ମାତ୍ର ଏପରି ଆଲୋଚନା ଉପରେ ଆସ୍ଥା ସ୍ଥାପନ କରିବାର କୌଣସି କାରଣ ନାହିଁ । କାରଣ ବାଲେଶ୍ୱରରୁ ପ୍ରକାଶିତ 'ଓଡ଼ିଆ ଓ ନବ ସମ୍ବାଦ' ପତ୍ରିକାରେ ୨୮।୮।୧୮୯୫ ତାରିଖରେ ଦରବାରର କେତେକାଂଶ "କୌଣସି ସଭାରେ ଉତ୍କଳୀୟ ରାଜବୃନ୍ଦଙ୍କୁ ସମ୍ବୋଧନ" ଶିରୋନାମାରେ ପ୍ରକାଶିତ ହୋଇଥିଲା । ପୁନଶ୍ଚ ସେହି ସମୟରେ ପଠାଣି ସାମନ୍ତଙ୍କ ସମ୍ପର୍କୀୟ କବିତାଂଶ ହିତୈଷିଣୀ ପତ୍ରିକା ପ୍ରକାଶ କରିଥିଲେ ବୋଲି ରାଧାନାଥ ୨୮।୯।୧୮୯୫ ତାରିଖର ପତ୍ରରେ (କବିଲିପି) ଉଲ୍ଲେଖ କରିଅଛନ୍ତି । ଦରବାର ରାଧାନାଥଙ୍କର ସର୍ବଶ୍ରେଷ୍ଠ ସଫଳକୃତି । କାରଣ ଦରବାର ରଚନା ପରେ ରାଧାନାଥ ୧୮୯୫ ସାଲ ପରେ ଉତ୍ତରବନ୍ଧୁ, ଦଶରଥ ବିୟୋଗ, ବଂଶହରଣ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ସାବିତ୍ରୀଚରିତ ପ୍ରଭୃତି ରଚନା କରିଥିଲେ । ଏହି କବିତାଗୁଡ଼ିକରେ ରାଧାନାଥଙ୍କ କବି ପ୍ରତିଭାର ସ୍ୱାକ୍ଷର ଅଥବା ସୃଷ୍ଟି ବୈଚିତ୍ର୍ୟ ପରିଲକ୍ଷିତ ହୁଏ ନାହିଁ ।

## ଯୁଗର ପୃଷ୍ଠଭୂମି ଓ ଭାଷା ଆନ୍ଦୋଳନ

୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଇଂରେଜମାନେ ମରହଟ୍ଟାମାନଙ୍କୁ ବିତାଡ଼ିତ କରି ଓଡ଼ିଶା ଅଧିକାର କରିଥିଲେ । ମରହଟ୍ଟା ରାଜତ୍ୱରେ ଓଡ଼ିଶାରେ ପାର୍ସି ରାଜକୀୟ ଭାଷା ରୂପେ ପ୍ରଚଳିତ ଥିଲା । ଇଂରେଜମାନେ କିଛି କାଳ ଏହି ବ୍ୟବସ୍ଥା ଚାଲୁ ରଖିବା ପରେ ୧୮୩୮ ଖ୍ରୀଷ୍ଟାବ୍ଦରେ ପାର୍ସିକୁ କଚେରୀ ଭାଷା ରୂପେ ଆଉ ସ୍ୱୀକାର କଲେନାହିଁ । ତାହାର ପରିବର୍ତ୍ତେ ଇଂରେଜୀ ଭାଷା ଗୃହୀତ ହେଲା । ଇଂରେଜୀ ଶିକ୍ଷା ପ୍ରଥମେ ବଙ୍ଗଦେଶରେ ପ୍ରଚଳିତ ହୋଇଥିବାରୁ ଇଂରେଜୀ ଶିକ୍ଷିତ ବଙ୍ଗୀୟଗଣ ଇଂରେଜମାନଙ୍କ ସହିତ ଓଡ଼ିଶାକୁ ଆସି ଶାସନ କାର୍ଯ୍ୟରେ ସାହାଯ୍ୟ କରିଥିଲେ । ୧୮୪୫ ସାଲ ବେଳକୁ ଶିକ୍ଷାର ପ୍ରସାର ପାଇଁ ଓଡ଼ିଶାରେ ବିଶେଷ କିଛି ଉଦ୍ୟମ ହୋଇ ନ ଥିଲା । କଟକ, ପୁରୀ ଏବଂ ବାଲେଶ୍ୱର ଜିଲାରେ କେବଳ କେତେକ ଭର୍ଣ୍ଣାକୁଲେର ସ୍କୁଲ ହୋଇଥିଲା । ସେ କାଳରେ କଟକର କଲେକ୍ଟର ସ୍କୁଲଗୁଡ଼ିକ ପରିଦର୍ଶନ କରି ମନ୍ତବ୍ୟକ୍ତ କରିଥିଲେ ଯେ ବର୍ତ୍ତମାନ ଓଡ଼ିଆଭାଷା ଅଳ୍ପ ପରିସରରେ ଆବଦ୍ଧ । ଏହି କ୍ଷୁଦ୍ର ପ୍ରଦେଶରେ ଗୋଟିଏ ଭାଷା ସ୍ୱତନ୍ତ୍ର ସାହିତ୍ୟ ସୃଷ୍ଟି

କରିବା ସମ୍ଭବ ନୁହେଁ । ତେଣୁ ଏଠାରେ ଉନ୍ନତ ବଙ୍ଗଳା ଭାଷା ପ୍ରବର୍ତ୍ତିତ ହେବା ଆବଶ୍ୟକ । ୧୮୬୯-୭୦ ଖ୍ରୀଷ୍ଟାବ୍ଦରେ ମେଦିନୀପୁର ଜିଲାର ଦକ୍ଷିଣାଞ୍ଚଳରେ ଓଡ଼ିଆ ସ୍କୁଲ କିପରି ଚକ୍ରାନ୍ତ କରି ଉଠାଇ ଦିଆଯାଇଥିଲା, ସେ ସମ୍ପର୍କରେ ଅତ୍ୟନ୍ତ କୌତୂହଳପୂର୍ଣ୍ଣ ବିବରଣୀ ଫକୀରମୋହନଙ୍କ ଆତ୍ମଚରିତରେ ଲିପିବଦ୍ଧ ହୋଇଅଛି । ସେହି କାଳରେ ବାଲେଶ୍ୱରରେ ନିଯୁକ୍ତି ପାଇଥିବା ଜଣେ ଶିକ୍ଷକ ଶ୍ରୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ ଶୀର୍ଷକ ଏକ ପୁସ୍ତିକା ପ୍ରଚାର କଲେ । ୧୮୬୮ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ ବିଶିଷ୍ଟ ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର କଟକର ଏକ ସଭାରେ ଭାଷଣ ଦେଇ ଯୁକ୍ତି କଲେ ଯେ ଓଡ଼ିଆ ଭାଷା ବଦଳରେ ବଙ୍ଗଳାଭାଷା ଶିକ୍ଷାର ମାଧ୍ୟମ ହେବା ବିଧେୟ । କେବଳ ସେତିକି ନୁହେଁ, ସେ କାଳର ରାଜଧାନୀ କଲିକତା ନଗରୀରେ ୧୮୭୦ ମସିହା ମେ ମାସ ୪ ତାରିଖ ଦିନ କଲିକତା ଏସିଆଟିକ ସୋସାଇଟିର ଏକ ବୈଠକରେ ରାଜେନ୍ଦ୍ରଲାଲ ମିତ୍ର ଏକ ପ୍ରବନ୍ଧ ପାଠକରି ଓଡ଼ିଆ ଭାଷା ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । ସେ କହିଥିଲେ—"Uriya is more closely related to Bengali than other vernaculars of India, and the relationship most probably is that of the mother and daughter and not of two sisters. And if this be admitted, it must follow that as in Comillah, Assam, Sylhet and Cooch Behar, so in Orissa, eduction should be conducted in Bengali and not in Oriya"! + + + Nor is the fusion of their language into ours at all impr-acticable. The experiment has already been tried and found to be completely successful. Some twenty years ago when the district of Midnapur was transferred from the commissionship of Cuttack to that of Burdwan, the language of the courts there and of the people was Uriya. The new commissioner for the sake of uniformity in all his districts or some other cause, suppressed Oriya, and introduced the Bengali language, and nearly the whole of Midnapur is now become a Bengali speaking district, and men there often feel offended if they are called Uriyas. That similar measures in Balasore, Cuttack ard Puri would effect a similar change, I have no reason to doubt.

ସୁଖର କଥା ଯେ ସେତେବେଳେ ବମସ ଏବଂ ମାଲ୍‌ଟବିଙ୍କପରି ଓଡ଼ିଶା ହିତୈଷୀ ଓଡ଼ିଆ ଭାଷାତତ୍ତ୍ୱବିଦ୍ ଶାସକଗଣ ଏଠାରେ ଅବସ୍ଥାନ କରୁଥିଲେ । ଏମାନେ ଓଡ଼ିଆ ଭାଷାର ପ୍ରାଚୀନତା ପ୍ରମାଣ କରି ତାହାର ଗୌରବ ପ୍ରତିପାଦନ ପାଇଁ ପୁସ୍ତକମାନ ପ୍ରଣୟନ କଲେ । ସୌଭାଗ୍ୟବଶତଃ ରାଧାନାଥ, ଫକୀରମୋହନ, ରାମଶଙ୍କର, ଗୌରୀଶଙ୍କର, ବିଚ୍ଛନ୍ଦଚରଣ ପ୍ରଭୃତି ଏହି ଭାଷା ଆନ୍ଦୋଳନରେ ସେନାପତି ରୂପେ ଅଂଶ ଗ୍ରହଣ କରି ଓଡ଼ିଆ ଭାଷାକୁ ମୃତ୍ୟୁମୁଖରୁ ରକ୍ଷା କରିଥିଲେ । ତେଣୁ ରାଧାନାଥଙ୍କ ସାହିତ୍ୟ ଏହି ଐତିହାସିକ ଆନ୍ଦୋଳନର ପୃଷ୍ଠଭୂମିରେ ବିଚାର୍ଯ୍ୟ । ରାଧାନାଥ ଓଡ଼ିଆ ସାହିତ୍ୟରେ ନୂତନ ଯୁଗର ସ୍ରଷ୍ଟା । ତାଙ୍କୁ ନବଯୁଗର ପ୍ରଧାନ ପୁରୋଧା ବୋଲି ସମ୍ମାନିତ କରାଯାଏ । ରାଧାନାଥ ଜଣେ ଶକ୍ତିଶାଳୀ ପଣ୍ଡିତ ଓ କବି । ତେଣୁ ତାଙ୍କ ସାହିତ୍ୟକୃତିର ପ୍ରଭାବ ଓଡ଼ିଆ ସାହିତ୍ୟରେ ଅନସ୍ୱୀକାର୍ଯ୍ୟ ।

## ରୀତିଯୁଗ ଓ ରାଧାନାଥ—

ଊନବିଂଶ ଶତାବ୍ଦୀର ଶେଷ ପାଦରେ ବାରିପଦାରୁ ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତାରେ 'ଉତ୍କଳ ପ୍ରଭା' ସାହିତ୍ୟ—ମାସିକ ପତ୍ରିକା ପ୍ରକାଶିତ ହୋଇଥିଲା । ଏହି ପତ୍ରିକାରେ ଲାଲ ରାମନାରାୟଣ କବି ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' ଆଲୋଚନା କରି ଭଞ୍ଜ କବିଙ୍କ ସମ୍ପର୍କରେ ବଡ଼ ତୀବ୍ର ମନ୍ତବ୍ୟ ପ୍ରଦାନ କରିଥିଲେ । ଉପେନ୍ଦ୍ର ଭଞ୍ଜ ଅଶ୍ଳୀଳ ଏବଂ ଅପାଠ୍ୟ ବୋଲି ଅଭିଯୋଗ କରାଗଲା । ଏହାର ପ୍ରତିକ୍ରିୟା ସ୍ୱରୂପ କଟକରୁ ଇନ୍ଦ୍ରଧନୁ ନାମରେ ଏକ ସାମୟିକ ପତ୍ର ପ୍ରକାଶିତ ହେଲା । ଏହି ପ୍ରତିକ୍ରିୟାରେ କବି ଉପେନ୍ଦ୍ର ଭଞ୍ଜଙ୍କର ଗୁଣଗାନ କରାଯାଇ ସମକାଳୀନ ଆଧୁନିକ ଓଡ଼ିଆ ସାହିତ୍ୟର କଠୋର ସମାଲୋଚନା କରାଗଲା । ରାଧାନାଥ ଆଧୁନିକ ଯୁଗ ସାହିତ୍ୟର ସ୍ରଷ୍ଟା ଥିବାରୁ ସ୍ୱଭାବତଃ ସେ ସମାଲୋଚକମାନଙ୍କର ଶରବ୍ୟ ହୋଇ ପଡ଼ିଲେ । କେହି କେହି ମନେକଲେ ଯେ ରାଧାନାଥ ନିଜର ପ୍ରତିଷ୍ଠା ବୃଦ୍ଧି କରିବା ପାଇଁ ଭଞ୍ଜବିରୋଧୀ ଆଲୋଚନାକୁ ଉତ୍ସାହ ପ୍ରଦାନ କରୁଅଛନ୍ତି । ଏତିକବେଳେ ବାମଣ୍ଡାରୁ 'ବିଜୁଳି' ନାମରେ ଏକ ସାମୟିକ ପତ୍ର ପ୍ରକାଶିତ ହେଲା । ଏହି ପତ୍ରିକାରେ ରାଧାନାଥଙ୍କୁ ସମର୍ଥନ କରି ଅନେକ ଆଲୋଚନା ପ୍ରକାଶିତ ହେଲା । ଏହିପରି ଇନ୍ଦ୍ରଧନୁ—ବିଜୁଳିର ସାହିତ୍ୟିକ ମସୀଯୁଦ୍ଧ ସମକାଳୀନ ଓଡ଼ିଶାରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଏହି ପ୍ରସଙ୍ଗରେ ପ୍ରକାଶିତ କେତେକ ଲେଖା ଉଦ୍ଧାର କରାଯାଇ ପାରେ ।

"ଏ କାଳ ଆଉ ନୋହେ ସମ୍ଭାଳି
ଯାହାକର ପ୍ରଭୁ ଶ୍ରୀ ବନମାଳୀ ।
ଯୋଗୀ ଗୁଡ଼ଲଆ ମହାକବି ହେଲେ
ଉପଇନ୍ଦ୍ର ଭଞ୍ଜ ଖାଇଲେ ଗାଳି
ଶୀକରଣଠାରୁ ତୁଳାଭଣା ଯାଏ
ସମସ୍ତେ ଧଇଲେ କଲମ କାଳି

ପଲ୍ଲବିଗ୍ରାହୀଏ ପ୍ରବନ୍ଧ ଲେଖିଲେ
ସାର୍ ରିଡିଦିନ ପାଞ୍ଜ ବୋବାଲ ।"

'ଉତ୍କଳ ପ୍ରଭା' ନିଜର ଉଦ୍ଦେଶ୍ୟ ଘୋଷଣା କରି ପ୍ରଥମ ସଂଖ୍ୟାରେ ସୂଚନାରେ ଲେଖିଥିଲେ ଏହିପରି—"ଅବଶ୍ୟ ସ୍ୱୀକାର କରାଯାଏ ଯେ ଉପେନ୍ଦ୍ର, ଦୀନକୃଷ୍ଣ ପ୍ରଭୃତି ଉଚ୍ଚଦରର କବି ଥିଲେ । ସେମାନଙ୍କର କଳ୍ପନାଶକ୍ତି ଓ ନିପୁଣ ଦର୍ଶନ ଉତ୍କୃଷ୍ଟ ଏବଂ ସେମାନଙ୍କ ରଚିତ ଗ୍ରନ୍ଥରେ ମୌଳିକତା ଓ ଭାବଗାମ୍ଭୀର୍ଯ୍ୟର ଅଭାବ ନାହିଁ । କିନ୍ତୁ ଭଞ୍ଜକବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦିରସରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜନ୍ମାଇବାକୁ ହିଁ ସକ୍ଷମ ।"

ସମକାଳୀନ ଆଲୋଚକମାନେ ଯାହା କୁହନ୍ତୁନା କାହିଁକି, କବି ରାଧାନାଥ ଥିଲେ ଉପେନ୍ଦ୍ର ଭଞ୍ଜଙ୍କର ଉପଯୁକ୍ତ ଉତ୍ତରାଧିକାରୀ । ସେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅତ୍ୟନ୍ତ ନିପୁଣ ଭାବରେ ଚର୍ଚ୍ଚା କରିଥିଲେ । ଓଡ଼ିଆ କାବ୍ୟଯୁଗର କବିମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଥିବାରୁ ପ୍ରଥମ କାଳରେ ନିଜର ବଙ୍ଗଳା କବିତାରେ ସେମାନଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଯାଇଅଛନ୍ତି । କିଶୋର ବୟସରେ ବଙ୍ଗଳା ଲେଖା ମାଧ୍ୟମରେ ରାଧାନାଥ ଉପେନ୍ଦ୍ରଙ୍କୁ ଏହିପରି ସମ୍ମାନ ଜ୍ଞାପନ କରିଥିଲେ—

ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
ଧରିଲ ଉପେନ୍ଦ୍ର ମରି ଯେ ସ୍ମୃତି ଭୂଷଣ
ସାଜାୟେଛ ବୈଦେହୀଶ ହେ କବିରତନ
ତୋମାବିନା ସାଧ୍ୟ କାର ସାଜାୟ୍ ଏମନ ।

କେବଳ ସେତିକି ନୁହେଁ, କବିଶ୍ରେଷ୍ଠ ଉପେନ୍ଦ୍ରଙ୍କ ପ୍ରତି ତାଙ୍କର କିପରି ସମ୍ମାନ ଥିଲା, ତାହା ୧୮୭୯ ଖ୍ରୀଷ୍ଟାବ୍ଦ ମେ ୨୩ ତାରିଖ "ଏଡୁକେସନ ଗେଜେଟ"ରେ ଭୂଦେବ ମୁଖୋପାଧ୍ୟାୟଙ୍କ କବିତା ପାଠ କଲେ ଜଣାଯାଏ—

"ସେଇଦିନ ରାଧାନାଥ ଆଛେ ତବ ମନେ
ସେଇଦିନ ପ୍ରିୟବର ମମ ସନ୍ନିଧାନେ
ବସିୟା ଅଗାଧ ସୁଖେ
ହରଷିତ ସ୍ମିତ ମୁଖେ
ଉପେନ୍ଦ୍ର ଭଞ୍ଜେର ସେଇ କବିତା ସୁନ୍ଦର
ଶୁନାୟେ ମୋହିୟାଛିଲେ ଆମାର ଅନ୍ତର ।"

ବାସ୍ତବିକ ରାଧାନାଥଙ୍କ ସାହିତ୍ୟକାନନରେ ଭ୍ରମଣ କଲେ ରୀତିଯୁଗ ସାହିତ୍ୟର ଆଦର୍ଶ ସେ କିପରି ନିପୁଣ ଭାବରେ ଗ୍ରହଣ କରିଛନ୍ତି, ତାହା ଜଣାଯାଏ । ପାର୍ବତୀ, ନନ୍ଦିକେଶ୍ୱରୀ, ଯଯାତିକେଶରୀ ପ୍ରଭୃତି କାବ୍ୟ ରୀତିଯୁଗ କାବ୍ୟର ନୂତନ ସଂସ୍କରଣ ପରି ମନେ ହୋଇଥାଏ । ରାଧାନାଥ ଥିଲେ ବହୁପାଠୀ କବି । ସଂସ୍କୃତ ସାହିତ୍ୟ ଏବଂ ପ୍ରାଚୀନ

ଓଡ଼ିଆ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ଅଧିକାଂଶ କାବ୍ୟର କଥାବସ୍ତୁ ବୈଦେଶିକ ଭାବନାର ପୃଷ୍ଠଭୂମି ଉପରେ ଆଧାରିତ ହୋଇଥିଲେ ହେଁ ସେ ସେହି କାବ୍ୟଗୁଡ଼ିକରେ ପ୍ରାଚୀନ ରୀତିଯୁଗର ଆଦର୍ଶରେ ରାଜପରିବାର ନାୟକନାୟିକା-ମାନଙ୍କୁ ଗ୍ରହଣ କରିଅଛନ୍ତି । ଓଡ଼ିଶାର ଇତିହାସରୁ ତାଙ୍କର କଥାବସ୍ତୁ ଗୃହୀତ ହେଲା ପରି ମନେ ହୋଇଥାଏ । କେବଳ 'କେଦାର ଗୌରୀ' କାବ୍ୟର ନାୟକ ନାୟିକା ସାଧାରଣ ସ୍ତରରୁ ଗ୍ରହଣ କରାଯାଇଛନ୍ତି । ପ୍ରାଚୀନ କାବ୍ୟରେ ଶୃଙ୍ଗାର ଭାବନା ମୁଖ୍ୟ ରସ ରୂପେ ଆଲୋଚିତ ହୋଇଛି । ରାଧାନାଥଙ୍କ କାବ୍ୟରେ ଶୃଙ୍ଗାର ରସର ଅବତାରଣା ଅତୁଳନୀୟ । ଯଯାତି କେଶରୀ କାବ୍ୟରେ ରାଧାନାଥ ଲଳିତାର ରୂପ ବର୍ଣ୍ଣନା ଛଳରେ ଲେଖିଛନ୍ତି—

ଥୋପି ପଡ଼ୁଅଛି କି ରଙ୍ଗେ ରକ୍ତିମା
ସେ ରଙ୍ଗ ଓଷ୍ଠ ଅଧରେ
ଦନ୍ତପନ୍ତି ତହିଁ ମୋତିପନ୍ତି କି ସେ
ମାଣିକ୍ୟ-ପୁଟ କୁହରେ ?
ଭିଡ଼ା ହୋଇ ଉଚ୍ଚ ଘନ ସ୍ତନ-ଯୁଗ୍ମ
କାଞ୍ଚନ-କଞ୍ଚୁକେ ବଦ୍ଧ
ବିକଚ-କୁସୁମ ସୀତାଂଶୁ କି ପକ୍ୱ
ପାଣ୍ଡୁର ପର୍ଣ୍ଣେ, ପିନଦ୍ଧ ?
ସ୍ତନ ଜଘନର ମଧ୍ୟେ କଟୀ କାମ-
ତୀର୍ଥ ପ୍ରାୟେ ପ୍ରତିଭାତ
ତୀର୍ଥ-କାକ ପ୍ରାୟେ ଲଖି ନେତ୍ର ଯହିଁ
କରୁଥାଇ ଆତଯାତ ।
ଘନ ଜଘନାର ଘନ ଜଘନ କି
କାମ ବଣିକର ଫନ୍ଦା ?
ଉରୁ-ଯୁଗେ କାଞ୍ଚି— ଦାମେ ମତ୍ତକାମ-
କରୀ କି ହୋଇଛି ବନ୍ଧା ?
(ପ୍ରଥମ ସର୍ଗ)

ରୀତିକବିମାନଙ୍କ ପରି ଏଥିରେ କଳ୍ପନାପ୍ରବଣତା ପ୍ରକାଶ ପାଇ ନାହିଁ କି ? ଉଦାହରଣ ଛଳରେ ଏହିପରି ବହୁ ଉଦ୍ଧୃତାଂଶ ଚନ୍ଦ୍ରଭାଗା, ନନ୍ଦକେଶରୀ ଉଷା ପ୍ରଭୃତିରୁ ପ୍ରଦାନ କରାଯାଇ ପାରେ । ଉଷା ସୁନ୍ଦରୀର ରୂପ ବର୍ଣ୍ଣନାରେ କବି କାବ୍ୟଯୁଗ କବିମାନଙ୍କର ଯଥାର୍ଥ ଅନୁସରଣ କରିଥିଲା ପରି ମନେ ହୋଇଥାଏ ।

"କ୍ରମେ ଯଥାକାଳେ ଛୁଇଁଲା ଛଇଳା ଯୌବନ-ସୀମା
ଉପମା-ସୃଷ୍ଟିକୁ ବୁଡ଼ାଇ ଦେଲା ତା ରୂପ-ଗରିମା ।

ଅମରଲୋକେ ତାର ଯୋଗ୍ୟ ପଟାନ୍ତର କାହିଁ ମହିଳା ?
ଦିବ୍ୟଲୋକେ ଏକା ସମ୍ଭବେ ସିନା ସେ ଲାବଣ୍ୟ ଲୀଳା;
ତରଳ-ତାରକା-ହାରମୟୀ, ନାକ-ନାଗରୀ-ଟୀକା
ସମକକ୍ଷ ତାର ହେଲେ ହେବେ ଶଚୀ ସ୍ୱର୍ଗ ଚନ୍ଦ୍ରିକା ।
ତରଙ୍ଗ-ଦୋଳାରେ ଦୋଳାୟିତ କିବା ସିନ୍ଧୁ ଦୁଲଣୀ
ଲୀଳା-ଅରବିନ୍ଦ-ଧାରିଣୀ ଅମଳ-କମଳାନନା ।

× × × ×

ଆଜନ୍ତମ୍ବ-ଲମ୍ବି କେଶ ଗୁଚ୍ଛେ ଶୋଭୁ-ଥାଇ ଚରମ,
ଦର୍ଶକ-ହୃଦୟେ ଉପୁଜାଇ ନୀଳ-ଭୁଜଙ୍ଗୀ-ଭ୍ରମ ।

× × + ×

ହେଲେ ନେଉଥାଇ ଦେଖଣାହାରଙ୍କ ହୃଦୟ ହରି
ଜଗତଯୋଷାଙ୍କ ଖୋଷାଭୂଷା ସେହି ଉଷା ସୁନ୍ଦରୀ ।

ରୀତିଯୁଗର ଯେ କୌଣସି କାବ୍ୟ ପାଠ କଲେ କାବ୍ୟନାୟିକା ଏହିପରି ପାଠକଙ୍କ ସମ୍ମୁଖରେ ପ୍ରତିଭାତ ହୋଇଥାଆନ୍ତି । ବିଶେଷତଃ ଯଯାତିକେଶରୀରେ କବି ପ୍ରାଚୀନ କବିମାନଙ୍କ ପରି ସମ୍ଭୋଗଶୃଙ୍ଗାରର ଅବତାରଣାରେ ଯଥେଷ୍ଟ ସଫଳତା ଅର୍ଜନ କରିଛନ୍ତି । ଅଳଙ୍କାର ପ୍ରୟୋଗ କ୍ଷେତ୍ରରେ ସୁଦ୍ଧା ରାଧାନାଥ ରୀତିଯୁଗର କବିମାନଙ୍କୁ ଆଦର୍ଶରୂପେ ଗ୍ରହଣ କରିଅଛନ୍ତି । ଅବଶ୍ୟ ସେ ଯୁଗରୁଚିକୁ ଅନୁଧ୍ୟାନ କରି ଶବ୍ଦାଳଙ୍କାରର ବହୁଳ ପ୍ରୟୋଗକୁ ପରିହାର କରିଥିବା ଜଣାଯାଏ । ମାତ୍ର ପ୍ରସଙ୍ଗକ୍ରମେ ଅର୍ଥାଳଙ୍କାରର ସଙ୍ଗତ ସମାବେଶ ଅତ୍ୟନ୍ତ ମନୋଜ୍ଞ ହୋଇଅଛି । ଏ କ୍ଷେତ୍ରରେ ରାଧାନାଥଙ୍କର ସ୍ୱରୁଚି ଲକ୍ଷ୍ୟ କରିବାର କଥା । ମୋଟ ଉପରେ କବି ସର୍ବତ୍ର କ୍ଲିଷ୍ଟତା ପରିହାର ପାଇଁ ସତର୍କ ରହି ବିଭିନ୍ନ ରସର ଅବତାରଣା କରିବାପାଇଁ ଉଦ୍ୟମ କରିଅଛନ୍ତି । କଳ୍ପନାବିଳାସର ବୈଚିତ୍ର୍ୟ ରାଧାନାଥଙ୍କୁ ଶ୍ରେଷ୍ଠ କବିର ଆସନ ପ୍ରଦାନ କରିଅଛି । ଯଦିଓ ଯେପରି ରୀତି ଯୁଗର କାବ୍ୟ ଶୈଳୀ ମାର୍ଜିତ ଆକାରରେ ରାଧାନାଥଙ୍କ କାବ୍ୟସଂସାରରେ ପରୀକ୍ଷିତ ହୋଇଅଛି । ସରଳ ଓ ସୁବୋଧ ଭାଷାବିନ୍ୟାସ ମଧ୍ୟରେ କବି ନିଜର ବହୁପାଠିତା, ପାଣ୍ଡିତ୍ୟ ଏବଂ ଆଳଙ୍କାରିକତାର ପରିଚୟ ପ୍ରଦାନ କରିଅଛନ୍ତି । ଏହି ପ୍ରସଙ୍ଗରେ କେତେଗୋଟି ଉଦାହରଣ ଯୁକ୍ତିସମ୍ମତ ହୋଇପାରିବ ।

**ଅନୁପ୍ରାସ**

ଶାଳ୍ମଳୀ-ଶଇଳ-ଭୃଗୁରୁ ବଳାଙ୍ଗୀ-ପ୍ରପାତ ସହିଁ
ନଳ-ବନାକୀର୍ଣ୍ଣ-କଳୀ-ଗର୍ଭେ କଳ-ନାଦେ ଝରଇ । (ଉଷା)

**ଉତ୍ପ୍ରେକ୍ଷା**

ହେମରେଖା ପୃଷ୍ଠେ କନକ ସକାଶ
ଚରମେ ଦୋଳଇ ନୀଳ କେଶ ପାଶ

ପିଇବାକୁ ଶଶୀଦେହୁ ସୁଧାରାଶି
ପଛେ ଧାଇଁ ରାହୁ ଧରନ୍ତୁ କି ଆସି ? (ନନ୍ଦକେଶରୀ)

**ମାଳୋପମା**

ମିଶିଯାଏ ଯଥା ପ୍ରଭାସ
ତାର ଉତ୍ସକରଣେ,
ମିଶିଯାଏ ଯଥା ଜୀବାତ୍ମା
ବିଶ୍ୱ-ଆତ୍ମା ଚରଣେ,
ମିଶିଯାଏ ଯଥା ଚପଳା
ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା
ସେହି ନୀଳ ତରଙ୍ଗେ ।" (ଚନ୍ଦ୍ରଭାଗା)

**ବ୍ୟତିରେକ**

ନୀଳିମାରେ ବାମା ସ୍ୱରୁ କେଶପାଶ
ତୋ ନୀଳ-ଚାଚକ କଲା ଉପହାସ,
ତେଣୁ କି ତରଙ୍ଗ ଅପମାନ ଭରେ
ଶିର ପିଟୁଥିଲେ ତରଣୀ-ପଞ୍ଜରେ ? (ଚିଲିକା)

ଖ୍ୱାରଯୁଗର କାବ୍ୟରେ ସ୍ଥାନେ ସ୍ଥାନେ ଅଲୌକିକ ପ୍ରସଙ୍ଗର ଅବତାରଣା କରାଯାଇଥାଏ । ବାହ୍ୟତଃ କାବ୍ୟଯୁଗର ନାୟକ ନାୟିକାଗଣ ମାନବ ମାନବୀ ହେଲେହେଁ ସେମାନଙ୍କର ଜନ୍ମଜାତକ ଆଲୋଚନା କଲେ ଜଣାଯାଏ ଯେ ସେମାନେ ପ୍ରାୟତଃ ଦୈବୀଚରିତ୍ର । ଯେପରି କାବ୍ୟନାୟିକା ଲାବଣ୍ୟବତୀ ପାର୍ବତୀଙ୍କ ଦ୍ୱାରା ଶାପଗ୍ରସ୍ତା ହୋଇ ମର୍ତ୍ତ୍ୟରେ ଅବତୀର୍ଣ୍ଣା ହୋଇଥିଲ ଏବଂ ନାୟକ ଚନ୍ଦ୍ରଭାନୁ ସହିତ ମିଳିତ ହେବାପାଇଁ ଶକ୍ତିମୟୀ ଚଣ୍ଡୀ ସାହାଯ୍ୟ କରିଥିବା ଜଣାଯାଏ । ରସିକ ହାରାବଳୀର ନାୟିକା ଇନ୍ଦ୍ରଙ୍କ ଦରବାରରେ ଶାପଗ୍ରସ୍ତା ବିଦ୍ୟାଧରୀ କନ୍ୟା । ସେହିପରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ବ୍ରହ୍ମାଙ୍କ ଆଶୀର୍ବାଦ ଲଭିକରି କିଛିକାଳ ପାଇଁ ମର୍ତ୍ତ୍ୟଲୀଳା କରିଥିଲେ । ବିଦଗ୍‌ଧଚିନ୍ତାମଣିରେ ଯୋଗମାୟା ରାଧାକୃଷ୍ଣଙ୍କର ମିଳନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଛନ୍ତି । ସେହିପରି ରାଧାନାଥଙ୍କର ଉଷା ମର୍ତ୍ତ୍ୟରେ ଅଭିଶପ୍ତ ହୋଇ ଜନ୍ମଗ୍ରହଣ କରିଥିଲେ । ପାର୍ବତୀରେ ପ୍ରେତର ଅବତାରଣା କରାଯାଇଛି । ଦୁଃଖିନୀ କୌଶଲ୍ୟା ପ୍ରେତରୂପେ ରାଜଉଦ୍ୟାନରେ ବିଚରଣ କରି ନିଜର ଦୁଃଖ ବର୍ଣ୍ଣନା କରିଅଛି । ନନ୍ଦକେଶରୀରେ ଦେବୀଦତ୍ତ ମଣିଯୋଗୁ ଗୌରଗଙ୍ଗ ବାରବାଟୀ ଦୁର୍ଗକୁ ଭେଦ କରିପାରିନାହାନ୍ତି । ମହାଯାତ୍ରାରେ ଦିବ୍ୟାଲୋକ ଲଭିକରି ପାଣ୍ଡବଗଣ ଭବିଷ୍ୟତର ଚିତ୍ର ଲକ୍ଷ୍ୟ କରିପାରିଅଛନ୍ତି ।

କେବଳ ସେତିକି ନୁହେଁ, ପ୍ରାଚୀନ କାବ୍ୟର ବହୁ ପଦ ସହିତ ରାଧାନାଥଙ୍କ ରଚିତ ପଦଗୁଡ଼ିକର ସାମ୍ୟ ଲକ୍ଷ୍ୟ କରାଯାଏ ।

ଏ ଯୋଷା-ଚରଣ-ଘଷା ପଥରକୁ
ନୋହିବେଟି କେହି ସରି ।" (ଯଯାତିକେଶରୀ

ଏହି ପଦଟିର ଅନୁଚିନ୍ତା ଲାବଣ୍ୟବତୀର "ଏ ଯୋଷା ଯୋଗ୍ୟ ନୋହେ ତା ପଦଘଷା—ଉପଲ ଉପମା ଦେବାକୁ" ସହିତ ତୁଳନୀୟ । ସେହିପରି ନନ୍ଦକେଶ୍ୱରୀର—

"ପ୍ରେମବନେ ତାଙ୍କୁ କରି ଛିଦପଡ଼
ପ୍ରେମିକା-କୂଳେ ମୁଁ ଝେକାଇବି ଛଡ଼ ।"

ବିଦଗ୍ଧ ଚିନ୍ତାମଣିର "ଝେକାଇବି ତୁମ୍ଭେ ରସିକେ ଛଡ଼" ପଦର ଅନୁରୂପ ।

ତେଣୁ ବିଗତ ଶତାବ୍ଦୀର ଶେଷଭାଗରେ ଇନ୍ଦ୍ରଧନୁ-ବିଜୁଳି ପତ୍ରିକା ଦ୍ୱୟର ସଂଘର୍ଷ ସମ୍ପର୍କରେ ମତପ୍ରକାଶ କରି କବି ରାଧାନାଥ ୫।୨।୧୮୯୪ ତାରିଖର "ଓଡ଼ିଆ ଓ ନବ ସମ୍ବାଦ" ପତ୍ରିକାରେ ଯେଉଁ ମତ ବ୍ୟକ୍ତ କରିଥିଲେ, ତାହା ଏ ସ୍ଥଳରେ ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ ।

"ଭଞ୍ଜକବିଙ୍କୁ ମୁଁ ମୋହର ଏକଟର ଶିକ୍ଷାଗୁରୁ ଜ୍ଞାନ କରି ଆବାଲ୍ୟ ଭକ୍ତି କରି ଆସିଅଛି । ମୁଁ ଯେ କେବଳ ବାକ୍ୟତଃ ତାହାଙ୍କ ପ୍ରତି ଭକ୍ତି ଦେଖାଇଅଛି ତାହା ନୁହେଁ, କାର୍ଯ୍ୟତଃ ଭକ୍ତି ଦେଖାଇବାର ଅନେକ ନିଦର୍ଶନ ମୋହୋର ନିଜ ପ୍ରକାଶିତ ପଦ୍ୟରୁ ସଙ୍କଳିତ ହୋଇପାରେ । ମୋହୋଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟଲେଖକ ଓଡ଼ିଆରେ ବୋଧହୁଏ ଅଳ୍ପ ବାହାରିବେ । ଭଞ୍ଜଙ୍କ ରଚନାର ମୁଁ ଯେଉଁ ଯେଉଁ ଅଂଶ ପଢ଼ିଅଛି, ସେଥିରୁ ମୋହୋର ଏହି ଉପଲବ୍ଧି ହୋଇଅଛି ଯେ ସେ ଜଣେ ଅସାଧାରଣ କବି ଥିଲେ । ଆଧୁନିକ ଲେଖକଙ୍କର ତ କଥା ନାହିଁ, ଭଞ୍ଜଙ୍କପରି ଭିନ୍ନ ଭିନ୍ନ ବିଷୟରେ ସମାନ ସୌଭାଗ୍ୟଶାଳୀ କବି ପ୍ରାଚୀନକାଳରେ ସୁଦ୍ଧା ଉତ୍କଳରେ ଆବିର୍ଭୂତ ହୋଇନଥିଲେ । କୌଣସି କୌଣସି ପ୍ରାଚୀନ କବି ଏକ ଏକ ବିଷୟରେ ତାହାଙ୍କଠାରୁ ଅଧିକତର ଉତ୍କର୍ଷ ଦେଖାଇଥିଲେହେଁ ସମଷ୍ଟିରେ କେହି ତାହାଙ୍କର ସମକକ୍ଷ ହୋଇପାରି ନାହାନ୍ତି ।"

## ରାଧାନାଥଙ୍କ କାବ୍ୟରେ ଭୌଗୋଳିକ ସୌନ୍ଦର୍ଯ୍ୟ
## କିମ୍ବଦନ୍ତୀ ଓ ଐତିହାସିକ ବିଭବ

କବି ଜଣେ ସାମାଜିକ ପ୍ରାଣୀ । ପରମ୍ପରାରେ ପ୍ରଚଳିତ କାହାଣୀ, କିମ୍ବଦନ୍ତୀ ଏବଂ ପୌରାଣିକ ଘଟଣା ସହିତ ସେ ସୁପରିଚିତ ଥାଏ । ନିଜର କାବ୍ୟ ରଚନା କାଳରେ କେତେବେଳେ ଜାଣତରେ ଅଥବା ଅଜାଣତରେ ଏହି ସବୁର ସ୍ପଷ୍ଟ ଛାପ ତାଙ୍କର କାବ୍ୟ ମଧ୍ୟରେ ପ୍ରତିଭାତ ହେବା ସ୍ୱାଭାବିକ । ଭାରତବର୍ଷ ଏକ ପୁରାଣସେବିତ ଦେଶ । ଏହି ଦେଶରେ ହଜାର ହଜାର ବର୍ଷ ଧରି ପୁରାଣର ପରମ୍ପରା ଚାଲିଆସିଛି । ଭାରତୀୟ

ସାହିତ୍ୟ ବୁଝିବାପାଇଁ ହେଲେ ଭାରତୀୟ ପୁରାଣ ସମ୍ପର୍କରେ ଧାରଣା ଥିବା ଆବଶ୍ୟକ । ରାଧାନାଥ ଜଣେ ପଣ୍ଡିତ ବ୍ୟକ୍ତି ଥିଲେ । ସେ ଭାରତୀୟ ପୁରାଣ ଶାସ୍ତ୍ର ଅଧ୍ୟୟନ କରିଥିଲେ । ପ୍ରକୃତିପ୍ରେମୀ ରାଧାନାଥ ଦେଶର ବହୁ ଅଞ୍ଚଳ ପରିଭ୍ରମଣ କରିବାର ସୁଯୋଗ ଲାଭ କରି ବିଭିନ୍ନ ସ୍ଥାନରେ ପ୍ରଚଳିତ କିମ୍ବଦନ୍ତୀ ଏବଂ ଐତିହାସିକ ବିଭବ ସହିତ ମଧ୍ୟ ପରିଚିତ ଥିଲେ । ରାଧାନାଥଙ୍କ କାବ୍ୟରେ ଏହି ସବୁର ଯଥାଯୋଗ୍ୟ ଅବତାରଣା ଅତ୍ୟନ୍ତ ସାର୍ଥକ ହୋଇଛି । ତାଙ୍କର ଅଧିକାଂଶ କାବ୍ୟର କଥାବସ୍ତୁ ବିଦେଶୀ କାବ୍ୟ ସଂସାରରୁ ଗୃହୀତ ହୋଇଥିଲେହେଁ ଦେଶୀୟ ପୁରାଣ, କିମ୍ବଦନ୍ତୀ ଏବଂ ଐତିହାସିକ ଘଟଣାବଳୀ ଦ୍ୱାରା ସେଗୁଡ଼ିକୁ ସେ ଏପରି ଭାବରେ ସଜ୍ଜିତ କରି ଦେଇଛନ୍ତି ଯେ ତାହାକୁ ବିଦେଶୀୟ ବୋଲି ଜାଣିବାର କୌଣସି ଉପାୟ ନାହିଁ ।

ରାଧାନାଥ କୈଶୋର ଜୀବନରେ କେବଳ ପୁରାଣକୁ ଅବଲମ୍ବନ କରି କେତେଗୋଟି ରଚନା ବଙ୍ଗଳାଭାଷାରେ ପ୍ରଣୟନ କରିଥିଲେ । ଏଥିପାଇଁ ଭୂଦେବ ମୁଖୋପାଧ୍ୟାୟ ତାଙ୍କୁ ଭର୍ତ୍ସନା କରି ମୌଳିକ କଥାବସ୍ତୁ ଅବଲମ୍ବନରେ କାବ୍ୟ ରଚନା କରିବାପାଇଁ ପରାମର୍ଶ ପ୍ରଦାନ କରିଥିଲେ । ମାତ୍ର ମୌଳିକ କଥାବସ୍ତୁର ପରିକଳ୍ପନା ରାଧାନାଥଙ୍କ ପ୍ରତିଭାର ଅନୁକୂଳ ନ ଥିଲା । ସେ ଯେଉଁ କେତୋଟି ଓଡ଼ିଆ କାବ୍ୟ କବିତା ଲେଖିଅଛନ୍ତି, ସେଗୁଡ଼ିକ ମଧ୍ୟରେ 'ବେଣୀସଂହାର, ଉର୍ବଶୀ, ଦଶରଥ ବିୟୋଗ ସାବିତ୍ରୀଚରିତ, ବାଣହରଣ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ', ଇତ୍ୟାଦି ମୁଖ୍ୟତଃ ପୁରାଣର କଥାବସ୍ତୁ । ଆଧୁନିକ କାବ୍ୟରୂପ ପ୍ରଦାନ କରି ଏହି ପୌରାଣିକ କଥାବସ୍ତୁ ପରିବେଷଣ କରିବାଦ୍ୱାରା ତାଙ୍କର ପୁରାଣପ୍ରୀତି ଅନୁଭୂତ ହେଉଅଛି । ଏତଦ୍‌ବ୍ୟତୀତ ପ୍ରତ୍ୟେକଟି କାବ୍ୟରେ ସେ ପୁରାଣର ନାନା ଘଟଣାବଳୀର ଅବତାରଣା କରି ବିଷୟର ବର୍ଣ୍ଣନା ବଳୀସକୁ ମନୋଜ୍ଞ କରିଅଛନ୍ତି ସେହିପରି ଓଡ଼ିଶାର ନଦନଦୀ, ପର୍ବତ, ଉପତ୍ୟକା, ମନ୍ଦିର ପ୍ରଭୃତି ବିଭିନ୍ନ ସ୍ଥାନର ବର୍ଣ୍ଣନା କଲାବେଳେ ତତ୍‌ସନ୍ନିହିତ କିମ୍ବଦନ୍ତୀ ମଧ୍ୟ ସେ ଦେବାପାଇଁ ଭୁଲି ନାହାନ୍ତି ! ବିଦେଶୀ କଥାବସ୍ତୁରୁ ଆହରଣ କରି କେଦାରଗୌରୀ କାବ୍ୟ ରଚନା କରାଯାଇଥିଲେହେଁ ସାଧାରଣ ଲୋକେ ତାହାକୁ ପୁରାଣର ଆଖ୍ୟାୟିକା ରୂପେ ବିଶ୍ୱାସ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ରାଧାନାଥ ନୀତିବାକ୍ୟ-କବି ଥିଲେ । ପୁରାଣର ଅବତାରଣା ଛଳରେ ସେ ଦୈବୀ ବିଶ୍ୱାସ ଏବଂ ଅଲୌକିକତାର ସମ୍ପାଦନ ସଙ୍ଗେ ସଙ୍ଗେ ନୀତିଗର୍ଭିତ ବିଚାରକୁ ଆରୋପ କରିବାପାଇଁ ଚେଷ୍ଟା କରିଛନ୍ତି । ଚିଲିକା ଏକ ପ୍ରକୃତି-ରସାଶିତ କାବ୍ୟ । ଏଥିରେ ପୌରାଣିକ କଥାବସ୍ତୁର ଅବତାରଣା ପାଇଁ ସୁଯୋଗ ଅତ୍ୟନ୍ତ ଅଳ୍ପ । ତଥାପି ପ୍ରସଙ୍ଗୋଚିତ ଭାବରେ ରାଧାନାଥ ତାହା ପ୍ରଦାନ କରିଛନ୍ତି । ଚିଲିକାର ପର୍ବତମାନଙ୍କୁ ଲକ୍ଷ୍ୟ କରି ସେ କହିଛନ୍ତି—

ପକ୍ଷଛେଦ-ଶଙ୍କା ଭୟେ କି ଶଇଲେ
ଲୁଚି ରହିଥିଲେ ତୋହରି ସଲିଳେ ।

ପୁରାଣ ଯୁଗରେ ପର୍ବତମାନଙ୍କର ପକ୍ଷ ଥିଲା ବୋଲି କଥିତ ହୋଇଛି । ଜଗତର କଲ୍ୟାଣ ପାଇଁ ଇନ୍ଦ୍ର ସେମାନଙ୍କର ପକ୍ଷ ଛେଦନ କରିଥିଲେ । ସେହିପରି "ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି" "ମହୋଜ୍ଜ୍ୱଳ କୁମ୍ଭ-ସମ୍ଭବ ଜ୍ୟୋତି", 'ମସ୍ୟ ବିରଚିତ ଯାନେ ବୈରୋଚନି', 'ତେଜଃପୁଞ୍ଜ-ଭୃଗୁ-ପ୍ରଭାବେ ପାବନ' 'ଦସ୍ୟୁ-ବୀର ଧୀର ମୁନୀନ୍ଦ୍ର ଦଧୀଚି', 'ଚନ୍ଦ୍ରା ସଙ୍ଗେ ଏବେ ମିଳିଲେ ଚନ୍ଦ୍ରମା' ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ', 'ସର୍ପେ ଶିବ ଚନ୍ଦ୍ରଚୂଡ଼ ତନୁ ଭଳି' ପ୍ରଭୃତି ପଦଗୁଡ଼ିକରେ ପୁରାଣର ଇଙ୍ଗିତ ପ୍ରଦାନ କରାଯାଇଛି । ଏଗୁଡ଼ିକ କେବଳ କାବ୍ୟର ଅର୍ଥ-ବୋଧ ପାଇଁ ସାହାଯ୍ୟ କରେ ନାହିଁ, ପାଠକକୁ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ନେଇଯାଏ । ମହାଯାତ୍ରା, ପାର୍ବତୀ, ଉଷା, ଚନ୍ଦ୍ରଭାଗା ପ୍ରଭୃତି କାବ୍ୟରେ ଏହି ଅଲୌକିକ ପୁରାଣ ଭାବଧାରାର ତୁଳନା ନାହିଁ । ଉଷାର ଜନ୍ମ ସମ୍ପର୍କରେ କବି ଲେଖିଛନ୍ତି—

'ଭବ ବନ୍ଧନର କ୍ଳେଶ, ଦେବୀ ମୁହିଁ ଭୋଗିଲି ଥରେ
ଦୁର୍ବାସାଙ୍କ ଶାପେ ବାଣ କନ୍ୟା ରୂପେ ଜନ୍ମ ଦ୍ୱାପରେ ।

ଚନ୍ଦ୍ରଭାଗାରେ ସ୍ୱୟଂ ସୂର୍ଯ୍ୟ ନାୟକ ରୂପରେ ଉପସ୍ଥିତ ହୋଇଛନ୍ତି । ଉଷା କାବ୍ୟରେ କାର୍ତ୍ତିକେୟଙ୍କ ପ୍ରସାଦରେ ଜୟନ୍ତ ପ୍ରତଯୋଗିତାରେ ଜୟଲାଭ କରିଛନ୍ତି । ନନ୍ଦିକେଶ୍ୱରୀ କାବ୍ୟରେ ଚଣ୍ଡୀଙ୍କର କୈନ୍ଦମଣି ଲାଭ କରି ଉତ୍କଳର ଗଜପତି ଅଜେୟ ହୋଇ ପାରିଛନ୍ତି । ମହାଯାତ୍ରାରେ ସ୍ୱୟଂ ଅଗ୍ନି ପାଣ୍ଡବମାନଙ୍କୁ ପଥ ନିର୍ଦ୍ଦେଶ କରିଅଛନ୍ତି । ଏହା ବ୍ୟତୀତ ଓଡ଼ିଶାର ଅସଂଖ୍ୟ ନଦନଦୀ, ପର୍ବତ ମନ୍ଦିର ପ୍ରଭୃତି ସହିତ ଯେଉଁ ପୌରାଣିକ ଉପାଖ୍ୟାନ ଜଡ଼ିତ ଅଛି, କବି ସେ ସବୁ ଉଲ୍ଲେଖ କରି କାବ୍ୟର ଗୌରବ ବୃଦ୍ଧି କରି ଅଛନ୍ତି ।

ପୁନଶ୍ଚ ଇତିହାସ ଏବଂ କିମ୍ବଦନ୍ତୀର ଅବତାରଣା ମଧ୍ୟ ରାଧାନାଥଙ୍କ କାବ୍ୟ-ଧାରାର ଆଉ ଏକ ବିଶେଷତ୍ୱ । ସେ ଚିଲିକାରେ ଏହି ପ୍ରସଙ୍ଗରେ ସ୍ମରଣ କରାଇ ଦେଇଛନ୍ତି—

"ଇତିହାସ-ରଙ୍ଗସ୍ଥଳୀ ତୁ ଚିଲିକା
ତୋର ତୀରେ ପରା ଶ୍ରୀମତୀ ମାଣିକା—
ହସ୍ତେ ଭୃଙ୍ଗାର ଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।"

ରାଧାନାଥ ଥିଲେ ଜାତୀୟ ଯୁଗର କବି । ସେ ଦେଶର ଗୌରବ ଗାନ କରିବା ପାଇଁ ସର୍ବଦା ଚେଷ୍ଟିତ ହୋଇଛନ୍ତି । ତାଙ୍କ ଚକ୍ଷୁରେ ଉତ୍କଳର ଇତିହାସ ପ୍ରେରଣାର କ୍ଷେତ୍ର ହୋଇ ଦୀପ୍ତିମାନ ହୋଇଅଛି । ରାଧାନାଥଙ୍କ ସମୟରେ ବୈଜ୍ଞାନିକ ରୀତିରେ ଉତ୍କଳର ଇତିହାସ ସଂକଳିତ ହୋଇ ନ ଥିଲା । ମାଦଳା ପାଞ୍ଜି ଏବଂ କିମ୍ବଦନ୍ତୀ ଉପରେ ନିର୍ଭର କରି ଲୋକମାନେ ଇତିହାସର ବିଚାର କରୁଥିଲେ । ରାଧାନାଥଙ୍କର

ଐତିହାସିକ ସୂଚନା ଏହି କାରଣରୁ ଅନେକ ସମୟରେ ପ୍ରମାଦପୂର୍ଣ୍ଣ ହୋଇଯାଇ ଥିଲେହେଁ ଐତିହାସିକ କଥାବସ୍ତୁକୁ କାବ୍ୟିକ ରୂପ ପ୍ରଦାନ କରି ସେ ଅଭିନନ୍ଦିତ ହୋଇଅଛନ୍ତି । ତାଙ୍କର ଅଭିଯୋଗ ବାଗ୍‌ଦେବୀଙ୍କ ବିରୁଦ୍ଧରେ—

"ତୋ କୃପା ବିହୁନେ ଉତ୍କଳ ମାତାର
ନାମ-ଖ୍ୟାତି ଗ୍ରନ୍ଥେ ପଡ଼ିନାହିଁ ତା'ର ।"

ଚିଲିକା କାବ୍ୟରେ ରାଜା ପୁରୁଷୋତ୍ତମ ଦେବଙ୍କର ଐତିହାସିକ କାଞ୍ଚି ଅଭିଯାନ କଥାଟି କବି ସ୍ମରଣ କରାଇ ଦେଇଅଛନ୍ତି । ମହାକବି ଉପେନ୍ଦ୍ର, ସଙ୍ଗୀତ କବି କବିସୂର୍ଯ୍ୟଙ୍କର ପ୍ରତିଭା ସମ୍ପର୍କରେ ପାଠକ ଅବହିତ ହୋଇଅଛି । ପୁନଶ୍ଚ ଇତିହାସର କେଉଁ ଅନ୍ଧାରି ଯୁଗରେ ଯବନରାଜା ରକ୍ତବାହୁର ଆକ୍ରମଣ କଥାଟି ରାଧାନାଥ ଦାର୍ଶନିକ ଦୃଷ୍ଟିକୋଣରୁ ବର୍ଣ୍ଣନା କରି ଯାଇଅଛନ୍ତି । ସେହିପରି ଉଷା କାବ୍ୟରେ କବି ସମଗ୍ର ବାଲେଶ୍ୱର ଜିଲ୍ଲାର ଇତିହାସ ପ୍ରଦାନ କରିବା ପାଇଁ ସଚେଷ୍ଟ ହୋଇଅଛନ୍ତି । ପାର୍ବତୀ କାବ୍ୟ ପୂର୍ବତନ ଗଡ଼ଜାତର ଏକ ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ ।

"ଋଷିକୁଲ୍ୟା ଠାରୁ ସୁବର୍ଣ୍ଣ ତଟିନୀ
ଯାଏ ସର୍ବ ଜନପଦ
ନାନା ଉପାୟନେ ପୂଜୁଛନ୍ତି ଆଜି
ବୀର ଗଙ୍ଗେଶ୍ୱର ପଦ ।"

ଏହି ବର୍ଣ୍ଣନା ପ୍ରସଙ୍ଗରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଭୌଗୋଳିକ ଦୃଷ୍ଟି-କୋଣରୁ କିଏ କିପରି ପ୍ରସିଦ୍ଧି ଅର୍ଜନ କରିଅଛି, ତାହାର କେବଳ ବର୍ଣ୍ଣନା ପ୍ରଦତ୍ତ ହୋଇନାହିଁ, କଞ୍ଚୁକୀ ମୁଖରେ ଉତ୍କଳର ଇତିହାସକୁ ବିଶ୍ଳେଷଣ କରାଯାଇଛି । କଞ୍ଚୁକୀ ରାଜ-ପଟୁଆରରେ ଉପସ୍ଥିତ ଓଡ଼ିଶାର ରାଜନ୍ୟମଣ୍ଡଳୀକୁ ଚିହ୍ନାଇ ଦେବା ଛଳରେ ବିଭିନ୍ନ ଗଡ଼ଜାତର ଗୌରବମୟ ଇତିହାସକୁ ସୂଚିତ କରିଅଛି । ଚନ୍ଦ୍ରଭାଗା କାବ୍ୟରେ କବି ମନ୍ଦିରର ପତନ ସମ୍ପର୍କରେ ଯାହା ଉଲ୍ଲେଖ କରିଛନ୍ତି, ତାହା ଇତିହାସର ବିରୁଦ୍ଧାଚରଣ କରିଥାଏ । ମାତ୍ର ଏଥିରେ ପୁରୀ ଜିଲ୍ଲାର ଭୌଗୋଳିକ ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ହୋଇଅଛି । ପୌଷ ମାସରେ ଶ୍ରୀଜଗନ୍ନାଥଙ୍କର ଅଭିଷେକ ଉତ୍ସବ ଦେଖିବା ପାଇଁ ପୁରୀ ଜିଲ୍ଲାର ଦେବଦେବୀମାନେ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇଛନ୍ତି । ଏହି ବର୍ଣ୍ଣନା ଛଳରେ କବି ବିଭିନ୍ନ ସ୍ଥାନର ଭୌଗୋଳିକ ବିବରଣ ଏବଂ କିମ୍ବଦନ୍ତୀ ଦେବାକୁ ଭୁଲିଯାଇ ନାହାନ୍ତି ।

'ନନ୍ଦିକେଶ୍ୱରୀ' କଟକ ଜିଲ୍ଲାର ଏକ ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ ।

"ବହୁ ବର୍ଷ ବ୍ୟାପୀ ଲଗିଛି ସଂଗ୍ରାମ
ବହିଅଛି ରକ୍ତ-ସ୍ରୋତ ଅବିରାମ
ସମଗ୍ର ଉତ୍କଳୁଁ କେତେ ମହାବୀର
ରଣାଙ୍ଗନେ ଆସି ଦେଲେ ନିଜ ଶିର ।"

ସମଗ୍ର ଉତ୍କଳରୁ ବୀରମାନେ ଉତ୍କଳ ସମ୍ରାଟଙ୍କୁ ସାହାଯ୍ୟ କରିବା ପାଇଁ ନିକଟରେ ଶିବିର ସ୍ଥାପନ କରିଛନ୍ତି । ଏହି ବୀରମାନଙ୍କର ପରିଚୟ ପ୍ରଦାନ ଛଳରେ କବି କଟକ ଜିଲ୍ଲା ସହିତ ଓଡ଼ିଶାର ବିଭିନ୍ନ ଗଡ଼ାଧିପତିଙ୍କର ଐତିହାସିକ ପରିଚୟ ଦେଇ ଅଛନ୍ତି । ଏ କ୍ଷେତ୍ରରେ କବିଙ୍କର କୃତିତ୍ୱ ମହାଯାତ୍ରା କାବ୍ୟରେ ଅଧିକ ପ୍ରତିଫଳିତ ହୋଇଅଛି । ପ୍ରାଚୀନ ରୀତିଯୁଗର କବିମାନେ ଦେଶର ଇତିହାସ ପ୍ରତି ସର୍ବଦା ବିମୁଖ ଥିଲେ । ମାତ୍ର ରାଧାନାଥ ଓଡ଼ିଶାର ଇତିହାସକୁ ସାହିତ୍ୟିକ ଐଶ୍ୱର୍ଯ୍ୟ ପ୍ରଦାନ କରି ମହିମା ମଣ୍ଡିତ କରିଯାଇ ଅଛନ୍ତି । ତାଙ୍କ ମତରେ "ଶ୍ରେଷ୍ଠ ଏ ଉତ୍କଳ ଭୂମି ଗୁଣେ ଗରିୟସୀ ।" ପୁରାଣରେ ପାଣ୍ଡବଗଣ ଉତ୍କଳକୁ ଆଗମନ କରି ନ ଥିଲେ; ମାତ୍ର କବି ସାରଳା ଦାସଙ୍କୁ ଅନୁସରଣ କରି ପାଣ୍ଡବମାନଙ୍କୁ ଉତ୍କଳ ଭୂମିରେ ପଦାର୍ପଣ କରାଇ ଅଛନ୍ତି ଏବଂ ସେମାନେ ସେହି ଅବସରରେ ଉତ୍କଳର ତୀର୍ଥରାଜି ସନ୍ଦର୍ଶନ କରିବାକୁ ସୁଯୋଗ ଲାଭ କରିଛନ୍ତି ।

"ଏହିରୂପେ ନାନା ଦେଶ ବନ, ଜନପଦ—
ତୀର୍ଥାଶ୍ରମ ଗିରିପୂର୍ଣ୍ଣ ସାହନଦୀ ଦ୍ରୋଣୀ
କ୍ରମେ କ୍ରମେ ଅତିକ୍ରମି, ପ୍ରବେଶିଲେ ବୀରେ
ଦକ୍ଷିଣା ପଥର ଦ୍ୱାର ଦେହଲୀ ରୂପିଣୀ
ମାଳଭୂମି, ତିନି ମହାସ୍ରୋତର ପ୍ରସୂତା ।"

ଏହି ରୂପେ କବି କେବଳ ଉତ୍କଳର ଇତିହାସ ଏବଂ କମ୍ବଦନ୍ତୀର ଅବତାରଣା କରି ସନ୍ତୁଷ୍ଟ ରହି ନାହାନ୍ତି । ଉତ୍କଳୀୟ ନରନାରୀଙ୍କ ଜୀବନ ଚିତ୍ର, ଚଳଣୀ ଏବଂ ପରମ୍ପରା ଚିତ୍ରଣ କରିବାକୁ କବି ସକ୍ଷମ ହୋଇଛନ୍ତି । ଏହି କାରଣରୁ କବିଙ୍କର ସମଗ୍ର କାବ୍ୟ ସଂସାରରେ ଉତ୍କଳର ଶୋଭା ସମ୍ପଦର ବୈଚିତ୍ର୍ୟ ପରିପୂର୍ଣ୍ଣ ହୋଇଅଛି ।

## ଆହରଣ ଓ ସ୍ୱଜନ

ଓଡ଼ିଆ ସାହିତ୍ୟର ଇତିହାସରେ ଡକ୍ଟର ମାୟାଧର ମାନସିଂ ରାଧାନାଥଙ୍କ କବି ପ୍ରତିଭା ସମ୍ପର୍କରେ ଲେଖିଛନ୍ତି—"Radhanath took his stories from many sources—the mythologies of Greece and Rome, the Puranas, and the Oral Tradition as well as history of Orissa. The way he metamorphosed the foreign tales into Orissan stories is indeed a marvel."

ରାଧାନାଥ ଥିଲେ ବହୁଶାସ୍ତ୍ରଦର୍ଶୀ କବି । ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ସାହିତ୍ୟ ଆହରଣ କରି ସେ ଓଡ଼ିଆ ସାହିତ୍ୟକୁ ଐଶ୍ୱର୍ଯ୍ୟବନ୍ତ କରିଅଛନ୍ତି । ତାଙ୍କ ପୂର୍ବର ରୀତିଯୁଗର କବିମାନେ କେବଳ ସଂସ୍କୃତ ସାହିତ୍ୟକୁ ନିଜର କାବ୍ୟକଳାର ପ୍ରେରଣାର କ୍ଷେତ୍ରରୂପେ ଗ୍ରହଣ କରିଥିଲେ । ମାତ୍ର ରାଧାନାଥ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟରୁ

ମୂଲ୍ୟବାନ ଧାର କରି ଓଡ଼ିଆ କାବ୍ୟସୁନ୍ଦରୀଙ୍କୁ ଶ୍ରୀମଣ୍ଡିତ କରିଛନ୍ତି । ଏ କ୍ଷେତ୍ରରେ କବିଙ୍କର 'ମେଘଦୂତ' ଏବଂ 'ତୁଳସୀସ୍ତବକ' ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ମହାକବି କାଳିଦାସଙ୍କର ସଂସ୍କୃତ କାବ୍ୟ ମେଘଦୂତର ଏପରି ସାର୍ଥକ ଓଡ଼ିଆ ଅନୁବାଦ ଆଜିଯାଏ ହୋଇଛି ବୋଲି ମନେହୁଏ ନାହିଁ । ସେହି କବି ତୁଳସୀ ଦାସଙ୍କର ଦୋହାଗୁଡ଼ିକର ଅନୁବାଦ କରି ହିନ୍ଦୀ ସାହିତ୍ୟ ସହିତ ଓଡ଼ିଆ ପାଠକମାନଙ୍କୁ ପରିଚୟ କରାଇଅଛନ୍ତି । ରାଧାନାଥ କୌଣସିଠାରେ 'ତୁଳସୀସ୍ତବକ' ତୁଳସୀଦାସଙ୍କ ଲେଖାର ଅନୁବାଦ ବୋଲି ସ୍ୱୀକାର କରିନାହାନ୍ତି । ମାତ୍ର ହିନ୍ଦୀ ସାହିତ୍ୟର ଏହି ନୀତିଗର୍ଭିତ ବାକ୍ୟଗୁଡ଼ିକୁ ଓଡ଼ିଆ ସାହିତ୍ୟରେ ପରିବେଷଣ କରିବା ତାଙ୍କର ପ୍ରଧାନ ଲକ୍ଷ୍ୟଥିଲି । ଉଦାହରଣ ସ୍ୱରୂପ—

"ଲକ୍ଷ୍ମଣ ଘନ ଦେଖି ନାଚଇ କେକୀ
ଭକତ ଯଥା ଭବମାୟା ଉପେକ୍ଷି ।" (ରାଧାନାଥ)

"ଲକ୍ଷ୍ମଣ ଦେଖହୁଁ ମୋର ଗଣ
ନାଚତ ବାରିଦ ପେଖି
ଗୃହି ବିରତି ରତି ହର୍ଷ ଜସ
ବିଷ୍ଣୁ ଭକ୍ତ ହର୍ଷ ଦେଖି ।" (ତୁଳସୀ ଦାସ)

'ନୀଳ ନୀରଦ ମାଳେ ଖେଳେ ଚପଳା
ଖଳ ପୀରତି ପ୍ରାୟେ ସଦା ଚପଳା,
ବର୍ଷନ୍ତି ମହୀମୁଖେ ନଇଁ ଅମ୍ବୁଦେ
ବିଦ୍ୟା-ସମ୍ପଦେ ଯଥା ନମନ୍ତି ବୁଧେ' (ରାଧାନାଥ)

"ଦାମିନୀ ଦମକ ରହିତ ଘନ ମାହି
ଖଲକୋ ପ୍ରୀତି ଯଥା ଥିର ନହିଁ
ବର୍ଷହି ଜଳଦ ଭୂମି ତିଅରାୟେ
ଯଥା ନବହିଁ ବୁଧ ବିଦ୍ୟାପାୟେ ।' (ତୁଳସୀ ଦାସ)

ଉତ୍କଳର ରମ୍ୟପ୍ରକୃତି ଚିଲିକା କାବ୍ୟର ନାୟିକାରୂପରେ ଚିତ୍ରିତ ହୋଇଅଛି । ଏଥିରେ କବି ପ୍ରସଙ୍ଗକ୍ରମେ ଉତ୍କଳୀୟ ପ୍ରକୃତିର ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ଭାରତର ବିଭିନ୍ନ ପ୍ରଦେଶର ପ୍ରାକୃତିକ ପରିବେଶକୁ ମଧ୍ୟ ତୁଳନାତ୍ମକ ରୂପରେ ଚିତ୍ରଣ କରିଛନ୍ତି । ତେବେ ସୁଦ୍ଧା ଏହି ପ୍ରକୃତି କାବ୍ୟରେ କବି ରାଧାନାଥ ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ କବିମାନଙ୍କର ବହୁ ମୂଲ୍ୟବାନ ଭାବନାକୁ ଆହରଣ କରି ଏପରି ଚିତ୍ତାକର୍ଷକ ଭାବରେ ରୂପାୟିତ କରିଛନ୍ତି ଯେ ତାହା କବିଙ୍କର ମୌଳିକ ସମ୍ପଦରେ ପରିଣତ ହୋଇଯାଇଛନ୍ତି । ଯେପରି—

"ହସିଖେଳି ସେହୁ ଗମନ୍ତି ସମସ୍ତ,
ଜୀବନ ମଣନ୍ତି ମହୋତ୍ସବମୟ ।"

Smiling they live and called life pleasure
To me that cup has been dealt in another measure"
(Shelley)

ପକ୍ଷ ଛେଦ-ଶଙ୍କ ଭୟେ କି ଶଇଲେ
ଲୁଚି ରହିଥିଲେ ତୋହର ସଲିଲେ ।"
"ପକ୍ଷଚ୍ଛିଦା ଗୋତ୍ରଭିଦାତ୍ତଗନ୍ଧା
ଶରଣ୍ୟମେନଂ ଶତଶୋ ମହୀଧ୍ରାଃ—ରଘୁବଂଶ
ସନ୍ଧି ତଟବାଳେ ଅସ୍ପୃଷ୍ଟଜପ୍ରଭ
ନୀଳାମ୍ବୁଦ-ଦେହେ ଲଗ୍ନ ନୀଳନଭଃ ।
"ଦୂରାଦୟଶ୍ଚକ୍ରନିଭସ୍ୟ ତନ୍ୱୀ ତମାଳ ତାଳୀ ବନରାଜି ନୀଳା
ଆଭାତି ବେଳା ଲବଣାମ୍ବୁରାଶୋର୍ଧାରାନିବଦ୍ଧେବ କଳଙ୍କ ରେଖା ।"
—ରଘୁବଂଶ

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ
"କ୍ଷଣେ କ୍ଷଣେ ଯନ୍ନ ନବତା ମୁପୈତି
ତଦେବ ରୂପଂ ରମଣୀୟତାୟାଃ"—ମାଘ
'ତାରକଟିଏ ରାଜା ତାରପତି ପାଶେ
ବେନିଏ କରନ୍ତି ରାଜ୍ୟ ଅର୍ଦ୍ଧାକାଶେ;
"A single star is at her side and reigns
with her O'er half the lovely heaven; but still'
—Byron.

"ଦୁଃଖି ମନେ ଆଶା ଉତ୍ଥାନ ପତନ
ପ୍ରାୟେ ଶିଖା ଉଠେ ପଡ଼େ ଘନ ଘନ;
'In bright uncertainty they lie
Like future joy to fancy's eye." —Scott

ଇଂରେଜ କବି ସ୍କଟ, ମିଲଟନ, ସେକ୍ସପିୟର, ପ୍ରାଚ୍ୟର କାଦମ୍ବରୀ, ଶକୁନ୍ତଳା ପ୍ରଭୃତିରୁ ବହୁ ଉଦାହରଣ ଏହିପରି ଉଦ୍ଧାର କରାଯାଇ ପାରେ ।

ରାଧାନାଥ ଯେଉଁ କେତେଗୋଟି କଥାକାବ୍ୟ ସୃଷ୍ଟି କରି ଅଛନ୍ତି, ସେଗୁଡ଼ିକର କଥାବସ୍ତୁ ପାଠ କଲେ ତାହା ଓଡ଼ିଶାର ପୀଠଭୂମି ଉପରେ ରଚିତ ହେବା ଜଣାପଡ଼େ । ମାତ୍ର ତାଙ୍କର ପ୍ରତ୍ୟେକଟି କଥାବସ୍ତୁ ପାଶ୍ଚାତ୍ୟ ସାହିତ୍ୟରୁ ଗ୍ରହଣ କରାଯାଇଅଛି । ଉଷା, ପାର୍ବତୀ, ଚନ୍ଦ୍ରଭାଗା, କେଦାରଗୌରୀ ପ୍ରଭୃତି କେହି ଏହାର ବ୍ୟତିକ୍ରମ ନୁହନ୍ତି । ଅବଶ୍ୟ

ଷ୍ଟୋନୀୟ କମ୍ବଦନ୍ତୀ ରାଧାନାଥଙ୍କୁ ଗଳ୍ପ ସୃଷ୍ଟି କରିବାରେ କେତେକ ପରିମାଣରେ ସାହାଯ୍ୟ କରିଥାଇପାରେ । 'ଚନ୍ଦ୍ରଭାଗା' କଥାବସ୍ତୁ ସହିତ ଗ୍ରୀକ୍ ପୁରାଣର ଆପୋଲୋ ଓ ଡାଫ୍ନୀଙ୍କର ପ୍ରଣୟ କାହାଣୀର ସାମ୍ୟ ରହିଅଛି । ଚନ୍ଦ୍ରଭାଗାଙ୍କୁ ଲକ୍ଷ୍ୟକରି କବି ଲେଖିଛନ୍ତି—

'ଅସମ୍ଭାଳେ ଫିଟି କୁନ୍ତଳ ଭୂମିସ ଏ ପରିଣି
ଯେଉଁଣେ ଗୃହେଁ ତେଣେ ଛଇଲା ଫୁଲଯାଏ ବରଷି ।'

ଏହି ଭାବନାଟି କବି ଟେନିସନଙ୍କର ଗୋଟିଏ ପଦର ପ୍ରତିଧ୍ୱନିପରି ମନେ ହୋଇଥାଏ ।

'I know the way she went
Home with her maiden posy
For her feet have touched the medows
and left the daisies rosy.'

ଓଭିଡ୍‌ଙ୍କ କାବ୍ୟରେ ବର୍ଣ୍ଣିତ ଆପୋଲୋ ଏବଂ ଡାଫ୍ନୀଙ୍କର ପ୍ରଣୟମୂଳକ କାହାଣୀ ଚନ୍ଦ୍ରଭାଗା କାବ୍ୟରେ ଅନୁସୃତ ହୋଇଅଛି । ସେହିପରି ଉଷା କାବ୍ୟ ପ୍ରଣୟନରେ ଉଇଲିୟମ ମରିସ୍‌ଙ୍କ "ଆଟାଲାଣ୍ଟା ରେସ" କଥାବସ୍ତୁର ପ୍ରେରଣା ନିହିତ ରହିଅଛି । ସେକ୍ସପିୟରଙ୍କର ମିଡ଼୍ ସମର ନାଇଟ୍‌ସ ଡ୍ରିମ ନାଟକର ପିରାମସ-ଥିସ୍‌ବି କଥାବସ୍ତୁ 'କେଦାରଗୌରୀ' ପରିକଳ୍ପନାରେ ରାଧାନାଥଙ୍କୁ ସାହାଯ୍ୟ କରିଅଛି । ସେକ୍ସପିୟରଙ୍କ ବହୁ ପଦ ସହିତ ରାଧାନାଥଙ୍କ କାବ୍ୟର ଅବିକଳ ସାମ୍ୟ ପରିଲକ୍ଷିତ ହୋଇଥାଏ ।

"କହନ୍ତି କାନ୍ଥକୁ ନିଦାରୁଣ ! ଏଥି
କେଉଁ ବଡ଼ପଣ ତୋର
ତନୁ ରୁ ତନୁକୁ ଅନ୍ତର କରି ତୁ
ଲଭିବୁ ଦୁଷ୍କୃତ ଘୋର ।"— ରାଧାନାଥ

"Oh wicked wall, through whom I see no bliss
Cursed be thy stones for thus, deceiving me."

—(ସେକ୍ସପିୟର)

ରାଧାନାଥଙ୍କ ଯଯାତିକେଶରୀ ଏହି ବିଷୟରେ ଏକ ବ୍ୟତିକ୍ରମ । ତେବେ ସୁଦ୍ଧା ସେକ୍ସପିୟରଙ୍କ Twelfth Nightର ଅନୁକରଣରେ ଯଯାତି ନାରୀ ବେଶରେ ଅନ୍ତଃପୁରରେ ପ୍ରବେଶ କରିଅଛି । ଏପରି ସ୍ୱୈର ପ୍ରଣୟଜନିତ କଥାବସ୍ତୁ ପାଇଁ ଭାରତୀୟ କମ୍ବଦନ୍ତୀ ଓ କାହାଣୀରେ ଅନେକ ଉପାଦାନ ନିହିତ ଅଛି । ହୁଏତ କବି ଦେଶୀୟ କାବ୍ୟ ସଂସାରରୁ କଥାବସ୍ତୁର ସୂତ୍ର ଗ୍ରହଣ କରିଥାଇ ପାରନ୍ତି । ବିମଳାର ରୂପସମ୍ଭାର

ଲଳିତାର' ଅନ୍ତଃପୁରବାସୀଙ୍କ ହୃଦୟରେ ଏକ ବିଚିତ୍ର ମାନସିକ ପ୍ରତିକ୍ରିୟା ଆନୟନ କରିଅଛି । ତେଣୁ କବି ଲେଖିଛନ୍ତି—

ଏ ବାଳାକୁ ବନ— ବାସ ସହାଇଲେ
ବିଧି ଆହା କି ବିଗୃରେ ?
ଶମୀ ଛେଦିବାକୁ ଲୋଡ଼ିଲେ ସିନା ସେ
ନୀଳୋତ୍ପଳ-ଦଳଧାରେ ।

ମହାକବି କାଳିଦାସ ଅବିକଳ ଏଇ କଥାଟି କହିଅଛନ୍ତି—

ଇଦଂ କିଲା ବ୍ୟାଜ ମନୋହରଂ ବପୁସ୍ତପଃ କ୍ଷମଂ ସାଧୟିତୁଂ ଯଇଛତି
ଧ୍ରୁବଂ ସ ନୀଳୋତ୍ପଳ-ପତ୍ର ଧାରୟା ଶମୀଲତା ଚ୍ଛେତ୍ତୁ ମୃଷି ବ୍ୟବସ୍ୟତି ।"
—ଶକୁନ୍ତଳା

ରାଧାନାଥ ଜଣେ ବିଶିଷ୍ଟ ସାଧକ ଓ କବି । ତାଙ୍କର କାବ୍ୟ କବିତାରେ ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳିଥାଏ । ଆହରଣ ଓ ଅନୁସରଣ ଦ୍ୱାରା କବି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇ ଅଛନ୍ତି । ଅଥଚ ଏଥିରେ ତାଙ୍କର ନିଜସ୍ୱ ମୌଳିକ କବି ପ୍ରତିଭା ଆଦୌ ମ୍ଳାନ ହୋଇ ନାହିଁ । ସେ ବିଦେଶୀ କଥାବସ୍ତୁକୁ ଏ ଦେଶର ପାଣିପାଗରେ ସମ୍ପୂର୍ଣ୍ଣ ମିଳାଇ ଦେଇ ଅଛନ୍ତି ।

**ପ୍ରକୃତି କବି ରାଧାନାଥ—**

ରୀତି ଯୁଗର କବିଗଣ ରାଜସଭାର ଐଶ୍ୱର୍ଯ୍ୟ ବର୍ଣ୍ଣନା କରି ସନ୍ତୁଷ୍ଟ ରହିଥିଲେ । ସେମାନଙ୍କ ଚକ୍ଷୁରେ ବାହ୍ୟ ପ୍ରକୃତି କୌଣସି ବିଶେଷ ଆଲୋଡ଼ନ ସୃଷ୍ଟି କରିପାରି ନଥିଲା । ସେମାନେ ବାସ୍ତବିକ ପ୍ରକୃତିପ୍ରାଣ ନଥିଲେ ଅଥବା ପ୍ରକୃତି ସହିତ ଜଡ଼ିତ ହୋଇ ତନ୍ମୟ ହେବା ସମ୍ଭବ ନଥିଲା । ପ୍ରାଚୀନ ସଂସ୍କାର ଓ ଚଳଣୀକୁ ଅନୁସରଣ କରି କାବ୍ୟ ଯୁଗର କବିଗଣ ପ୍ରକୃତି ବର୍ଣ୍ଣନା କରିଛନ୍ତି । ମାତ୍ର ସେଥିରେ ବାସ୍ତବିକ ପ୍ରକୃତି ରୂପାୟିତ ହୋଇପାରି ନାହିଁ । ପ୍ରକୃତିର ସୌନ୍ଦର୍ଯ୍ୟରେ ମୁଗ୍ଧ ହେବାପାଇଁ ଯେଉଁ ଭାବନା ଏବଂ ଅନ୍ତରଙ୍ଗ ଉଚ୍ଛ୍ୱାସ ଆବଶ୍ୟକ, ତାହା ସେ କାଳର କାବ୍ୟ ସାହିତ୍ୟରେ ଦୁର୍ଲ୍ଲଭ ଥିଲା । ବାସ୍ତବିକ ଏ କ୍ଷେତ୍ରରେ କବି ରାଧାନାଥ ଓଡ଼ିଆ ସାହିତ୍ୟରେ ନବ ଦିଗନ୍ତର ସ୍ରଷ୍ଟା । ତାଙ୍କର ଆଗମନ ପୂର୍ବରୁ ପ୍ରକୃତି ବର୍ଣ୍ଣନା କେବଳ ଗଛଲତା, ପାଣି ପବନର ସମାହାର ଥିଲା । କବି ରାଧାନାଥ ଉତ୍କଳ ପ୍ରକୃତିରେ ଜୀବନ୍ୟାସ ଦେଲେ । ବୋଧହୁଏ ପ୍ରକୃତି ବର୍ଣ୍ଣନା ବାଦଦେଲେ ରାଧାନାଥଙ୍କ ପ୍ରତିଭା ଅବଲୁପ୍ତ ହୋଇଯିବ । କବି ମାନସିଂଙ୍କ ଭାଷାରେ—"For the first time in the whole history of Oriya literature nature in Orissa spoke and become an integral part of Orissa's national consciousness through the modern romantic poetry of Radhanatha."

ରାଧାନାଥ ଥିଲେ ସୌନ୍ଦର୍ଯ୍ୟ ରାଣୀର ସର୍ବଶ୍ରେଷ୍ଠ ପୂଜାରୀ । ତାଙ୍କର ପ୍ରକୃତିପ୍ରାଣତା ଗଭୀର ଦେଶାତ୍ମବୋଧ ଭାବନାରେ ଆଲୋଡ଼ିତ । ଉତ୍କଳର ବଣ, ଗିରି, ଉପତ୍ୟକା, ହ୍ରଦ, କାନ୍ତାର, କନ୍ଦରା ପୂର୍ବରୁ ଥିଲେ ମୂକ ଏବଂ ଅଥର୍ବ । ରାଧାନାଥ ନିଜର ଅପୂର୍ବ କଳ୍ପନା ବିଳାସ ଦ୍ୱାରା ସେମାନଙ୍କୁ ମୁଖର କରାଇଲେ, ଉତ୍କଳର ପ୍ରକୃତି ପ୍ରାଣରେ ନୂତନ ଜୀବନର ସଞ୍ଚାର କଲେ । ସେମାନେ ଅଭିନବ ରୂପରେ ପ୍ରତିଭାତ ହେଲେ । ପ୍ରାକୃତିକ ପରିବେଶ କାବ୍ୟଯୁଗର ନାୟକ ନାୟିକାମାନଙ୍କର ମିଳନ ଓ ବିରହ ଲୀଳାପାଇଁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରୁଥିଲା । ମାତ୍ର ରାଧାନାଥଙ୍କ ଚକ୍ଷୁରେ ପ୍ରକୃତି ସୁନ୍ଦରୀ ହେଲା କାବ୍ୟ ନାୟିକା । ଚିଲିକା କାବ୍ୟ ଏହି ବିଚାରରେ ଓଡ଼ିଆ ସାହିତ୍ୟରେ ଅତୀତର ପରମ୍ପରା ବିରୁଦ୍ଧରେ ଏକ ବିଦ୍ରୋହ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବି ଚିଲିକା'କୁ 'ଉତ୍କଳ କମଳାଙ୍କର ବିଳାସ ଦୀର୍ଘିକା' 'ଶୋକ ପାଶୋରି ଅପ୍ସରୀ ଭୁବନ' ବୋଲି ଚିତ୍ରଣ କରି ଛବିଲ ଉତ୍କଳେ ଏ ଛବି ଅତୁଳ ବୋଲି କହିଛନ୍ତି । ରାଧାନାଥ ଇଂରେଜୀ ସାହିତ୍ୟର ରୋମାଣ୍ଟିକ କବିମାନଙ୍କ କାବ୍ୟକବିତା ତନ୍ନତନ୍ନ କରି ଅଧ୍ୟୟନ କରିଥିଲେ । ମହାକବି କାଳିଦାସଙ୍କ କାବ୍ୟ ସଂସାରରେ ତାଙ୍କର ଅଗାଧ ପ୍ରବେଶ ଥିଲା । ବଙ୍ଗ ସାହିତ୍ୟରେ କବି ରବୀନ୍ଦ୍ରନାଥ ପ୍ରକୃତି ଚିତ୍ରଣରେ ଯେପରି ନୂତନ ଦିଗ୍‌ଦର୍ଶନ ଦେଲେ, କବି ରାଧାନାଥ ସେହିପରି ଓଡ଼ିଆ ସାହିତ୍ୟରେ ଏକ ଅଭିନବ ରୂପ ସ୍ରଷ୍ଟାରୂପେ ସମ୍ମାନିତ ହୋଇଅଛନ୍ତି । ରୀତିଯୁଗର କବିଗଣ ଆଲଙ୍କାରିକ-ମାନଙ୍କ ନିର୍ଦ୍ଦେଶକୁ ଅନୁସରଣ କରି ବିଭିନ୍ନ ଋତୁର ଅବତାରଣା କରିଛନ୍ତି । କ୍ରୀଡ଼ା ସରୋବର, ସନ୍ଧ୍ୟା, ପ୍ରଭାତ ପ୍ରଭୃତି ବର୍ଣ୍ଣନା କେବଳ ନାୟିକା ଓ ନାୟକମାନଙ୍କର ସ୍ୱାର୍ଥକୁ ସାଧନ କରିବାପାଇଁ ଉଦ୍ଦିଷ୍ଟ ହୋଇଅଛି । ମାତ୍ର ଆଧୁନିକ ଯୁଗରେ ପ୍ରକୃତି ପ୍ରତି ଏକ ନୂତନ ଆଭିମୁଖ୍ୟ ପ୍ରକାଶିତ ହେଲା । ରାଧାନାଥ ପ୍ରକୃତିକୁ ବନ୍ଧୁ ଓ ଦ୍ରଷ୍ଟାରୂପେ ଆହ୍ୱାନ ଜଣାଇଛନ୍ତି ଏବଂ ସଖୀ ଭାବରେ ତାହାର ସାନ୍ନିଧ୍ୟ କାମନା କରିଛନ୍ତି । ପ୍ରକୃତି ତାଙ୍କ ନିକଟରେ ଜୀବନ୍ତ ଏବଂ ଗତିଶୀଳ ହୋଇ ନ ଥିଲେ, ସେ ଏପରି ଭାବରେ ପ୍ରକୃତିରାଣୀର ସୌନ୍ଦର୍ଯ୍ୟ ଚିତ୍ରଣ କରିବାପାଇଁ କ୍ଷମ ହୋଇ ନ ଥାନ୍ତେ । ତୁଳନାତ୍ମକ ବିଚାର ପାଇଁ ଏଠାରେ ପ୍ରାଚୀନ ସାହିତ୍ୟର କେତେ ଗୋଟି ପ୍ରକୃତି ବର୍ଣ୍ଣନା ଉଲ୍ଲେଖ କରାଯାଇପାରେ ।

"ମଳୟ ଶିଖରୀ ଶିରୀ ଚ୍ୟୁତ କରି ବହିଲାଣି ମନ୍ଦ ସମୀର,
ସୁମନାଙ୍କ ବାସ ଚୋରାଇ ନେବଟି ବୋଲି କହିଲାଣି ଭ୍ରମର ।
କେଶର ! କେଶରେ ହେଲେଣି ମଞ୍ଜୁଳ ! କେଶରେ ମଣ୍ଡନ କରିବା
ଭଲରେ ଫୁଟିଲେଣି କେତେ ବଞ୍ଜୁଳ ।"

—ଲାବଣ୍ୟବତୀ

"କ୍ରମେ ମଧୁ ଶେଷ ହୁଅନ୍ତେ ପ୍ରବେଶ ହୋଇଲା ଗ୍ରୀଷ୍ମସମୟ ।
କରମାଳି କରି ମହାଖରତର କମଳ କୁମାର ପରାୟ । ସୁଜନେ ।

କି କହିବା ମହି ତପତ । କରାଇଲା ନୃତ୍ୟ ପଥିକ ପଦକୁ,
ସଂଗ୍ରାମଭୂମି ଅଶ୍ୱବତ । × × ×

"କୁରଙ୍ଗ ନୟନା ନୟନ-ତରଙ୍ଗ ବଳି ମୃଗତୃଷ୍ଣା ଦଶିଲେ ।
କଳାମେଘ କୋଳେ ବିଜୁଳି ପରାଏ ବନେ ବନଅଗ୍ନି ହସିଲେ ।
ସୁଜନେ । କାହିଁ ତୃଣ ରାଜେ ଫୁଟନ୍ତି । କାମିନୀ-ସୁରତ କାଳେ,
ମନମଥ ଶବଦ ପରାଏ ଘଟନ୍ତି ।"

ଏହି ସବୁ ଭୋଗମୟୀ କବିତା । ଏଥିରେ ଭୋଗୀ ଏବଂ କାମୀ ପୁରୁଷମାନଙ୍କର ମନ ଉଚ୍ଚାଟ ହେଲାଭଳି ଉପାଦାନ ରହିଅଛି । ନରନାରୀଙ୍କର ପ୍ରେମକୁ ପ୍ରକୃତି କିପରି ଉଜ୍ଜୀବିତ କରେ, ତାହା କାବ୍ୟଯୁଗର ସାଧନାରେ ଅଧିକ ପ୍ରତିଫଳିତ ହୋଇଅଛି । ରୀତିଯୁଗ ପ୍ରକୃତିର ପ୍ରଧାନ ଉଦ୍ଦେଶ୍ୟ ହେଲା ପ୍ରେମାନୁଭୂତି ଜାଗ୍ରତ କରିବା । ସେଠାରେ ଉପଲବ୍ଧି ନାହିଁ, କେବଳ ଉପଭୋଗ ଅଛି । ପ୍ରକୃତିର ରାଜ୍ୟ ଅତ୍ୟନ୍ତ ରହସ୍ୟପୂର୍ଣ୍ଣ । ପ୍ରକୃତି ସଂସାର ଏବଂ ମନୁଷ୍ୟ ମଧ୍ୟରେ ଏକ ନିବିଡ଼ ସଂପର୍କ ବିଦ୍ୟମାନ ଅଛି । ଭାରତୀୟ ଜୀବନର ଧାରା ପ୍ରକୃତି ସଂସାର କୋଳରୁ ପ୍ରେରଣା ଗ୍ରହଣ କରି ଅଗ୍ରସର ହୋଇଅଛି । ଆଧୁନିକ କବି ରାଧାନାଥ ପ୍ରକୃତିର ରୂପରେ ମୁଗ୍ଧ ହେବା ସଙ୍ଗେ ସଙ୍ଗେ ତାର ରୂପାତୀତ ଐଶ୍ୱର୍ଯ୍ୟ ପ୍ରତି ମଧ୍ୟ ଆକୃଷ୍ଟ ହୋଇଛନ୍ତି । ତାହା ନ ହେଲେ ଏହି ଜଗତର ଦୁଃଖ ଏବଂ ଗ୍ଲାନି ଭୁଲିଯିବାପାଇଁ କବି ଚିଲିକା କୂଳରେ ପଶ୍ଚିମ ଜୀବନଯାପନ ପାଇଁ ସ୍ୱପ୍ନ ରଚନା କରି ନ ଥାନ୍ତେ । ବିଚିତ୍ର ରୂପସୀ ପ୍ରକୃତି ରାଧାନାଥଙ୍କ ସମ୍ମୁଖରେ କାନ୍ତା ରୂପରେ ବିଦ୍ୟମାନ ନ ହେଲେ, ଏହିପରି ଅନୁଭୂତି ସମ୍ଭବ ହେବ ନାହିଁ । ପ୍ରକୃତି ରାଜ୍ୟରେ କବି ଏହି ରହସ୍ୟର ଇଙ୍ଗିତ ଅନୁଭବ କରିଛନ୍ତି । ଇଂରେଜ କବି Shelleyଙ୍କ ପରି—

"The awful shadow of some unseen power
Floats, though unseen, among us; visiting
This various world with as constant wing
As summer winds that creep from
flower to flower.
—(Intellectual Beauty)

କବିଗୁରୁ ରବୀନ୍ଦ୍ରନାଥ ଏହି ପ୍ରକୃତିକୁ ଆହ୍ୱାନ ଜଣାଇ କହିଛନ୍ତି—

"ଜଗତେର ମାଝେ କତ ବିଚିତ୍ର ତୁମି ହେ
ତୁମି ବିଚିତ୍ର ରୂପିଣୀ ।"

ରାଧାନାଥ ଇଂରେଜ ସାହିତ୍ୟର ରୋମାଣ୍ଟିକ କବିମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ସେ ଉତ୍କଳର ବର୍ଣ୍ଣାଢ୍ୟ ପ୍ରାକୃତିକ ରୂପଶୋଭା ବର୍ଣ୍ଣନାର ଅନ୍ତରାଳରେ ଗଭୀର ଦେଶପ୍ରାଣତାର ପରିଚୟ ପ୍ରଦାନ କରିଛନ୍ତି । ସେଥିପାଇଁ ତାଙ୍କ

ବିଶ୍ବରରେ ମହାନଦୀ କେବଳ ଓଡ଼ିଶାର ପ୍ରଧାନ ନଦୀ ନୁହେଁ । ଏହା ପବିତ୍ର ଗଙ୍ଗାନଦୀର ଅନ୍ୟରୂପ ମାତ୍ର । ମହାଯାତ୍ରାରେ ଅଗ୍ନି ପାଣ୍ଡବଗଣଙ୍କୁ ବୁଝାଇ ଦେଇଛନ୍ତି—

"ମହାନଦୀ ନାମେ ପୂର୍ବସାଗର ଗାମିନୀ
ହର ମୌଳିମାଳା ଦେବୀ ତ୍ରିସ୍ରୋତା ଜାହ୍ନବୀ
ସୁକାନ୍ତି-ମହର୍ଷି-ତପେ ପତିତପାବନୀ ।"

ଓଡ଼ିଶାର ସମୁଦ୍ର ଉପକୂଳରେ ପାଣ୍ଡବଗଣ ପ୍ରକୃତିର ଶୋଭା ଉପଲବ୍ଧି କରିଛନ୍ତି ।

"ଉତ୍କଳର ପ୍ରାଚ୍ୟ-ନୀର-ପ୍ରାଚୀର-ଅକୃତ
ନୀଳ-ଫେନାକୁଳ-ତୁଙ୍ଗ-ତରଙ୍ଗ-ଭଙ୍ଗୁର
ନୀଳାଚଳ ତଟେ, ଯହିଁ ଲୋଟେ ବାରିନିଧି ।

× × × ×

ଉଲ୍ଲୋଳ କଲ୍ଲୋଳମାଳା ହେରି କୁତୂହଳେ
ବୀରବୃନ୍ଦ ସର୍ବେ ହେଲେ ସ୍ତବଧ ବିସ୍ମୟେ ?"

—ମହାଯାତ୍ରା

ମହେନ୍ଦ୍ର ଗିରି, ଗୋନାସା, ମାଲ୍ୟଗିରି, ମୈନାକଶିଖରୀ, କପିଳାସ, ପଞ୍ଚଧାର ପ୍ରଭୃତି ପର୍ବତଶ୍ରେଣୀ ଚିରକାଳ ଏ ଦେଶରେ ଥିଲେ । ନାନା ନଦନଦୀ, ପ୍ରପାତ, ଝରଣା, ଅରଣ୍ୟ, ଉପତ୍ୟକା ଉତ୍କଳଲକ୍ଷ୍ମୀର ଶୋଭାଶ୍ରୀ ସମ୍ପାଦନରେ କାର୍ଯ୍ୟ କରୁଥିଲେ । କିନ୍ତୁ ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ସେମାନଙ୍କର କୌଣସି ସ୍ଥାନ ନ ଥିଲା କହିଲେ ଚଳେ । ରାଧାନାଥ କେବଳ ସେମାନଙ୍କୁ ସାହିତ୍ୟରେ ସ୍ଥାନ ଦେଇ ନାହାନ୍ତି, ଅମରତ୍ୱ ମଧ୍ୟ ପ୍ରଦାନ କରିଛନ୍ତି । ସେଥିପାଇଁ ରାଧାନାଥଙ୍କ ବିଚାରରେ ଏହି ଉତ୍କଳଭୂମି ହେଉଛି—

"ପଣ୍ଡିତେ ଶ୍ରେଷ୍ଠ ଯେସନ୍ତେ ପ୍ରସୂନ ଲଳିତ
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରୀୟସୀ ।"

'ମହେନ୍ଦ୍ରଗିରି' କବିତାରେ କବି ଗଞ୍ଜାମ ଅଞ୍ଚଳର ପ୍ରାକୃତିକ ଶୋଭା ନିରୀକ୍ଷଣ କରି ଚମତ୍କୃତ ହୋଇଛନ୍ତି । ପ୍ରକୃତିର ଏପରି ମହିମାମଣ୍ଡିତ ରୂପଶୋଭା କବିଙ୍କ ହୃଦୟରେ ଅପୂର୍ବ ଆଲୋଡ଼ନ ସୃଷ୍ଟି କରିଅଛି । ସେ ମନେ କରିଛନ୍ତି, ଏପରି ରୂପଶୋଭା ବାସ୍ତବିକ ଅନ୍ୟତ୍ର ଦୁର୍ଲଭ । ଏ ଶୋଭା ସୌନ୍ଦର୍ଯ୍ୟର ତୁଳନା ନାହିଁ । କବି ଯଥାର୍ଥରେ କହିଛନ୍ତି—

"ଅତୁଳ ଉତ୍କଳେ ସିନା ଏହି ଧରା
ପ୍ରକୃତି-ବିଭବେ ବିଶ୍ୱ ମନୋହରା

ସମଗ୍ର ଉତ୍କଳ-ଶୋଭା ଉଲୋତ୍ତମା
ଛବିଳ ଉତ୍କଳେ ଏ ଛବିଳତମା ।"

ରାଧାନାଥ ପ୍ରକୃତିର ବିଭିନ୍ନ ରୂପ ବିଭବର ଚିତ୍ର ପ୍ରଦାନ କରିଛନ୍ତି । ସେ ଥିଲେ ଜଣେ ରସିକ କବି ଏବଂ ସଫଳ ଦ୍ରଷ୍ଟା । ସେ କେବଳ ପ୍ରକୃତିକୁ ଉପଭୋଗ କରି ନାହାନ୍ତି, ପାଠକ ସମକ୍ଷରେ ପରିବେଷଣ କରି ତାହାକୁ ସମଭାଗୀ କରାଇଛନ୍ତି । ଉଦାହରଣ ସ୍ୱରୂପ କେବଳ ସନ୍ଧ୍ୟା ବର୍ଣ୍ଣନା ଗ୍ରହଣ କରାଯାଇ ପାରେ । ଏହି କ୍ଷେତ୍ରରେ କବିଙ୍କର କଳ୍ପନାବିଳାସ ସୁଦୂର ପ୍ରସାରୀ ହୋଇଅଛି । ସେ କେବଳ ବର୍ଣ୍ଣାଢ୍ୟ ରୂପଚ୍ଛଟା ମଧ୍ୟରେ ନିମଗ୍ନ ରହିନାହାନ୍ତି । ଜଡ଼ ପ୍ରକୃତି ନାନା ରୂପରେ କବି ଚକ୍ଷୁରେ ନୃତ୍ୟ ରଚନା କରିଅଛି ।

"ଦିଗ୍‌ବଳୟ ପାରେ ରବି ରଥ ଏଣେ
ନେବାରୁ ବାହି ଅନୂରୁ
ଅଭିନବ ମୂର୍ତ୍ତି ପ୍ରକଟିଲେ ଗିରି—
ଚକ୍ରବର୍ତ୍ତୀ ଗୌରୀଗୁରୁ
ସନ୍ଧ୍ୟାତପ ଅର୍ଦ୍ଧ— ଅଙ୍ଗେ ଅର୍ଦ୍ଧ ଅଙ୍ଗେ
ଜ୍ୟୋତ୍ସ୍ନା-ପ୍ରତିବିମ୍ବ ଲଭି ।
ପ୍ରତି ଶୃଙ୍ଗ ବିଡ଼- ମ୍ବିଲି ମାହେଶ୍ୱରୀ
ଅର୍ଦ୍ଧ ନାରୀଶ୍ୱର-ଛବି ।" — ଉର୍ବଶୀ

ଶାରଦ-ଦିନାନ୍ତ-ଲକ୍ଷ୍ମୀ ଲୀଳାମୟୀ
ପ୍ରକାଶନ୍ତି କେତେ ନବ ନବ ଛବି ।

× × × ×

ସନ୍ଧ୍ୟାରାଗ ହେରି ହ୍ରଦ-ନୀଳୋରସେ
ଆସଇ ଏ ଭାବ ଭାବୁକ ମାନସେ ।
ପ୍ରଚେତା-ପ୍ରବାଳ-ପ୍ରାସାଦର ରୁଚି
ନୀଳ-ନୀରୁ ଅବା ଫୁଟି ବାହାରୁଛି ।" —ଚିଲିକା

× × × ×

"ଅସ୍ତରାଗେ ରଞ୍ଜି ତୁଙ୍ଗ ବାଲି ସ୍ତୂପ
ଶ୍ୟାମଳ ପୁନ୍ନାଗ ବନ
ଲୋକନାଥ ପଥେ ବୁଡ଼ନ୍ତି ସାଗରେ
କମଳିନୀ-ପ୍ରାଣ-ଧନ ।
ଭାସମାନ ରକ୍ତ— ରବି-ବିମ୍ବ ଦେଖି
ଏ ଭାବ ଆସେ ଅନ୍ତରେ

ବରହ୍ମ-ରଚିତ ସୁବର୍ଣ୍ଣ ବ୍ରହ୍ମାଣ୍ଡ
ଭାସଇ କିବା ସାଗରେ ।" —ପାର୍ବତୀ

"ଡୁବନ୍ତି ଦିନାନ୍ତେ ତପ୍ତ ହେମଛବି
ଧୀରେ ଦେବୀଦ୍ୱାର ଗିରି ଶୃଙ୍ଗେ ରବି ।

× × × ×

ବାରୁଣୀ ରାଣୀ କି ସିନ୍ଧୁ ସ୍ୱର୍ଣ୍ଣବେଳ
ସଖୀ ସଙ୍ଗେ ଖେଳୁଛନ୍ତି ଫଗୁ ଖେଳ ।
ସୁବର୍ଣ୍ଣ ବିମାନ, ସ୍ୱର୍ଣ୍ଣରଥ ଦୋଳା
ନଭସ୍ଥଳେ କେତେ ହୋଇଛନ୍ତି ତୋଳା
ସୁବର୍ଣ୍ଣର ନଦେ ବହେ ସ୍ୱର୍ଣ୍ଣସ୍ରୋତ
ସୁବର୍ଣ୍ଣ ଅଙ୍ଗାଳେ ଚଳେ ସ୍ୱର୍ଣ୍ଣପୋତ —ନନ୍ଦିକେଶ୍ୱରୀ

ଏ ଶୋଭାର ପଟାନ୍ତର ନାହିଁ । ପ୍ରଭାତ, ସନ୍ଧ୍ୟା, ବସନ୍ତ, ଶରତ, ବଣ, ପର୍ବତ, ନଦୀ ଉପତ୍ୟକା—ସର୍ବତ୍ର ରାଧାନାଥ ମୁଗ୍ଧ ହୋଇଛନ୍ତି । ସେ ଏପରି ଭାବରେ ଏହି ସବୁ ଦୃଶ୍ୟ ଚିତ୍ରଣ କରିଛନ୍ତି ଯେ ତାହା ପାଠ କରୁ କରୁ ପାଠକ ବାସ୍ତବ ରାଜ୍ୟରେ ଭ୍ରମଣ କଲପରି ଅନୁଭବ କରେ । ପ୍ରତ୍ୟେକ ଗ୍ରାମରେ ଶିବମନ୍ଦିର ଅଛି ଏବଂ ଗ୍ରାମର ଉପକଣ୍ଠରେ ବରଗଛ ସର୍ବତ୍ର ଶୋଭାଯୁକ୍ତ ହୋଇଥାଏ । ନିତ୍ୟ ପରିଚିତ ଏହି ଦୃଶ୍ୟ ଦର୍ଶକପ୍ରାଣରେ କୌଣସି ରେଖାପାତ କରେ ନାହିଁ । ଅଥଚ କଳ୍ପନାର କୂଳରେ ରାଧାନାଥ ଏହିପରି ସାମାନ୍ୟ ବସ୍ତୁରେ ଅସାଧାରଣ ସୌନ୍ଦର୍ଯ୍ୟ ଆରୋପ କରିଛନ୍ତି । ଉଦାହରଣ ସ୍ୱରୂପ—

"ଗ୍ରାମ ଦେବତାଙ୍କ ମଣ୍ଡପ ବିତାନ
ସିନ୍ଦୂରିତ ପୁଷ୍ପ ଗୁଚ୍ଛେ ଗୋଡ଼ିବାଣ ।
ଶିବାଳୟ ଉପକଣ୍ଠେ କନିଅର
ସୁବର୍ଣ୍ଣ ଚଷକ-ଧର ମଧୁପର ।
କର୍ଣ୍ଣପୂର ରୂପେ ପୁଷ୍ପ ଯାର ଦୋଳେ
ପଲ୍ଲି-ବିଳାସିନୀ-ଅମଳ-କପୋଳେ ।

× × × ×

"ବଟଦ୍ରୁମ, ଯାର ଯୋଗ୍ୟ ପ୍ରତିବିତ
ଭୂ-ସ୍ପର୍ଶୀ ଓହଳ ସ୍ତମ୍ଭେ ପରିଣତ ।
ମରକତ ପର୍ଣ୍ଣେ ପଦ୍ମରାଗ ଫଳେ
ଯା ବିରହି ଗ୍ରାମ ସୀମାନ୍ତ ଉଜଳେ ।"

ଚିଲିକାର ଉପକୂଳରେ ଏହିପରି ନାନା ଦୃଶ୍ୟ କବି ଦର୍ଶନ କରି ଆତ୍ମହରା ହୋଇଛନ୍ତି । ପ୍ରକୃତିପ୍ରାଣ ରାଧାନାଥ ବାରମ୍ବାର ସେହି ସୁଷମାକୁ ଉପଭୋଗ କରି ସୁଦ୍ଧା ସନ୍ତୁଷ୍ଟ ହୋଇପାରି ନାହାନ୍ତି । ତାଙ୍କର ପ୍ରାଣରେ ଗଭୀର ଅତୃପ୍ତି ରାଜପଣ କରିଅଛି । ଉତ୍କଳ ପ୍ରକୃତିର ଏହି ଯାଦୁକରୀ ମନମୋହକର ଅଭିବ୍ୟକ୍ତି କବିଙ୍କୁ କିପରି ଅନୁପ୍ରାଣିତ କରିଥିଲା, ତାହା ନିମ୍ନଲିଖିତ କେତେକ ପଂକ୍ତି ପାଠ କଲେ ଜଣାଯାଇ ପାରିବ—

"କେତେଥର ଦେଖିଅଛି ଏହିମାନ
ମାତ୍ର ପ୍ରତିଥର ଦିଶେ ଆନ ଆନ ।
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତ
ସୁନ୍ଦର ପଣର ଚରନ୍ତନ ରୀତି ।
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେହେଁ ନୂଆ ଦିଶୁଥାଇ ।"

ଅନ୍ୟତ୍ର ମଧ୍ୟ କହିଅଛନ୍ତି—

"ଆହା ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ ମର୍ତ୍ତ୍ୟେ ଅଗୋଚର ।
ପାଶୋରିବ ଦେଖି, କହି, କେହୁ ଜନ
ଏ ଶୋକ-ପାଶୋରା ଅପ୍ସରା ଭୁବନ ?
ଭାରତୀ-ଭକତ କେଉଁ ରୂପପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧ୍ୟାୟୀ ?
ବଚନ ବିଷୟ ନୁହଇ ଏ ଛବି,
ହୃଦ ସେ କେବଳ ପାରେ ଅନୁଭବି ।"

ବାସ୍ତବିକ ଉତ୍କଳର ପ୍ରକୃତି କବିଙ୍କ ପ୍ରାଣରେ ସ୍ଥିରତର ଆନନ୍ଦ ଏବଂ ପ୍ରେମାନୁଭୂତି ଜାଗ୍ରତ କରିଥାଏ । ପ୍ରକୃତି ସଂସାରରେ ନୂତନ ଜୀବନର ସ୍ପନ୍ଦନ କବିଙ୍କର ଚିତ୍ତ ବୃତ୍ତିରେ ଗଭୀର ଆଲୋଡ଼ନ ସୃଷ୍ଟି କରେ । କେତେବେଳେ ପ୍ରକୃତି ସୁନ୍ଦରୀ ସଖୀ ରୂପରେ ଦର୍ଶକର ପ୍ରାଣରେ ପ୍ରେମବାରି ଢାଳିଦଏ ତ କେତେବେଳେ ଦ୍ରଷ୍ଟା ରୂପରେ ଦର୍ଶକର ଚିତ୍ତକୁ ଦେଶକାଳେ ବିସ୍ତାରିତ କରିଦଏ । ପୁନଶ୍ଚ ଅଲୀକ ପାପପୂର୍ଣ୍ଣ ସଂସାରରେ ପ୍ରକୃତି ସଂସାରର ଅପରୂପ ସୌନ୍ଦର୍ଯ୍ୟ ଗଭୀର ଆଧ୍ୟାତ୍ମିକ ଭାବନା ସୃଷ୍ଟି କରିଥାଏ । ତେଣୁ ଉତ୍କଳର ପ୍ରକୃତି ପବିତ୍ର ଓ ସୁନ୍ଦର । ପ୍ରକୃତି ରାଜ୍ୟର ଏହି ବୈଚିତ୍ର୍ୟ ଏବଂ ଐଶ୍ୱର୍ଯ୍ୟ ରାଧାନାଥଙ୍କ ପୂର୍ବରୁ ଆଉ କୌଣସି କବି ଆବିଷ୍କାର କରିପାରି ନଥିଲେ ।

**ଜାତୀୟତାବାଦୀ କବି ରାଧାନାଥ—**

ରାଧାନାଥ ପରାଧୀନ ଭାରତରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ସମୟରେ ଏ ଦେଶରେ ଇଂରେଜୀ ଶିକ୍ଷା ଓ ଶାସନ ଏକ ପ୍ରକାର ପ୍ରତିଷ୍ଠିତ ହୋଇ ସାରିଥିଲା ।

ପାଶ୍ଚାତ୍ୟ ସମାଜର ଆଦର୍ଶ ପ୍ରାଚ୍ୟ ଭୂଖଣ୍ଡର ଚିନ୍ତାଧାରାରେ ଅଭୂତପୂର୍ବ ଜାଗରଣ ସୃଷ୍ଟି କଲା । ଯୁଗଯୁଗର ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ବିରୁଦ୍ଧରେ ଏ ଦେଶର ନବ୍ୟ ଶିକ୍ଷିତ-ଗୋଷ୍ଠୀ ସ୍ୱର ଉତ୍ତୋଳନ କଲେ । ଏହିକାଳବେଳେ ବଙ୍ଗ ଦେଶରେ ଏବଂ ଭାରତରେ ଅନ୍ୟନ୍ୟ ନୂତନ ବିପ୍ଳବର ସଙ୍କେତ ମିଳି ସାରିଥିଲା । ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଏବଂ ସାମୟିକ ପତ୍ରିକାର ଅଭ୍ୟୁଦୟ ଯୋଗୁ ଦେଶର ଚିନ୍ତା ରାଜ୍ୟରେ ସୁଦୂରପ୍ରସାରୀ ପରିଣତି ସମ୍ଭବ ହୋଇଥିଲା । ୧୮୧୮ ଖ୍ରୀଷ୍ଟାବ୍ଦରେ ଶ୍ରୀରାମପୁର କଲେଜ ଏବଂ ୧୮୧୭ ଖ୍ରୀଷ୍ଟାବ୍ଦରେ କଲିକତାର ପ୍ରେସିଡେନ୍‌ସି କଲେଜ ପ୍ରତିଷ୍ଠିତ ହୋଇ ଭାରତରେ ନୂତନ ଶିକ୍ଷାର ପ୍ରସାରରେ ନେତୃତ୍ୱ ଗ୍ରହଣ କରିଥିଲେ ।

ଏହି କାଳରେ ରାଜା ରାମମୋହନଙ୍କ ନେତୃତ୍ୱରେ ନାରୀ ଶିକ୍ଷା ଏବଂ ଇଂରାଜୀ ଶିକ୍ଷା ପାଇଁ ପ୍ରବଳ ଆନ୍ଦୋଳନ ଆରମ୍ଭ ହେଲା । ଇଉରୋପୀୟ ରାଜନୀତି, ଦର୍ଶନ ଏବଂ ରାଜନୈତିକ ଆନ୍ଦୋଳନର ଇତିହାସ ଭାରତୀୟ ତରୁଣ ସମାଜକୁ ନବ-ଉନ୍ମେଷ ଆନ୍ଦୋଳନରେ ଝାସ ଦେବାପାଇଁ ବ୍ରତୀ କରାଇଲା । ଦେଶରେ ବ୍ରାହ୍ମଧର୍ମ ଆନ୍ଦୋଳନ ମଧ୍ୟ ଜାତୀୟତାର ଅପୂର୍ବ ଝଙ୍କାର ରୂପେ ପରିଗଣିତ ହେଲା । ପୁରାତନ ହିନ୍ଦୁ ଧର୍ମର କଳଙ୍କିତ ପ୍ରଥା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ବ୍ରାହ୍ମସମାଜ ଏକ ନୂତନ ଭାରତର ସ୍ୱପ୍ନ ରଚନା କରୁଥିଲେ । ଏହି ସମୟରେ ସ୍ୱାମୀ ଦୟାନନ୍ଦଙ୍କ ନେତୃତ୍ୱରେ ଉତ୍ତର ଭାରତରେ ଆର୍ଯ୍ୟସମାଜ ଆନ୍ଦୋଳନ ଗଭୀର ପ୍ରଭାବ ବିସ୍ତାର କରିଥିଲା । ରାଜା ରାମମୋହନ ଏବଂ ବିବେକାନନ୍ଦ ମଧ୍ୟ ଏହି ଯୁଗରେ ଭାରତୀୟ ଜାତୀୟତାର ବିଶିଷ୍ଟ ପ୍ରବର୍ତ୍ତକ ହେଲେ ।

ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରଭୃତି ଏହି ଜାତୀୟ ଯୁଗର କର୍ଣ୍ଣଧାର ଥିଲେ । ଏମାନେ ଓଡ଼ିଆ ସାହିତ୍ୟ ଓ ସମାଜରେ ନୂତନ ଅନୁପ୍ରେରଣା ସୃଷ୍ଟି କରିବାପାଇଁ ଇଚ୍ଛା କରୁଥିଲେ । ରାଧାନାଥଙ୍କ କାବ୍ୟ ସଂସାରର ପରିକଳ୍ପନା ଅନ୍ତରାଳରେ ଜାତୀୟ-ଯୁଗର ଏହି ମୂର୍ଚ୍ଛନା ଅନୁରଣିତ ହୋଇଅଛି ବୋଲି ମନେ ହୋଇଥାଏ । ସେଥିପାଇଁ ରାଧାନାଥ ଓଡ଼ିଶାର ଇତିହାସ, କିମ୍ବଦନ୍ତୀ ଏବଂ ଭୂଗୋଳକୁ ଅମରତ୍ୱ ପ୍ରଦାନ କରିଅଛନ୍ତି । ତାଙ୍କର କାବ୍ୟକୃତରେ ପ୍ରତ୍ୟେକଟି କଥାବସ୍ତୁ ପାଶ୍ଚାତ୍ୟ କାବ୍ୟ ସଂସାରରୁ ଆହୃତ ହୋଇଥିଲେ ହେଁ ରାଧାନାଥଙ୍କ ଜାତୀୟତାବାଦୀ କଳ୍ପନାରେ ସେହିସବୁ ଓଡ଼ିଶାର ପୀଠରେ ପରିଣତ ହୋଇଯାଇଅଛି । ସେକ୍‌ସପିଅରଙ୍କ ପିରାମସ୍ ଓ ଥିସ୍‌ବି ଭୁବନେଶ୍ୱରରେ କେଦାର ଓ ଗୌରୀ ରୂପେ ପରିଚିତ ହୋଇଛନ୍ତି । ମୋରିସ୍‌ଙ୍କ ଆର୍ଥ୍‌ଲାଣ୍ଡାରେସ୍‌ର କଥାବସ୍ତୁ ସମ୍ପୂର୍ଣ୍ଣରୂପେ ବାଲେଶ୍ୱରର 'ଉଷା' ବୋଲି ପ୍ରତୀତି ଆଣିଅଛି । ଏହି ପରିପ୍ରେକ୍ଷୀରେ ରାଧାନାଥଙ୍କ ପାର୍ବତୀ, ନନ୍ଦିକେଶ୍ୱରୀ, ମହାଯାତ୍ରା କେହି ବାଦ ପଡ଼ିବେ ନାହିଁ । ପାଶ୍ଚାତ୍ୟ କଥାବସ୍ତୁର କଙ୍କାଳ ଓଡ଼ିଶାର ମାଟି, ପାଣି, ପବନ ସମ୍ପର୍କରେ ଆସି ନୂତନ ଜୀବନ୍ୟାସ ଲାଭ କରିଛନ୍ତି । ଓଡ଼ିଶାର ନଦ ନଦୀ, ପାହାଡ଼ ପର୍ବତ, କାନ୍ତାର କନ୍ଦରା ଅଭିନବ ବ୍ୟକ୍ତିତ୍ୱ ନେଇ ପାଠକ ଆଗରେ ଦଣ୍ଡାୟମାନ ହୋଇଛନ୍ତି । ରାଧାନାଥ ଚିଲିକା କାବ୍ୟର ପ୍ରାରମ୍ଭରେ ଲେଖିଛନ୍ତି—

ଉତ୍କଳ-କମଳା-ବିଳାସ-ଦୀର୍ଘିକା,
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା
ଉତ୍କଳର ତୁହି ଚାରୁ ଅଳଙ୍କାର,
ଉତ୍କଳ-ଭୁବନେ ଶୋଭାର ଭଣ୍ଡାର ।"

ଉତ୍କଳ ଭୂମିର ଗୌରବ କୀର୍ତ୍ତନ ରାଧାନାଥଙ୍କ ପୂର୍ବରୁ ଆଉ କେହି ଏପରି କରିଥିଲେ ବୋଲି ଜଣାଯାଇନାହିଁ । କବିଙ୍କ ବିଚାରରେ ଉତ୍କଳର ପ୍ରକୃତି ଅତୁଳନୀୟ । ଭାରତର ଅନ୍ୟ ସ୍ଥାନର ପ୍ରକୃତି ଦର୍ଶନରେ ତାଙ୍କର ଅସ୍ମିତା ଲୋପ ହୋଇଯାଇଛି । ତାଙ୍କର ଚିତ୍ତବୃତ୍ତି ସ୍ଥିର ରହିପାରି ନାହିଁ । ମାତ୍ର ଉତ୍କଳରେ ପ୍ରକୃତି କବି ଚକ୍ଷୁରେ ଅପୂର୍ବ କଲ୍ୟାଣୀ ଏବଂ ପ୍ରେମମୟୀ ତନ୍ୱୀ ରୂପରେ ଦେଦୀପ୍ୟମାନ । ସେ ତାକୁ ସଖୀରୂପେ ଆହ୍ୱାନ କରିଛନ୍ତି ଏବଂ ତାର ସାନ୍ନିଧ୍ୟ ଆଜୀବନ ଲାଭ କରିବା ପାଇଁ ବ୍ୟାକୁଳ ହୋଇଛନ୍ତି । ଉତ୍କଳର ଗୌରବରେ କବିଙ୍କର ଗର୍ବ କରିବାର ବିଚିତ୍ର ଅନୁଭୂତି କାବ୍ୟକବିତାର ଛନ୍ଦେ ଛନ୍ଦେ ପ୍ରକାଶିତ ହୋଇଛି । ଉତ୍କଳର ବିପର୍ଯ୍ୟୟ ଦେଖି ସେ ବିଚଳିତ ହୋଇଛନ୍ତି । କାଳିଦାସଙ୍କ ଲେଖନୀରେ ସାମାନ୍ୟ ଶିପ୍ରା-ସ୍ରୋତ ଜଗତ ବିଖ୍ୟାତ, ଅଥଚ ଓଡ଼ିଶାର ମହାନଦୀକୁ କେହି ଜାଣିଲେ ନାହିଁ । ସେ ଦେବୀ ବୀଣାପାଣିଙ୍କୁ ଅଭିଯୋଗ କଣ୍ଠରେ ଜଣାଇଛନ୍ତି—

ଦେବୀ ବୀଣାପାଣି ! କେଉଁ ପାପ ଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?
ସ୍ୱଭାବେ ଉତ୍କଳ ଶୋଭାର ନିଧାନ,
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ ।
ବିନୁ ସିନା ମାତା ହୋଇଛି ବିବଶା,
ଭଜୁଛି ଅରଣ୍ୟ-ପ୍ରସୂନର ଦଶା ।
କ୍ଷୁଦ୍ର ସିପ୍ରା-ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ !
ସ୍ୱରୂପା ଅଂଶୁପା ଲୋକେ ଅଗୋଚର
ପୂଜାସ୍ପଦ ହେଲା ଗୋଷ୍ପଦ-ପୁଷ୍କର ।

× × ×

ତୋ କୃପା ବିହୁନେ ଉତ୍କଳ ମହିମାର
ନାମେ ଖ୍ୟାତିଗ୍ରନ୍ଥେ ପଡ଼ି ନାହିଁ ଗାର ।"

ଜୀବନର ଉତ୍ତର କାଳରେ ସେ କେତେଗୋଟି କ୍ଷୁଦ୍ର କବିତା ଲେଖିଥିଲେ । ତା ମଧ୍ୟରେ 'କେତେଗୋଟି ଉପଦେଶ ବାକ୍ୟ" ଅନ୍ୟତମ । ସେ ଓଡ଼ିଆ ଜାତିକୁ କର୍ମବୀର ହେବାପାଇଁ ଆହ୍ୱାନ ଜଣାଇଛନ୍ତି । ନିଜ ପ୍ରାଣକୁ ତୃଣ ସ୍ୱରୂପ ମଣି ଦେଶ ହିତରେ ଜୀବନକୁ ଉତ୍ସର୍ଗ କରିବା ପାଇଁ କବି ନିବେଦନ କରିଛନ୍ତି । ଦେଶର ହିତରେ

ନିଜର ହିତ ବୁଝିବା ପାଇଁ ସେ ଅନୁରୋଧ କରିଛନ୍ତି । ଯେଉଁମାନେ ସ୍ୱଦେଶଦ୍ରୋହୀ, ସ୍ୱାର୍ଥପର ବ୍ୟକ୍ତି, ସେମାନେ ଉତ୍କଳ ମାତାର ଅଯୋଗ୍ୟ ସନ୍ତାନ ଏବଂ ଏ ଦେଶର କଳଙ୍କ ବୋଲି କବିଙ୍କର ମତ । ତେଣୁ ତାଙ୍କର ହୃଦୟର ନିବେଦନ ହେଲା—

"ହୁଅ ହେ ସରବେ ଉତ୍କଳୀ
ଦେଶ ହିତରେ ଆତ୍ମବଳୀ ।

× × ×

ଉତ୍କଳ ହିତେ ନିଜ ହିତ
ଲୋଡ଼ ହୋଇଣ ଏକଚିତ୍ତ ।

**ଛନ୍ଦର ପରୀକ୍ଷା ଓ ଗଦ୍ୟରଚନା—**

ମିଲ୍‌ଟନଙ୍କ ପାରାଡାଇଜ୍ ଲଷ୍ଟ କବିତାର ଆଦର୍ଶରେ ଊନବିଂଶ ଶତାବ୍ଦୀରେ ବଙ୍ଗର ବିଖ୍ୟାତ କବି ମାଇକେଲ ମଧୁସୂଦନ ଦତ୍ତ ଅମିତ୍ରାକ୍ଷର ଛନ୍ଦର ପ୍ରଚଳନ କରିବାରୁ ବଙ୍ଗ ସାହିତ୍ୟରେ ଚହଳ ପଡ଼ିଯାଇଥିଲା । ମାତ୍ର ପରେ ତାହା ଏକ ଶକ୍ତିଶାଳୀ ଛନ୍ଦ ରୂପେ ସ୍ୱୀକୃତ ଓ ଆଦୃତ ହେଲା । ମାଇକେଲଙ୍କର ବୀରାଙ୍ଗନା କାବ୍ୟ ଓ ମେଘନାଦ ବଧ କାବ୍ୟରେ ଏହି ଛନ୍ଦର ବଳିଷ୍ଠ ପରୀକ୍ଷା ଦେଖିବାକୁ ମିଳିଥାଏ । ଏହାର ଅନୁକରଣରେ ଓଡ଼ିଆ ସାହିତ୍ୟରେ ମଧ୍ୟ କେହି କେହି ଅମିତ୍ରାକ୍ଷର ଛନ୍ଦର ଅବଲମ୍ବନରେ କବିତା ରଚନା କରିଥିଲେ । ଅନେକଙ୍କର ଧାରଣା ଯେ ରାଧାନାଥ ପ୍ରଥମେ ଓଡ଼ିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରିଥିଲେ । ମାତ୍ର ଏପରି ମତ ସତ୍ୟର ଅନୁକୂଳ ନୁହେଁ ।

୧୮୮୦ ଖ୍ରୀଷ୍ଟାବ୍ଦରେ ଲିଖିତ କାଞ୍ଚିକାବେରୀ ନାଟକରେ ନାଟ୍ୟକାର ରାମଶଙ୍କର ପ୍ରଥମେ ଅମିତ୍ରାକ୍ଷର ଛନ୍ଦର ପରୀକ୍ଷା କରିଥିଲେ ବୋଲି ଉଲ୍ଲେଖ କରିଯାଇଛନ୍ତି । ବାସ୍ତବିକ ନାଟକରେ ଏହି ଛନ୍ଦର ସେ ହେଉଛନ୍ତି ପ୍ରଥମ ପ୍ରୟୋଗକର୍ତ୍ତା । ତେବେ ରାଧାନାଥ ଓଡ଼ିଆ ଭାଷାରେ ଏହି ଛନ୍ଦର ପରୀକ୍ଷା କରିବା ପୂର୍ବରୁ ବଙ୍ଗଳା କବିତାରେ ପରୀକ୍ଷା କରି ସାରିଥିଲେ । ୧୮୭୯ ସାଲରେ ଶ୍ରୀ ରୁଦ୍ରନାରାୟଣ ପଟ୍ଟନାୟକ "ଅଙ୍ଗଦ ବିଜୟ କାବ୍ୟ"ର କିଛି ଅଂଶ ସେ କାଳର ସାମୟିକ ପତ୍ର ସମ୍ବାଦ ବାହିକାରେ ପ୍ରକାଶିତ ହୋଇଥିଲା । ମାତ୍ର ସମ୍ବାଦ ବାହିକା ତାଙ୍କର ୩୧୭।୧୮୭୯ ତାରିଖର ସଂଖ୍ୟାରେ ଲେଖିଥିଲେ—"ଅଙ୍ଗଦ ବିଜୟ" କାବ୍ୟ ମାସିକ ପତ୍ରିକାରେ ପ୍ରକାଶିତ ହେବାରଯୋଗ୍ୟ । ଆମ୍ଭମାନଙ୍କର ସମ୍ବାଦବାହିକାର କଳେବର କ୍ଷୁଦ୍ର ; ଏଣୁ ଆମ୍ଭେମାନେ ପ୍ରତି ସଂଖ୍ୟାରେ ତାହା ପ୍ରକାଶ କରିବାକୁ କୁଣ୍ଠିତ । ଲେଖକ ଅନୁଗ୍ରହ କରି ଉକ୍ତ କାବ୍ୟକୁ 'ମଧୁପ'ରେ ପ୍ରକାଶ କରାଇଲେ ବଡ଼ ଠିକ୍‌କଣ ହେବ ।" ତେବେ ପ୍ରକାଶିତ କାବ୍ୟର କେତେକାଂଶ ଏଠାରେ ଉଦ୍ଧାର-ଯୋଗ୍ୟ ।

ଦେବାରି-ଆତଙ୍କ-ଶୂର ବାଳୀ ପୁତ୍ରାଙ୍ଗଦ
ସ୍ୱଦର୍ପେ ଭର୍ତ୍ସିଲା ଦଶଗ୍ରୀବ ରକ୍ଷଃରାଜେ-

ଅସୀମ ପ୍ରାଗଲଭ୍ୟେ ଅପମାନି-ରାଘବାରି-
ମହାଶୂରେ, ନାଶିଲା ଅପରିସୀମ ଦର୍ପ ।
ଯେବେ ରାଘବୀୟା-ଚମୂ ; ଘୋଟି ସ୍ୱର୍ଣ୍ଣଲଙ୍କା
ନାଶିଲେ କର୍ବୁରକୁଳ-ଗୌରବ ତପନ
ବିନଷ୍ଟି କୋଣପକୁଳ-ଭନୟ ନିଚୟ
ଭୟେ ଜଡ଼-ସଡ଼ ; ରକ୍ଷଯେନ୍ଦ୍ର ଦଶାନନ
ଆଦେଶିଲେ ଦ୍ୱୌବାରିକେ; -'ଯାର ଦ୍ୱାର ଦେଶେ
ପ୍ରଦତ୍ତ, ତୋରଣ ମୁଖେ ଅମୋଘ-କପାଟ
ଯାହାକ ଅମର-ତ୍ରାସ ; ଥାଉ ଅନ୍ୟ ଦୂରେ
'ସେ ଆଜ୍ଞା ରକ୍ଷସସୂର୍ଯ୍ୟ କହି ଦୌବାରିକ -
ଗମିଲା ପ୍ରାଙ୍ଗଣେ ପ୍ରଭୁ ଆଜ୍ଞା ଉପଲକ୍ଷି ।

(ସମ୍ବାଦବାହିକା ୧୭।୭।୧୮୭୯)

ମହାଯାତ୍ରା ପ୍ରକାଶିତ ହେବାର ଦୁଇବର୍ଷ ପୂର୍ବରୁ ଅର୍ଥାତ୍ ୧୮୯୧ ସାଲରେ 'ବୈଦେହୀ ବିଳାପ' ନାମରେ ଏକ କାବ୍ୟ ରଚିତ ହୋଇଥିଲା । କବି ଏଥିରେ ଅମିତ୍ରାକ୍ଷର ଛନ୍ଦର ଅନୁସରଣ କରିଥିଲେ । ସେକାଳର ସାମୟିକ ପତ୍ରରେ କେତେଜଣ ବିସ୍ମୃତ କବି ଏହି ଛନ୍ଦର ପ୍ରୟୋଗ ଓ ପରୀକ୍ଷା କରିଥିବା ନିଶ୍ଚିତ ଭାବରେ ଜଣାଯାଇଥିଲେହେଁ ରାଧାନାଥ ଏ କ୍ଷେତ୍ରରେ ସର୍ବଶ୍ରେଷ୍ଠ ବିନ୍ଦାଣୀ । ତାଙ୍କର 'ମହାଯାତ୍ରା' ମଧ୍ୟ ଏହି କାରଣରୁ ଅନନ୍ୟସାଧାରଣ ।

ଓଡ଼ିଆ ସାହିତ୍ୟରେ ରାଧାନାଥ କବିଭାବରେ ସର୍ବତ୍ର ସୁପରିଚିତ ଏବଂ ସମ୍ମାନିତ ହେଲେହେଁ ଆଧୁନିକ ଗଦ୍ୟ ସାହିତ୍ୟକୁ ତାଙ୍କର ଦାନ ମଧ୍ୟ ଉଲ୍ଲେଖଯୋଗ୍ୟ । ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ କାବ୍ୟଯୁଗର ଧାରା ପ୍ରବାହିତ ହେଉଥିଲା । ପତ୍ରପତ୍ରିକାର ଅଭ୍ୟୁଦୟ ଏବଂ ପାଠ୍ୟପୁସ୍ତକ ପ୍ରଣୟନ ଯୋଗେ ଊନବିଂଶର ଶେଷଭାଗରେ ଓଡ଼ିଆ ସାହିତ୍ୟରେ ଆଧୁନିକ ଗଦ୍ୟ ସାହିତ୍ୟର ଅଭ୍ୟୁଦୟ ହେଲା । ରାଧାନାଥଙ୍କ ଗଦ୍ୟ ଲେଖା ମଧ୍ୟରେ ଇତାଲୀୟ ଯୁବା, ବିବେକୀ, ପାର୍ବତୀକାବ୍ୟର ଉପସଂହାର, ଉର୍ବଶୀ କାବ୍ୟର ଗଦ୍ୟରୂପ, ଭ୍ରମଣକାରୀର ପତ୍ର, ବାମଣ୍ଡା ଭ୍ରମଣ ବୃତ୍ତାନ୍ତ, ବାସୁଦେବ ସୁଢ଼ଳଦେବଙ୍କ ଜୀବନୀ ଉତ୍କଳ ସାହିତ୍ୟର ଉନ୍ନତି ଏବଂ ତାଙ୍କର ଅନେକ ପ୍ରକାଶିତ ପତ୍ର ଉଲ୍ଲେଖଯୋଗ୍ୟ ।

ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ଗଦ୍ୟସାହିତ୍ୟ ଅତ୍ୟନ୍ତ ଅବିକଶିତ ଅବସ୍ଥାରେ ଥିଲା । ଊନବିଂଶର ମଧ୍ୟଭାଗରେ ମିସନାରୀମାନେ ବଙ୍ଗଳାରୁ ଅନୁବାଦ କରି ଯେଉଁ ଗଦ୍ୟ ପ୍ରଚ୍ଚର କଲେ ତାହା ଅତ୍ୟନ୍ତ ହାସ୍ୟାସ୍ପଦ ଥିଲା । ମିସନାରୀ ସଟନ୍ ସାହେବଙ୍କ ଓଡ଼ିଆ ପାଠ୍ୟପୁସ୍ତକରେ ଗଦ୍ୟର ସ୍ୱରୂପ, ଏହିପରି :—

—ପକ୍ଷିର କଥା—

'ପକ୍ଷିଗଣରେ ପରମେଶ୍ୱରଙ୍କର ଯେମନ୍ତ ନିପୁଣତା ପ୍ରକାଶ ହୋଇଅଛି ଅନ୍ୟ କୌଣସି ବସ୍ତୁରେ ତାହାର ଅଧିକ ହୁଅଇ ନାହିଁ । × × ସେମାନଙ୍କର ଦେହ ପକ୍ଷିରେ ଆଚ୍ଛାଦିତ ଅଛି ପୁଣି ସେହି ପକ୍ଷରେ ହାଲୁକାଇ, ତିବତ, ଦୁଇ ବିପରୀତ ଗୁଣ ଅଛି ପୁଣି ସେହି ଏକର ଉପରେ ଏକ ଏହିମତେ ଆଗପଛ ସବୁଠାରେ ସ୍ଥାପିତ ଅଛି ତାହାଦ୍ୱାରା ଉଡ଼ିବାର କୌଣସି ବାଧା ଜନ୍ମଇ ନାହିଁ ।"

ଓଡ଼ିଆଭାଷାକୁ ବଞ୍ଚାଇବାପାଇଁ ରାଧାନାଥ ଏବଂ ତାଙ୍କର ସହଯୋଗୀ ବନ୍ଧୁମାନେ ଲେଖନୀ ଚାଳନା କରିଥିଲେ । ତେଣୁ ସେ କାଳରେ ବହୁ ପତ୍ରପତ୍ରିକାର ଅଭ୍ୟୁଦୟରେ ରାଧାନାଥ ସକ୍ରିୟ ସମର୍ଥନ କରିଥିଲେ । ଧାରାବାହିକ ଭାବରେ ଏହି ପତ୍ରିକାଗୁଡ଼ିକରେ ତାଙ୍କର ଅନେକ ଲେଖା ପ୍ରକାଶିତ ହୋଇଥିଲା । ବିଶେଷତଃ କାବ୍ୟ ରଚନାରେ ମନୋନିବେଶ କରିବା ପୂର୍ବରୁ ସେ ତାଙ୍କର ପ୍ରସିଦ୍ଧ ଗଦ୍ୟ 'ବିବେକୀ' ୧୮୭୩ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରୁ ପ୍ରକାଶିତ ହେଉଥିବା "ଉତ୍କଳ ଦର୍ପଣ" ପତ୍ରିକାରେ ଆତ୍ମପ୍ରକାଶ କରିଥିଲା । ସେହିପରି ଅନ୍ୟ ବିଖ୍ୟାତ ଗଦ୍ୟ "ଇତାଲୀୟ ଯୁବା" ଉପନ୍ୟାସ ମଧ୍ୟ ଏହି ଉତ୍କଳ ଦର୍ପଣ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏତଦ୍‌ବ୍ୟତୀତ ୧୮୮୭ ମସିହା 'ନବସମ୍ବାଦ' ପତ୍ରିକାରେ ରାଧାନାଥଙ୍କର "ଭ୍ରମଣକାରୀର ପତ୍ର" ଶୀର୍ଷକ ଭ୍ରମଣକାହାଣୀ ୧୮୯୬ ମସିହାରେ "ଓଡ଼ିଆ ଓ ନବସମ୍ବାଦ" ପତ୍ରିକାରେ 'ବାମଣ୍ଡା', ୧୯୦୩ ମସିହାରେ 'ଉତ୍କଳ ସାହିତ୍ୟ'ରେ ବାସୁଦେବ ସୁଡ଼ଳଦେବଙ୍କ ଜୀବନୀ ଓ "ଉତ୍କଳ ସାହିତ୍ୟର ଉନ୍ନତି" ଶୀର୍ଷକ ପ୍ରବନ୍ଧମାନ ପ୍ରକାଶିତ ହୋଇଥିଲା । ଗଦ୍ୟଲେଖା ସ୍ୱଳ୍ପ ହେଲେହେଁ ଏଥିରେ ରାଧାନାଥଙ୍କର ଶକ୍ତିଶାଳୀ ବ୍ୟକ୍ତିତ୍ୱର ପରିଚୟ ମିଳିଥାଏ । ଗଦ୍ୟ ସାହିତ୍ୟର କୌଣସି ପରମ୍ପରା ନ ଥିଲାବେଳେ ରାଧାନାଥ ପ୍ରଥମେ ତାଙ୍କର ଅନୁବାଦ ଗ୍ରନ୍ଥ 'ଇତାଲୀୟ ଯୁବା'ରେ ଯେଉଁ ସ୍ୱଚ୍ଛନ୍ଦ ଶୈଳୀର ପ୍ରବର୍ତ୍ତନ କରିଛନ୍ତି, ତାହା ସର୍ବଥା ପ୍ରଶଂସାର୍ହ । ଉଦାହରଣ ସ୍ୱରୂପ—"ଆମ୍ଭେ ନେପ୍‌ଲସ୍ ନଗରରେ ଜନ୍ମିଥିଲୁ । ଆମ୍ଭର ପିତାମାତା ସଦ୍‌ବଂଶଜାତ ଥିଲେ । ମାତ୍ର ସେମାନଙ୍କର ଅଧିକ ସଂଗତି ନ ଥିଲା । ପିତା ଅତ୍ୟନ୍ତ ଅମିତବ୍ୟୟୀ ଥିଲେ । ଅଟ୍ଟାଳିକା ବନାଇବାରେ, ଅନେକ ବାହନ ଓ ଭୃତ୍ୟ ରଖିବାରେ, ପୁଣି ସେହିପରି ବ୍ୟୟସାଧ୍ୟ ବିଷୟମାନଙ୍କରେ ସେ ବିସ୍ତର ଉଡ଼ାଉଥିଲେ । ସେଥି ନିମନ୍ତେ ସେ କେବେ କେବେ ଦୁର୍ଦ୍ଦଶାଗ୍ରସ୍ତ ହେଉଥିଲେ ।"
— ଇତାଲୀୟ ଯୁବା)

ବିବେକୀ ଏକ ପ୍ରବନ୍ଧ । ଏପରି ମନନଧର୍ମୀ ପ୍ରବନ୍ଧ ପୂର୍ବରୁ ଆଦୌ ନ ଥିଲା । ରାଧାନାଥ ଏ କ୍ଷେତ୍ରରେ ମଧ୍ୟ ଅବିସ୍ମରଣୀୟ । ଆଲୋଚ୍ୟ ଦୀର୍ଘ ପ୍ରବନ୍ଧରେ କବିଙ୍କର ବିଷୟର ବିଶ୍ଳେଷଣ ଓ ଯୁକ୍ତିସମ୍ମତ ଭାବନା ଲକ୍ଷ୍ୟ କରିବାର କଥା ।

"ଆମ୍ଭେମାନେ ଆପଣାକୁ ଯେତେ କରି ମଣୁ, ବାସ୍ତବରେ ଆମ୍ଭେମାନେ ସେପରି ନୋହୁଁ । ଆମ୍ଭେମାନେ ଜୀଇଲେ ଅତି ଅଳ୍ପଲୋକର ସ୍ୱାର୍ଥସିଦ୍ଧି, ମଲେ ଅତି ଅଳ୍ପ

ଲୋକର ସ୍ୱାର୍ଥହାନି ହେବ । କେହି ଆମ୍ଭମାନଙ୍କ କଥା ପ୍ରତିପାଦନ ଭାବୁନାହାନ୍ତି ଏହା ହୃଦୟଙ୍ଗମ ହେବାକୁ ଅନେକ ଦିନ ଲାଗେ !" —(ବିବେକୀ)

ତେବେ ଏକଥା ସତ୍ୟ ଯେ ରାଧାନାଥ ଜଣେ ଖାଣ୍ଟି କବି । ଗଦ୍ୟ ସୃଷ୍ଟି କରିବାପାଇଁ ଯେଉଁ ଆବେଗ ଏବଂ ପ୍ରବଣତା ଆବଶ୍ୟକ, ତାହା ତାଙ୍କର ଅଭାବ ରହିଥିଲା । ତେବେ ନବଯୁଗର ସ୍ରଷ୍ଟା ରୂପେ ସେ ଏ ବିଭାଗରେ ଲେଖନୀ ଚାଳନା କରି ନିଜର ସ୍ୱାତନ୍ତ୍ର୍ୟ ଏବଂ ଦୂରଦୃଷ୍ଟି ସ୍ୱାକ୍ଷରରେ ଲିପିବଦ୍ଧ କରିଯାଇଅଛନ୍ତି । ପରିମାଣ ଦୃଷ୍ଟିରୁ ସ୍ୱଳ୍ପ ହେଲେହେଁ ତାଙ୍କର ଗଦ୍ୟ ଲେଖାଗୁଡ଼ିକ ସାହିତ୍ୟରାଜ୍ୟରେ ଉଲ୍ଲେଖଯୋଗ୍ୟ ହୋଇ ରହିଅଛି । ରାଧାନାଥ ଗଦ୍ୟ ସାହିତ୍ୟର ବିଭିନ୍ନ ବିଭାଗରେ ହାତ ଦେଇଛନ୍ତି । ସେ ଲେଖିଛନ୍ତି ଭ୍ରମଣ କାହାଣୀ ଏବଂ ଜୀବନୀ । ତାଙ୍କର ସାହିତ୍ୟିକ ଅଭିଭାଷଣ ଲିପିବଦ୍ଧ ହୋଇଅଛି । ଏହିସବୁ ବିଭାଗ ରାଧାନାଥ ପ୍ରଥମେ ଆରମ୍ଭ କରିଛନ୍ତି ବୋଲି ସ୍ୱୀକାର କରିବାକୁ ହେବ । ଗଦ୍ୟ ଲେଖାହିଁ ରାଧାନାଥଙ୍କର ଆଧୁନିକ ଚେତନାବୋଧର ସ୍ମାରକୀ ହୋଇ ରହିଅଛି ।

## କବିତ୍ୱ ଓ ଶୈଳୀ

କବି ରାଧାନାଥ ଓଡ଼ିଆ ସାହିତ୍ୟରେ ପ୍ରଥମେ ଚରିତ୍ରପ୍ରଧାନ କାବ୍ୟ ରଚନା କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାଚୀନ ରୀତିକବିମାନେ ଚରିତ୍ରଚିତ୍ରଣକୁ ମୁଖ୍ୟ ଅଙ୍ଗରୂପେ ସ୍ୱୀକାର କରି ନ ଥିଲେ । ସେମାନେ ପାଣ୍ଡିତ୍ୟ ପ୍ରଦର୍ଶନ ଛଳରେ ନାନା ଅଳଙ୍କାରିକ ବିଭବର ପରିଚୟ ଦେଇଯାଇଅଛନ୍ତି । ମାତ୍ର ଜୀବନଧର୍ମୀ ଅନୁଚିନ୍ତା ପାଇଁ ବିଶେଷ ଉପାଦାନ ପ୍ରାଚୀନ କାବ୍ୟ ସାହିତ୍ୟରେ ଦୁର୍ଲ୍ଲଭ କହିଲେ ଚଳେ । ରାଧାନାଥ ପରମ୍ପରାର ସୁଯୋଗ୍ୟ ଅଧିକାରୀ ହୋଇ ପ୍ରକୃତି ବର୍ଣ୍ଣନା, ରୂପବର୍ଣ୍ଣନା ଏବଂ ମାନସିକ ଅବସ୍ଥାର ଇଙ୍ଗିତ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଶିକ୍ଷାପ୍ରଦ ଜୀବନଧର୍ମୀ ଚରିତ୍ରକୁ ଆରୋପିତ କରିଛନ୍ତି । ମାତ୍ର କେତେଗୋଟି ଉଦାହରଣହିଁ ଏହି ଯୁକ୍ତିର ସାର୍ଥକତା ପ୍ରତିପାଦନ କରିପାରିବ । ଇଂରେଜରେ କୁହାଯାଇଛି Style is the man. ଶୈଳୀ କହିଲେ କେବଳ ଲେଖନ ଶୈଳୀ ବୁଝାଏ ନାହିଁ, ଏହା ସମଗ୍ର ସାହିତ୍ୟିକ ଆଭିମୁଖ୍ୟକୁ ବୁଝାଇଥାଏ । ତେଣୁ ଶୈଳୀ ମାଧ୍ୟମରେ କବିର ସମଗ୍ର ବ୍ୟକ୍ତିତ୍ୱ ଓ ଆଦର୍ଶ, ଚିନ୍ତା ଓ ପରିକଳ୍ପନା, ପାଣ୍ଡିତ୍ୟ ଓ ଦୂରଦୃଷ୍ଟି ସବୁକିଛି ଅନୁମାନ କରାଯାଇପାରେ । ଶବ୍ଦଯୋଜନାର ସାର୍ଥକତା ଶ୍ରେଷ୍ଠ କବିମାନଙ୍କର କୃତିରେ ଦେଖାଯାଏ । ଉଚ୍ଚ କୋଟିର କବିଙ୍କର କଳ୍ପନା ଅଳାନ୍ତ ସୁଦୂରପ୍ରସାରୀ । ସେମାନେ ଏକ ନିର୍ଦ୍ଦିଷ୍ଟ କଥାବସ୍ତୁର ପ୍ରତିପାଦନ ପାଇଁ ଆନୁଷଙ୍ଗିକ ରୂପେ ବହୁ ବିଷୟର ଅବତାରଣା କରିଥାଆନ୍ତି । ମନୁଷ୍ୟ ମନର ଗଭୀରତମ ପ୍ରଦେଶର ଭାବକୁ ପ୍ରକାଶ କରିବାରେ କବି ରାଧାନାଥ ସମର୍ଥ ହୋଇଅଛନ୍ତି । ଅନ୍ତରର ସେହି ଭାବନାଗୁଡ଼ିକ ଏପରି ରସାପ୍ଲୁତ ଯେ ପାଠକର ହୃଦୟରେ ଗଭୀର ଆଲୋଡ଼ନ ସୃଷ୍ଟି ହୋଇଥାଏ ।

କ୍ଷୁଦ୍ର 'ଚନ୍ଦ୍ରଭାଗା' କାବ୍ୟରେ ସୁନ୍ଦରୀ ନାୟିକା ବେଳାଭୂମି ଉପରେ କ୍ରୀଡ଼ାରତ ହୋଇଅଛି । ତେଣେ ପ୍ରକୃତି କୋଳରେ—

"ଯୂଥ ଯୂଥ ହୋଇ ଭ୍ରମନ୍ତ ନାନାରଙ୍ଗେ ହରିଣ
ତରଙ୍ଗ ଗୃହାଣି ଗୃହାନ୍ତ ଗୃରୁ ଗ୍ରୀବା ତୋଳଣ ।"

ଲୀଳାମୟୀ ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟ ଅତୁଳନୀୟ । ତାର ମସ୍ତକର ସିନ୍ଦୂର ବିନ୍ଦୁ କବି କଳ୍ପନାରେ ରୂପାୟିତ ହୋଇଅଛି ଏହିପରି—

ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂରବିନ୍ଦୁ ରମଇ ଆଖି
ନୁହଇ ସିନ୍ଦୂର ରହିଛି ସୁର-ହୃଦୟ ଲଖି ।"

ପୁନଶ୍ଚ ସେହି ଚଳଚଞ୍ଚଳ ନାୟିକାର ଅଙ୍ଗଭଙ୍ଗୀ ଅତ୍ୟନ୍ତ ହୃଦୟସ୍ପର୍ଶୀ । ତାର ପ୍ରତିଟି ଅଙ୍ଗଭଙ୍ଗୀରେ ଯୁବକମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିବ । ଯୌବନର ତନିମାରେ ଅପୂର୍ବ ଶ୍ରୀମଣ୍ଡିତା ଏହି କାବ୍ୟ ନାୟିକା ବେଳାଭୂମିରେ ବିଚରଣ କାଳରେ ମନେ ହେଉଛି ସତେ ଯେପରି—

'ଅସମ୍ଭାଳେ ଫିଟି କୁନ୍ତଳ ଭୂମି ଯାଏ ପରଶି
ଯେଣେ ଅନାଉଛି ଲଳନା ଫୁଲ ଯାଏ ବରଷି ।'

ଏହି ପ୍ରସଙ୍ଗରେ ଟେନିସନଙ୍କର 'ମଡ୍' କାବ୍ୟର ନାୟିକାର କଥା ସ୍ମରଣ ହୋଇଯାଏ—

"I know the way she went home
with her maiden posy,
For her feet have touched the medows
And left the daisies rosy."

ସନ୍ଧ୍ୟାର ଅନ୍ଧକାର ଘୋଟିଆସିଛି । ଚିଲିକା ବକ୍ଷରେ ଧୀବରଗଣ ମୀନଆକର୍ଷଣ ପାଇଁ ତଳିଗର୍ଭରେ ଅଗ୍ନିଜାଳ ଦେଉଛନ୍ତି । ଦର୍ଶକର ଚକ୍ଷୁରେ ସେହି ଦୃଶ୍ୟଟି ପ୍ରତିଫଳିତ ହୋଇଛି ଏହିପରି—

"ତରଙ୍ଗେ ଦୋହଲି ଦୋହଲି ବୋଇତ
ଥରେ ଦିଶେ, ଥରେ ହୁଏ ଅନ୍ତର୍ହିତ ;
ଦୁଃଖିମନେ ଆଶା ଉତ୍ଥାନ ପତନ
ପ୍ରାୟେ ଶିଖା ଉଠେ ପଡ଼େ ଘନ ଘନ ;"

ଅଥବା କାଞ୍ଚନେମା ପଦ୍ମାବତୀ ଚିଲିକା ବକ୍ଷରେ ନୌକାରେ ଆସୁଥିବାର ଦୃଶ୍ୟ କବି କଳ୍ପନାରେ ଅତ୍ୟନ୍ତ ମନଲୋଭା ହୋଇଅଛି ।

'ବୈପକ୍ଷତ୍ୟେ ଦ୍ୟୁତି ବଢ଼ାଇ ବଶେଷେ
କୃଷ୍ଣ କେଶପାଶ ଦୋଲେ ପୃଷ୍ଠ ଦେଶେ
ଗନ୍ଧାମୋଦେ ଅନ୍ଧ ହୋଇ ଅଳିକୁଳ
ଗୁଞ୍ଜରି ବାମାକୁ କରନ୍ତ ଆକୁଳ ।'

ରାଧାନାଥଙ୍କ କାବ୍ୟ ସଂସାରର ଏକ ପ୍ରଧାନ ଆଭିମୁଖ୍ୟ ହେଲା, ଦାର୍ଶନିକ ଅନୁଚିନ୍ତା । କବି ଜୀବନର ସତ୍ତାଂକୁ ଅତ୍ୟନ୍ତ ସରସ ଭାବରେ ଉଦ୍‌ଘାଟନ କରିଅଛନ୍ତି । 'ଦରବାର' ରଚନାରେ ସମାଜ ଜୀବନ ପ୍ରତି ଯେଉଁ ଶାଣିତ ବ୍ୟଙ୍ଗର ପରିଚୟ ମିଳେ, ତାହାର ତୁଳନା ଅତୀତ ଅଥବା ସମକାଳୀନ ସାହିତ୍ୟରେ ପରିଦୃଷ୍ଟ ହୁଏ ନାହିଁ । ପ୍ରକୃତିର ରୂପଶୋଭା, ନାୟିକାର ଶୋଭାସୌନ୍ଦର୍ଯ୍ୟ, ଜୀବନର ଅନୁଭୂତି ସଂପର୍କରେ ଗଭୀର ଇଙ୍ଗିତ ରାଧାନାଥଙ୍କ ଲେଖନୀରେ ଅତ୍ୟନ୍ତ ରସୋତ୍ତୀର୍ଣ୍ଣ ହୋଇ ରୂପାୟିତ ହୋଇଅଛି । ଛାୟାରୂପିଣୀ କୌଶଲ୍ୟାର ଅନ୍ତିମ ନିବେଦନ ହେଲା—

"ଯାଉଛି, ମା, ମୋତେ ଯୁଗେ ଯୁଗେ ମିଳୁ
ତୋ ପରି ଜନନୀ ଭବେ,
ମୋ ପରି ଦୁଃଖିନୀ ସୁତା ଜାତ ପୁଣି
ନ ହେଉ ତୋର ଗରଭେ ।"

ଚରିତ୍ରର ମାନସିକ ବିଶ୍ଳେଷଣରେ କବି ଅପୂର୍ବ ସଫଳତା ହାସଲ କରିଛନ୍ତି । ସେ ସବୁ ପାଠ କରି ପାଠକ ସ୍ୱଭାବତଃ ସହାନୁଭୂତିଶୀଳ ହୋଇପଡ଼େ । ପ୍ରାଚୀନ କଥାବସ୍ତୁ, ବିଦେଶୀ କଥାବସ୍ତୁକୁ ଆଧୁନିକ ରୂପରେ ପ୍ରକାଶ କରିବାରେ ରାଧାନାଥଙ୍କର ସଫଳତା ତାଙ୍କର କବିତ୍ୱ ଏବଂ ବ୍ୟକ୍ତିତ୍ୱର ମଧ୍ୟ ଯଥେଷ୍ଟ ପରିଚୟ ପ୍ରଦାନ କରିଥାଏ ।

**କବିଙ୍କର ଜୀବନ ଦର୍ଶନ—**

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ନାନା ସୁଖ ଦୁଃଖ ମଧ୍ୟରେ ସେ ଆନ୍ଦୋଳିତ ହେଉଥାଏ । ପ୍ରବୃତ୍ତି ପରାଧୀନ ଦୁର୍ବଳ ମନୁଷ୍ୟ ଜୀବନରେ ନାନା ଅସାର ସ୍ୱପ୍ନ ରଚନା କରେ । ସାମୟିକ ଶକ୍ତି ହାସଲ କରି ସେ ହୁଏ ଅହମିକାଗ୍ରସ୍ତ । ଧରାକୁ ସେ ଅତ୍ୟନ୍ତ ହେୟ ମନେ କରେ । ମାତ୍ର ଏ ଜୀବନ ଅତ୍ୟନ୍ତ ପରିବର୍ତ୍ତନଶୀଳ । ଏ ସଂସାରରେ କାହାରି ଜୀବନ ସ୍ଥିର ନୁହେଁ । ଧନୀ, ମାନୀ, ଶକ୍ତିଶାଳୀ, ଦୁର୍ବଳ, ସମସ୍ତେ ଦିନେ କାଳ ବକ୍ଷରେ ଲୀନ ହୋଇଯିବେ । ଉଦ୍ଧତ ଅହଂକାରୀ ମନୁଷ୍ୟ ବୁଝେ ନାହିଁ ଯେ—

"କେହି ରହିନାହିଁ ରହିବେ ନାହିଁଟି
ଭବ ରଙ୍ଗଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।

କାଳ ଏକ ଅମୋଘ ଶକ୍ତି । ସମସ୍ତେ ହେଉଛନ୍ତି ଦୈବାଧୀନ । ଜଗତରେ କି ଦେବତା, କି ଅସୁର, କି ମାନବ—ପ୍ରତ୍ୟେକ ଦୈବର ଅଧୀନ । ଦୈବକୁ ଏଡ଼ିବା ଭଳି ଶକ୍ତି କାହାରି ନାହିଁ ।

"ବଳବାନ ଦୈବ— ପକ୍ଷେ ଭବେ ମାଗୋ
କେଉଁ କଥା ଅସମ୍ଭବ ?

ଦୈବର ଅନୁକମ୍ପା ଲଭକରି ପ୍ରଜା ରାଜା ହୁଏ, ମୂର୍ଖ ପଣ୍ଡିତ ହୁଏ, ଶକ୍ତିହୀନ ସାମ୍ରାଜ୍ୟ ଭୋଗ କରେ । ମାତ୍ର ଯେଉଁମାନେ ଐଶ୍ୱର୍ଯ୍ୟ କୋଳରେ ପ୍ରତିପାଳିତ, ଦୈବର ଅକୃପା ବଳରେ ଅବିଳମ୍ବେ ସେମାନେ ମରଣପଥର ଯାତ୍ରୀ ହୁଅନ୍ତି । ରାଧାନାଥ 'ପାର୍ବତୀ' କାବ୍ୟରେ ଏହା ପ୍ରତିପାଦନ କରିଛନ୍ତି । ରାଧାନାଥ ସ୍ମରଣ କରାଇ ଦେଇଛନ୍ତି —

ଧିକ ସେ ସଂସାର ପ୍ରବଳର ପକ୍ଷେ
ସବୁ କଥାରେ ସୁଯୋଗ,
ଦୁର୍ବଳର ପକ୍ଷେ ଲଲାଟ ଲେଖନ
ନୀରବେ ଲାଞ୍ଛନା-ଭୋଗ ।
ଲୋକେ ସେ ବୋଲନ୍ତି ଜନମ ଲଭଇ
ରାଜ-କୁଳେ ଭାଗ୍ୟବାନ,
ଧିକ ସେ ଜନମ ଧିକ ରାଜକୁଳ
ଧିକ ସେ ଲୋକ-ସମ୍ମାନ ।"

ଯେଉଁମାନେ ଧନ, ମାନ, ରୂପ ବିଭବର ଗର୍ବ କରନ୍ତି, ସେମାନେ ମହାକାଳର ଇଙ୍ଗିତକୁ ବୁଝନ୍ତି ନାହିଁ । ନିୟତିର କ୍ରୂର ପରିହାସ ନିକଟରେ ମଣିଷର ସମସ୍ତ ବୁଦ୍ଧି, ନୈପୁଣ୍ୟ ବ୍ୟର୍ଥ ହୋଇଯାଏ । ଇତିହାସ ବକ୍ଷରେ କେତେ କେତେ ମହାଯଶା ନରପତି, ପଣ୍ଡିତ, ଅଭିମାନକାରୀ ଏବଂ ମହାପୁରୁଷ ଅବତୀର୍ଣ୍ଣ ହୋଇଛନ୍ତି, ମାତ୍ର କାଳ ବକ୍ଷରେ ସମସ୍ତେ ଅକାଳରେ ନଶ୍ଚିହ୍ନ ହୋଇ ଯାଇଛନ୍ତି । ଏହି ମହାନ ସତ୍ୟ ଦୁର୍ବଳଚିତ୍ତ ମନୁଷ୍ୟ ବୁଝି ମଧ୍ୟ ବୁଝେ ନାହିଁ । କବି ରାଧାନାଥ ବାରମ୍ବାର ଶୁଣାଇଛନ୍ତି—

'ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟ-ଡୋରି
ନିଜ ଭାଗ୍ୟ ଡୋରି କାଳ ହସ୍ତେ ଏହା
ପକାନ୍ତି ହେଲେ ପାଶୋରି ।

× + × ×

ଭବିତବ୍ୟ ଯାହା ଅବଶ୍ୟ ଘଟିବ
କିଏ ତା କରିବ ଆନ ?
କିଏ ଅବା ଏଥି ଜ୍ୟୋତିଷ୍ଚକ୍ର-ଗତି
ରୋଧିବାକୁ ବଳବାନ ।"

ଯାହାର ଜନ୍ମ ଅଛି, ତାର ମରଣ ଅବଶ୍ୟମ୍ଭାବୀ । କିନ୍ତୁ "ନିଜ ନଶ୍ୱରତା ଗର୍ବେଶ୍ୱର କେବେ ସ୍ମରିଲେ ନାହିଁ ସ୍ୱପନେ ।" ଯାବତୀୟ ଅଧର୍ମ କାର୍ଯ୍ୟର ସେ ହେଲେ ନିୟନ୍ତା । ମାତ୍ର ସେ ବୁଝିଲେ ନାହିଁ ଯେ—

ଶକ୍ତି ନାହିଁ ବସ୍ତ୍ର କାହାରି ଜଗତେ
ନିୟତିକୁ ନେବ ନିଜ ଇଚ୍ଛାପଥେ ।

ଏ ସଂସାରର ମାୟା ମଞ୍ଚରେ ମନୁଷ୍ୟ କେବଳ ଲୀଳାଖେଳା କରି ସେହି ମହାକାଳ ପୁରକୁ ଫେରିଯାଉଛି । ଏଥିରେ ବ୍ୟତିକ୍ରମ ଅସମ୍ଭବ । କର୍ମଭୂମି ବସୁନ୍ଧରା ଚିରକାଳ କାହାରି ଆୟତ୍ତରେ ନଥିଲା କିମ୍ବା କାହାର ନିଜର ହୋଇ ରହିପାରିବ ନାହିଁ । ମହାକବି ସେକ୍‌ସପିୟର କହିଥିଲେ—

All the world's a stage
And all the men and women are players
They have their exits and entrances.
(As you like it.)

'ଜନ୍ମ, ମରଣ, ବରଷା, ଏହା ନଜାଣେ ପୁରୁଷ ।' ବୋଲି ଓଡ଼ିଆ ପ୍ରବଚନରେ ପ୍ରଚଳିତ ଅଛି । ଜନ୍ମ ଆଉ ମୃତ୍ୟୁ ହେଉଛି ଅତ୍ୟନ୍ତ ରହସ୍ୟବ୍ୟଞ୍ଜକ । ଦେବତା ହେଲେ ସୁଦ୍ଧା ଦୈବାଧୀନ ବୋଲି କବି ରାଧାନାଥ ଘୋଷଣା କରିଛନ୍ତି ।

"ଦେବ ହେଲେ ସୁଦ୍ଧା ମୃତ୍ୟୁ-ନିବାରଣେ ନାହିଁ ଶକତି
ଜୀବନ ଯାହାକୁ ବୋଲନ୍ତି, ଯେ ସିନା ମୃତ୍ୟୁକୁ ଗତି ।

× × × ×

ଜନ୍ମ ମୃତ୍ୟୁ ଆଦି ଯାବତ ଘଟଣା ଘଟେ ସଂସାରେ
ସମସ୍ତ ଗ୍ରଥିତ କାଳ-ନିୟନ୍ତ୍ରିତ-ନିୟତି-ହାରେ; (ଉଷା)

ଧନଲୋଭୀ, ବିଳାସୀ, ଅହଂକାରୀ ମନୁଷ୍ୟର ଲୀଳାଖେଳା ଦେଖି କବି ବିଚଳିତ ହୋଇପଡ଼ିଛନ୍ତି । ଏହି ସଂସାରରେ ଧନ ଅଥବା ପଦମର୍ଯ୍ୟାଦା ଚିରନ୍ତନ ସୁଖର କାରଣ ହୋଇ ପାରିବ ନାହିଁ । ମାତ୍ର ଏହି ଅଳୀକ ବିଷୟବାସନାରେ ଦୁର୍ବଳ ମନୁଷ୍ୟ ସତତ ଘାଣ୍ଟି ହେଉଥାଏ । ସେ ଅନୁଭବ କରିପାରେ ନାହିଁ ଯେ ତାହାର ମୂଲ୍ୟବାନ ଜୀବନର ଆୟୁ ପ୍ରତ୍ୟେକ କ୍ଷଣରେ ସରିଯାଉଅଛି । କାଳ ନିକଟରେ ରାଜା, ପ୍ରଜା, ଧନୀ, ନିର୍ଦ୍ଧନ, ଜ୍ଞାନୀ, ଅଜ୍ଞାନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ବାସ୍ତବିକ ନୀତିମୟ ଜୀବନ ଯାପନ ହେଉଛି ଏକମାତ୍ର ସତ୍ୟ ଏବଂ ଶାଶ୍ୱତ ବିଗ୍ରହ । ତେଣୁ କବିଙ୍କର ସର୍ବଶ୍ରେଷ୍ଠ ଉପଦେଶ ହେଲା—

ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି,
ଧର୍ମ ଏକା ସିନା ମହତ ପଣିଆ,
ଆଉ ବଡ଼ପଣ ଅଢ଼େଇ ଦିନିଆ ।

× × +

ସେହି ବଡ଼ପଣେ ବଳାଅ ମଥିକ
କାଳ ନ ପାରିବ ପଶି ଯା କଥିକ ।" (ଦରବାର)

**ରାଧାନାଥଙ୍କ ସ୍ୱାତନ୍ତ୍ର୍ୟ—**

ରାଧାନାଥଙ୍କ ଘରର ଭାଷା ବଙ୍ଗଳା ଥିଲା । ମାତ୍ର ସେ ଜଣେ ନିଷ୍ଠାପର ଓଡ଼ିଆ ସାହିତ୍ୟସେବୀ ଭାବରେ ସୁପରିଚିତ । ତାଙ୍କର ଜୀବନର ବିଭିନ୍ନ ଘଟଣାରୁ ଏହା ପ୍ରମାଣିତ ହୋଇଅଛି । ସେ ପ୍ରଥମ କାଳରେ ବଙ୍ଗଳା ଭାଷାରେ କବିତା ରଚନା କରିଥିଲେ ହେଁ ସେହି ସମୟରେ 'ବିବେକୀ' ପରି ପ୍ରବନ୍ଧ ମଧ୍ୟ ଓଡ଼ିଆରେ ପ୍ରଣୟନ କରି ପାରିଥିଲେ । ୧୯୦୩ ସାଲ ଡିସେମ୍ବର ୨୯ ତାରିଖ ଦିନ ଟାଉନ ଭିକ୍ଟୋରିଆ ସ୍କୁଲରେ (ବର୍ତ୍ତମାନ ଉତ୍କଳମଧୁ ବିଦ୍ୟାପୀଠ) ଯେଉଁ ଲିଖିତ ଭାଷଣ କବି ପାଠ କରିଥିଲେ ତହିଁରୁ ତାଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଅନୁରକ୍ତି ସ୍ପଷ୍ଟ ହେଉଅଛି । ସେ ଲେଖିଥିଲେ—

"ଏ ପ୍ରଦେଶରେ ବଙ୍ଗୀୟ ସାହିତ୍ୟର ପ୍ରଚାର ହୋଇ ପ୍ରଭୂତ ଶ୍ରେୟଃ ସହିତ ପ୍ରଭୂତ ଅନିଷ୍ଟ ମଧ୍ୟ ସାଧିତ ହୋଇଅଛି । ଅନିଷ୍ଟ ସକାଶ ବଙ୍ଗୀୟ ସାହିତ୍ୟ ଦାୟୀ ନୁହେ । ଅମ୍ଭେମାନେ ଦାୟୀ । ଭାରତବର୍ଷୀୟ ପ୍ରାଦେଶିକ ସାହିତ୍ୟର ଆଲୋଚନା ଆମ୍ଭମାନଙ୍କ ପକ୍ଷରେ ସୁଫଳୋପଧାୟକ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ମାତ୍ର ଆମ୍ଭମାନଙ୍କ ଅବକାଶର ଅଧିକାଂଶ ସମୟ ଉତ୍କଳ ସାହିତ୍ୟ ଆଲୋଚନାରେ ବ୍ୟୟିତ ହେବାର ଉଚିତ । ବଙ୍ଗ ସାହିତ୍ୟ ଚର୍ଚ୍ଚା ଦ୍ୱାରା ଆମ୍ଭମାନଙ୍କ ଜ୍ଞାନର ପ୍ରସାର ହୋଇଅଛି । ଆଧୁନିକ ଉତ୍କଳ ସାହିତ୍ୟରେ ବଙ୍ଗୀୟ ସାହିତ୍ୟର କେବଳ ଭାବ ନୁହେଁ, ଭାଷା ମଧ୍ୟ ଅଯଥା ପରିମାଣରେ ପ୍ରବେଶ କରି ସେଥିରେ ବ୍ୟକ୍ତିଗତ ଭାବ କ୍ରମଶଃ ସ୍ଥାନରୁ ସ୍ଥାନତର କରିପକାଉଛି ।"

ଏଥିରୁ ଜଣାଯାଉଅଛି ଯେ ରାଧାନାଥ ଓଡ଼ିଆ ସାହିତ୍ୟର ସ୍ୱାତନ୍ତ୍ର୍ୟ ରକ୍ଷା ଦିଗରେ ଅତ୍ୟନ୍ତ ବ୍ୟାକୁଳତା ପ୍ରଦର୍ଶନ କରିଥିଲେ । ରାଧାନାଥଙ୍କର ସାହିତ୍ୟର ପ୍ରକୃତିପ୍ରାଣତା, ଦୁଃଖବାଦ, ବିଭିନ୍ନ ସାହିତ୍ୟର ପ୍ରେରଣା, ବ୍ୟଙ୍ଗୋକ୍ତି ଜାତୀୟତାବୋଧ ଓ ଗଦ୍ୟ ପ୍ରଭୃତିରେ କବିଙ୍କର 'ସ୍ୱକୀୟତା ଏବଂ ମୌଳିକ ଭାବନାର ପରିଚୟ ମିଳୁଅଛି ।

# ଫକୀରମୋହନଙ୍କ ସାହିତ୍ୟର ପୃଷ୍ଠଭୂମି

## ବ୍ରଜମୋହନ-ନା-ଫକୀରମୋହନ—

କଟକ ଜିଲ୍ଲାର କେନ୍ଦ୍ରାପଡ଼ା ଅଞ୍ଚଳରେ କୁସିଦା ବୋଲି ଏକ ଗ୍ରାମ ଅବସ୍ଥିତ। ଏହି ଗ୍ରାମରେ ମଲ୍ଲ ଉପାଧିଧାରୀ ଖଣ୍ଡାୟତମାନେ ବସବାସ କରିଆସୁଅଛନ୍ତି। ମରହଟ୍ଟା-ମାନଙ୍କ ରାଜତ୍ୱକାଳରେ ଏହି ଗ୍ରାମର ଗୋବିନ୍ଦମଲ୍ଲ ପାଇକମାନଙ୍କର ସର୍ଦ୍ଦାର ଭାବରେ ନିଯୁକ୍ତି ଲାଭକରି ବାଲେଶ୍ୱର ଅଞ୍ଚଳରେ ଅବସ୍ଥାପିତ ହୋଇଥିଲେ। ଏହି ଗୋବିନ୍ଦମଲ୍ଲ ଓରଫ ହିନୁ ମଲ୍ଲ ନିଜର କର୍ତ୍ତବ୍ୟନିଷ୍ଠା ବଳରେ ମରହଟ୍ଟା ଶାସକ ଭାସ୍କର ପଣ୍ଡିତଙ୍କର ଅତ୍ୟନ୍ତ ପ୍ରିୟ ହୋଇ ସେନାପତି ପଦବୀ ଲାଭ କରିଥିଲେ। ମରହଟ୍ଟା ରାଜସରକାରରେ ତାଙ୍କର ପଦୋନ୍ନତି ହେବାରୁ ସେ ବାଲେଶ୍ୱରରେ ଅବସ୍ଥାନ କରିବାକୁ ବ୍ୟବସ୍ଥା କଲେ। ସୌଭାଗ୍ୟକ୍ରମେ ମରହଟ୍ଟା ଶାସକ ତାଙ୍କର ଆନୁଗତ୍ୟ ଏବଂ କାର୍ଯ୍ୟଦକ୍ଷତାରେ ମୁଗ୍ଧ ହୋଇ ୧୦୦ ଏକର ନିଷ୍କର ଭୂମି ଜାଗିର ସ୍ୱରୂପ ପ୍ରଦାନ କରିଥିଲେ। କାଳକ୍ରମେ ଏହି ମଲ୍ଲବଂଶ ସେନାପତି ପଦବୀ ଦ୍ୱାରା ପରିଚିତ ହୋଇଥିଲେ। ହିନୁ ମଲ୍ଲଙ୍କର ଚତୁର୍ଥ ବଂଶଧର ରୂପେ ଉତ୍କଳର ସୁପରିଚିତ ବ୍ୟାସକବି ଫକୀରମୋହନ ୧୮୪୩ ଖ୍ରୀଷ୍ଟାବ୍ଦରେ ମକର ସଂକ୍ରାନ୍ତି ତିଥିରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କର ପିତା ଲକ୍ଷ୍ମଣଚରଣ ସେନାପତି ଜଣେ ଠିକାଦାର ଥିଲେ। ମାତ୍ର ଅକାଳରେ ଫକୀରମୋହନଙ୍କ ପିତାମାତା ମହାପ୍ରୟାଣ କରିବାରୁ ସେ ନିଜର ଠାକୁରମା'ଙ୍କ କୋଳରେ ଲାଳିତ ପାଳିତ ହୋଇଥିଲେ। ଫକୀରମୋହନଙ୍କ ବାଲ୍ୟ କାଳର ନାମ ଥିଲା ବ୍ରଜମୋହନ। ବାଲ୍ୟ କାଳରେ ତାଙ୍କର ଜ୍ୟେଷ୍ଠଭ୍ରାତା ଚୈତନ୍ୟଚରଣ ମୃତ୍ୟୁବରଣ କରିବାରୁ ଦେଶ ପ୍ରଚଳିତ ବିଧି ଅନୁସାରେ ସେ ଅପର୍ତ୍ତିଆଣି ହେଲେ ଏବଂ ତାଙ୍କର ନାମ ରଖାଗଲା ଫକୀର। କାଳକ୍ରମେ ଏହି ଫକୀରମୋହନ ହେଲେ ଓଡ଼ିଆ ଉପନ୍ୟାସ ସାହିତ୍ୟର କଥା-ସମ୍ରାଟ।

## ସମକାଳୀନ ସମାଜ ଓ ଜୀବନ—

୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କରିଥିଲେ ଏବଂ ସେମାନଙ୍କ ଉଦ୍ୟମରେ ଦେଶରେ ଶାନ୍ତି ପ୍ରତିଷ୍ଠିତ ହୋଇଥିଲା। ତଥାପି ମରହଟ୍ଟା ରାଜତ୍ୱର କୁଶାସନର ସ୍ମୃତି ଲୋକମାନେ ଅନେକ ଦିନ ପର୍ଯ୍ୟନ୍ତ ଭୁଲିପାରି ନଥିଲେ। ଐତିହାସିକ W. W. Hunter ତାଙ୍କ ଲିଖିତ ଓଡ଼ିଶା ଇତିହାସର ଦ୍ୱିତୀୟ ଖଣ୍ଡରେ ମରହଟ୍ଟା ଶାସନ ସମ୍ପର୍କରେ ଲେଖିଥିଲେ—

"I have most carefully examined the records of this period, but I can detect absolutely no trace of anything like a civil administration. The Marahatta cavalry herried the country at stated periods each year and departed with the spoil The village communes alone stand out above the stormy waste of waters and their internal organisation formed the only sort of civil Government during the forty years which preceded our succession in 1803."

ଫକୀରମୋହନ ବର୍ଗୀ ଆକ୍ରମଣର ଅନେକ କାହାଣୀ ନିଜର ଠାକୁର ମା'ଙ୍କ ଠାରୁ ଗଳ୍ପ ଛଳରେ ଶୁଣିଥିଲେ । ତାହା ତାଙ୍କର ଲେଖକ ପ୍ରାଣକୁ ଏପରି ଅନୁପ୍ରାଣିତ କରିଥିଲା ଯେ ସେ ପରଜୀବନରେ ସେହି ମରହଟ୍ଟା ରାଜତ୍ୱ କାଳୀନ ସମାଜକୁ ଉପଲକ୍ଷ୍ୟ କରି ଲେଖିଥିଲେ 'ଲଛମା' ଉପନ୍ୟାସ । ଏତଦ୍‌ବ୍ୟତୀତ ତାଙ୍କର ଆତ୍ମଜୀବନ ଚରିତରେ ସମକାଳୀନ ସାମାଜିକ ଜୀବନ ସମ୍ପର୍କରେ ବହୁ ଚମତ୍କାର ବିବରଣୀ ଲିପିବଦ୍ଧ ହୋଇଅଛି । ମରହଟ୍ଟାମାନଙ୍କ ପ୍ରତ୍ୟାଗମନ ଏବଂ ଇଂରେଜମାନଙ୍କ ଆଗମନ କାଳ ଓଡ଼ିଶାର ଇତିହାସ ଓ ସଂସ୍କୃତି କ୍ଷେତ୍ରରେ ଏକ ସନ୍ଧିକାଳ କହିଲେ ଅତ୍ୟୁକ୍ତି ହେବନାହିଁ । ଫକୀରମୋହନଙ୍କ ନିଜ ଭାଷାରେ—

"ଲେଖକ ବାଲ୍ୟ କାଳରେ ଗ୍ରାମବାସୀ ପ୍ରତ୍ୟକ୍ଷଦର୍ଶୀ ଅତି ବୃଦ୍ଧ ଲୋକମାନଙ୍କ ମୁଖରୁ ଶୁଣିଛି ଯେ ମରହଟ୍ଟାମାନଙ୍କ ଅଧିକାର ଅବସାନ ସମୟରେ ଦେଶ ମଧ୍ୟରେ ଏପରି ଅରାଜକତା ଉପସ୍ଥିତ ହୋଇଥିଲା ଯେ ଚୋର, ଡକାୟତ, ନାଗା ସନ୍ନ୍ୟାସୀ-ମାନଙ୍କର ଉପଦ୍ରବରେ ସୁନାରୂପା ଆଉ କଂସା, ପିତ୍ତଳ ଖଣ୍ଡ ମଧ୍ୟ ଲୋକେ ଆପଣା ଆପଣା ଘରେ ପ୍ରକାଶ୍ୟରେ ରଖିବାକୁ ସାହସ କରୁ ନ ଥିଲେ । ଲୋକ-ସାଧାରଣ ନିତାନ୍ତ ଦରିଦ୍ର ଏବଂ ଭୟାର୍ତ୍ତ ଥିଲେ । ସେ ସମୟ ତୁଳନାରେ ବର୍ତ୍ତମାନ ଆମ୍ଭେମାନେ ସ୍ୱର୍ଗ ରାଜ୍ୟରେ ବାସ କରୁଅଛୁଁ ।"

(ଆତ୍ମଜୀବନ ଚରିତ)

ହଣ୍ଟର ସାହେବ ଏବଂ ଫକୀରମୋହନଙ୍କ ଏପରି ମତାମତ ସହିତ ଆଧୁନିକ ଐତିହାସିକଗଣ ଏକମତ ହେଉ ନାହାନ୍ତି । ମରହଟ୍ଟା ରାଜତ୍ୱର ଯେଉଁ ବୀଭତ୍ସ ଚିତ୍ର ଔପନ୍ୟାସିକ ଫକୀରମୋହନ ଲଛମା ଉପନ୍ୟାସରେ ଚିତ୍ରଣ କରିଅଛନ୍ତି, ତାହା ସମ୍ଭବତଃ ସମ୍ପୂର୍ଣ୍ଣ ଠିକ୍ ନୁହେଁ । କାରଣ ଡକ୍ଟର ଭବାନୀଚରଣ ରାୟ ମରହଟ୍ଟା ରାଜତ୍ୱରେ ଓଡ଼ିଶା (Orissa under the Marathas—1751-1803) ନାମକ ପୁସ୍ତକରେ ଏ ସମ୍ପର୍କରେ ଅନେକ ନୂତନ ତଥ୍ୟର ଉଦ୍‌ଘାଟନ କରିଅଛନ୍ତି । ୧୭୪୨ ଖ୍ରୀଷ୍ଟାବ୍ଦରୁ ଓଡ଼ିଶାରେ ମରହଟ୍ଟା ଅଭିଯାନ ଆରମ୍ଭ ହୋଇଥିଲା । ଏହି ଅଭିଯାନ

ପ୍ରାୟ ଦଶବର୍ଷ କାଳ ଲାଗି ରହିଥିଲା । ମରହଟ୍ଟାମାନଙ୍କର ଓଡ଼ିଶା ଆକ୍ରମଣର ଏକମାତ୍ର ଉଦ୍ଦେଶ୍ୟ ଥିଲା ବଙ୍ଗଳାର ସୁବାଦାର ଅଲ୍ଲିବର୍ଦ୍ଦିଖାଁଙ୍କୁ ଜବଦ କରି ଚୌଥ ଆଦାୟ କରିବା । ଯେଉଁମାନେ ସେ କାଳରେ ଓଡ଼ିଶାରେ ମୁସଲମାନ ରାଜପ୍ରତିନିଧି ରହୁଥିଲେ, ସେମାନେ ଥିଲେ ଅତ୍ୟନ୍ତ ଦୁର୍ବଳ ଅଥବା ବେଳେ ବେଳେ ବଙ୍ଗଳା ନବାବଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର କରୁ ନ ଥିଲେ । ଏହି ସୁଯୋଗରେ ମରହଟ୍ଟା ଶାସକଗଣ ଓଡ଼ିଶା ଆକ୍ରମଣ କରି ନିଜର ଆଧିପତ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ବଙ୍ଗଳାକୁ ଜବତ କରିବା ପାଇଁ ବାରମ୍ବାର ଯୁଦ୍ଧ କରିଥିଲେ । ଓଡ଼ିଶା ଏକପ୍ରକାର ମରହଟ୍ଟା ଏବଂ ମୁସଲମାନ ବାହିନୀଙ୍କର ଯୁଦ୍ଧକ୍ଷେତ୍ରରେ ପରିଣତ ହୋଇଯିବାରୁ ଏଠାରେ ସାଧାରଣ ଜୀବନ ବିପନ୍ନ ହୋଇ ପଡ଼ିବା ସ୍ୱାଭାବିକ । ଏହି ଦଶଟି ବର୍ଷ ଭିତରେ ଓଡ଼ିଶାର ଲୋକେ ଚରମ ଦୁଃଖ ଭୋଗ କରିଥିଲେ । ବୋଧହୁଏ ସେହି ଅରାଜକତାର କାହାଣୀ ଜନସାଧାରଣ ବହୁଦିନ ପର୍ଯ୍ୟନ୍ତ ଭୁଲି ପାରି ନ ଥିଲେ । ଫକୀରମୋହନଙ୍କ ଧୂଳିଭିତର କାହାଣୀରେ ତାହାହିଁ ରୂପାୟିତ ହୋଇଅଛି । ନଚେତ ମରହଟ୍ଟାମାନଙ୍କ ସ୍ୱଳ୍ପ କାଳର ରାଜତ୍ୱ ମଧ୍ୟରେ ଶିଳ୍ପ, ବାଣିଜ୍ୟ, ଶାସନ ପ୍ରଭୃତିର ଉନ୍ନତି ପାଇଁ ଯଥେଷ୍ଟ ଧ୍ୟାନ ପ୍ରଦାନ କରାଯାଇଥିଲା ବୋଲି ପ୍ରମାଣିତ ହୋଇଅଛି । ମରହଟ୍ଟା ଶାସକଗଣ ବର୍ଷକୁ ୨୦,୦୦୦ କାହାଣ କଉଡ଼ି ବା ଛଅ ହଜାର ଟଙ୍କା ପୁଣ୍ୟକାର୍ଯ୍ୟ ପାଇଁ ଦାନ କରୁଥିଲେ । ବନ୍ୟା ମରୁଡ଼ି ପ୍ରପୀଡ଼ିତ ଓଡ଼ିଶାରେ ସେମାନେ ଅନ୍ନଛତ୍ରର ବ୍ୟବସ୍ଥା କରୁଥିଲେ । ପୂଜକ ବ୍ରାହ୍ମଣ, ଅସହାୟା ବିଧବା, ଦରିଦ୍ର ତୀର୍ଥଯାତ୍ରୀମାନଙ୍କୁ ସରକାରୀ ସାହାଯ୍ୟର ବ୍ୟବସ୍ଥା ହୋଇଥିଲା । ହିନ୍ଦୁ ହେଲେହେଁ ମରହଟ୍ଟା ସରକାର ଧର୍ମ ନୀତିରେ ଉଦାର ଭାବ ପୋଷଣ କରିଥିଲେ ଏବଂ କଟକର ପ୍ରସିଦ୍ଧ କଦମରସୁଲ ମାସକୁ ୭୩ ଟଙ୍କା ସାହାଯ୍ୟ ପାଉଥିଲେ । ବିଶେଷତଃ ଜଗନ୍ନାଥଙ୍କ ସେବା ପୂଜାରେ ସେମାନେ ଯଥେଷ୍ଟ ଉନ୍ନତି ସାଧନ କରିଥିଲେ । ନୃତ୍ୟ ଏବଂ ସଙ୍ଗୀତର ସେମାନେ ଥିଲେ ପୃଷ୍ଠପୋଷକ । ମରହଟ୍ଟାମାନଙ୍କ ବିଚାର ପ୍ରଣାଳୀ ଅତ୍ୟନ୍ତ ସରଳ ଥିଲା । ମରହଟ୍ଟାଗଣ ଖ୍ରୀଷ୍ଟିଆନଙ୍କ ଉପରେ ଅତ୍ୟାଚାର କରୁଥିଲେ ବୋଲି ଇଂରେଜ ଐତିହାସିକଗଣ ଯାହା ଲିପିବଦ୍ଧ କରି ଯାଇଅଛନ୍ତି, ତାହା ସତ୍ୟର ଅପଲାପ ମାତ୍ର । ବରଂ ସେମାନେ ଖ୍ରୀଷ୍ଟିମାନଙ୍କର ହିତୈଷୀ ଥିଲେ । ତେବେ ଏକଥା ସତ୍ୟ ଯେ ସୁଦୃଢ଼ ଶାସନ ବ୍ୟବସ୍ଥା ପାଇଁ ଅବକାଶ ନଥିବାରୁ ଏବଂ ଦେଶରେ ଅନ୍ତର୍ବିବାଦ ଲାଗି ରହିଥିବାରୁ ସ୍ଥାନେ ସ୍ଥାନେ ରାହାଜାନି ଏବଂ ଲୁଣ୍ଠନରାଜ ହେଉଥିଲା । ତେବେ ଓଡ଼ିଶାର ଶକ୍ତିଶାଳୀ ଗଡ଼ଜାତ ନୃପତିଗଣ ଇଂରେଜମାନଙ୍କୁ ସାହାଯ୍ୟ କରିବାରୁ ସେମାନେ ମରହଟ୍ଟାମାନଙ୍କୁ ବିତାଡ଼ନ କରି ୧୮୦୩ ସାଲରେ ଓଡ଼ିଶା ଅଧିକାର କରିଥିଲେ । ଅବଶ୍ୟ ଏକଥା ସତ୍ୟ ଯେ ଓଡ଼ିଶାର ଅନେକ ଗଡ଼ପତି ମରହଟ୍ଟାମାନଙ୍କ ଶାସନକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । ଏହି ପ୍ରସଙ୍ଗରେ କୁଜଙ୍ଗ ରାଜାଙ୍କର ବ୍ୟବହାର ଡକ୍ଟର ଭବାନୀଚରଣ ରାୟ ନିମ୍ନମତେ ଲିପିବଦ୍ଧ କରିଅଛନ୍ତି ।—

The Raja of Kunjang was habituated in plundering vessels wrecked on the coast and thus acquired vast

wealth and was paying little attention to the orders of the Maratha subahdar of Orissa, asking him to refrain from such practices.'' ଔପନ୍ୟାସିକ ରାମଶଙ୍କରଙ୍କ ବିବାସିନୀ ଉପନ୍ୟାସ ପାଠ କଲେ ଏହାର ଆଂଶିକ ସତ୍ୟତା ଉପଲବ୍ଧି ହୋଇଥାଏ । ସେହିପରି ଫକୀର-ମୋହନ ଲଛମା ଉପନ୍ୟାସରେ ମରହଟ୍ଟା ଏବଂ ମୁସଲମାନଙ୍କ ସଂଘର୍ଷ କାଳର ଓଡ଼ିଶାର ଏକ ବିସ୍ତୃତ ବିବରଣୀ ଅତ୍ୟନ୍ତ ପ୍ରାଞ୍ଜଳ ଏବଂ ସାର୍ଥକ ଭାବରେ ରୂପାୟିତ କରିବାକୁ ସକ୍ଷମ ହୋଇପାରିଛନ୍ତି ।

ଫକୀରମୋହନଙ୍କ ବାଲ୍ୟକାଳର ଓଡ଼ିଶାରେ ଇଂରେଜ ଶାସନ ସୁପ୍ରତିଷ୍ଠିତ ହୋଇଅଛି । ସେତେବେଳେ ଓଡ଼ିଶା ବୋଲି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହୋଇନାହିଁ ଏବଂ ଓଡ଼ିଆ ଭାଷା ଓ ସାହିତ୍ୟର ଭବିଷ୍ୟତ ଅତ୍ୟନ୍ତ ଅନ୍ଧକାରାଚ୍ଛନ୍ନ ଅବସ୍ଥାରେ ପଡ଼ିରହିଅଛି । ଫକୀରମୋହନ ଅନ୍ୟ ଓଡ଼ିଆ ପିଲାମାନଙ୍କ ପରି ନିଜ ଘରେ ଓଡ଼ିଆ ବର୍ଣ୍ଣମାଳାତକ ଶିକ୍ଷା କରିଥିଲେ । କାରଣ ସେତେବେଳେ ଓଡ଼ିଆ ପଢ଼ିବାପାଇଁ କୌଣସି ସ୍କୁଲ ନ ଥିଲା । ବାଲେଶ୍ୱରରେ ଲକ୍ଷ୍ମୀନାରାୟଣ ପୋଖରୀ ନିକଟରେ ଏକମାତ୍ର ପାର୍ସିସ୍କୁଲଟିଏ ଥିଲା ଏବଂ ଏହି ସ୍କୁଲରେ ଫକୀରମୋହନ ପାର୍ସି ଏବଂ ବଙ୍ଗଳା ଅଧ୍ୟୟନ କରିଥିଲେ । ଇଂରାଜୀ ଶିକ୍ଷାପାଇଁ ସେ ପର୍ଯ୍ୟନ୍ତ କୌଣସି ବ୍ୟବସ୍ଥା ହୋଇ ନ ଥିଲା । ବାରବାଟୀଠାରେ ବଙ୍ଗଳା ସ୍କୁଲଟିଏ ପ୍ରତିଷ୍ଠା ହେବାରୁ ପାର୍ସିସ୍କୁଲ ଚଳିପାରିଲାନାହିଁ । ଓଡ଼ିଆ ପିଲାମାନେ ବାଧ୍ୟହୋଇ ବଙ୍ଗଳା ଅଧ୍ୟୟନ କରୁଥିଲେ । ଅବଶ୍ୟ କିଛିକାଳପରେ ବଙ୍ଗଳାର ବିକୃତ ଓଡ଼ିଆ ଅନୁବାଦ-ପାଠ୍ୟପୁସ୍ତକ ସବୁ ପ୍ରଚଳିତ ହେଲା । ଫକୀରମୋହନ ଆତ୍ମଚରିତରେ ଲେଖିଛନ୍ତି—''ସେ ସମୟରେ ବାଇବେଲ ଛଡ଼ା ଓଡ଼ିଆରେ ଅନ୍ୟ କୌଣସି ଛାପାପୁସ୍ତକ ନ ଥିଲା । କଟକର ମିସନ ପ୍ରେସ ଛଡ଼ା ଓଡ଼ିଶାରେ ଅନ୍ୟ କୌଣସି ଛାପାଖାନା ନ ଥିଲା । ବାଲେଶ୍ୱରରେ ପାଦ୍ରୀସାହେବଙ୍କର ଗୋଟିଏ ସ୍କୁଲ ଥିଲା । ସେଥିରେ ବାଇବେଲ ଛଡ଼ା ଅନ୍ୟ ପୁସ୍ତକ ପଢ଼ା ହେଉ ନ ଥିଲା । ମାତ୍ର ପାଦ୍ରୀ ସାହେବଙ୍କ ସ୍କୁଲରେ ଛାପା ପୋଥି ପଢ଼ିଲେ, 'ଜାତି ଯିବ'—ଏହି ଭୟରେ କେହି ହିନ୍ଦୁ ପିଲା ସେ ଇସ୍କୁଲରେ ପଢ଼ୁ ନ ଥିଲେ ।'' କାଳକ୍ରମେ ପାଦ୍ରୀମାନଙ୍କ ଅନୂଦିତ ନୀତିକଥା ଏବଂ ତାରିଣୀଙ୍କର କବିରତ୍ନଙ୍କ ବଙ୍ଗଳା କାଦମ୍ବରୀର ଅନୁବାଦ ପାଠ୍ୟପୁସ୍ତକ ଥିଲା । ସେ କାଳର ଓଡ଼ିଆ ପାଠପଢ଼ା ଅତ୍ୟନ୍ତ ଅଦ୍ଭୁତ ଧରଣର ଥିଲା । ଫକୀରମୋହନ ଲେଖିଛନ୍ତି—''ସେଠାରେ ଜଣେ ଓଡ଼ିଆ ପଣ୍ଡିତ ଥିଲେ—ନାମ ହରେକୃଷ୍ଣ ପାଣିଗ୍ରାହୀ । ସେ ସ୍କୁଲର ଛାତ୍ରମାନଙ୍କୁ ଏହି ରୂପେ ପଢ଼ାଉଥିଲେ—''କୌଣସି ବନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟିଏ ବୃକ୍ଷ ଡାଳରେ ବସିଥିଲା''—କୌଣସି ବନରେ କି କେହି ଅରଣ୍ୟରେ, ଗୋଟିଏ କାକ କି ଏକଗୋଟି ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପଲ, ମୁଖରେ ଧରି କି ବଦନରେ ଧାରଣ କରି, ଗୋଟିଏ ବୃକ୍ଷ କି ଗୋଟିଏ ମହୀରୁହ, ବସିଥିଲା କି ଉପବେଶନ କରିଥିଲା ।''

ଓଡ଼ିଆରେ ମୁଦ୍ରିତ ପୁସ୍ତକର ଅଭାବହେତୁ ଓଡ଼ିଆ ଭାଷା ଅଧ୍ୟୟନ ପାଇଁ କୌଣସି ବ୍ୟବସ୍ଥା ହୋଇ ପାରୁ ନ ଥିଲା । ଫକୀରମୋହନ ପ୍ରତିକୂଳ ପରିସ୍ଥିତି ଯୋଗୁ ଅଧିକ ଅଧ୍ୟୟନ କରି ନ ପାରି ବଙ୍ଗଳା ଭର୍ଣ୍ଣାକ୍ୟୁଲେର ସ୍କୁଲର ହେଡ୍ ପଣ୍ଡିତ ପଦରେ ନିଯୁକ୍ତ ହୋଇଥିଲେ । କର୍ତ୍ତବ୍ୟର ଅନୁରୋଧରେ ସେ ବଙ୍ଗଳା ଭାଷାରେ ଶିକ୍ଷାଦାନ କରୁଥିଲେହେଁ ଓଡ଼ିଆ ପିଲାମାନଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟୟନ କରିବାପାଇଁ ଯଥେଷ୍ଟ ପ୍ରେରଣା ପ୍ରଦାନ କରିଥିଲେ । ଗଭୀର ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଫକୀରମୋହନ ପରବର୍ତ୍ତୀ କାଳରେ ଲେଖିଥିଲେ—

"ଉତ୍କଳେ ଜନମ ଉତ୍କଳେ ମରଣ
ଉତ୍କଳ ଅନ୍ନରେ ଜୀବନ ଧାରଣ ।
ପରିଭବ ଭାବ ପୋଷିବି କିପାଇଁ
ମାତା ସମ୍ବନ୍ଧରେ ସର୍ବେ ଭାଇ ଭାଇ
ଭିନ୍ନାଭିନ୍ନ ଭାବ ବହିବାର ଜନ
ମୋ କ୍ଷୁଦ୍ର ବୁଦ୍ଧିରେ ସେ ତ ଅକିଞ୍ଚନ ।

× × ×

ଗଞ୍ଜନା ଭର୍ତ୍ସନା ଅନ୍ୟ ଜାତିଠାରେ
ପାଇଁ ପୁଣି କହେ ନ ଭାକୁଛ ବାରେ ?
ପରି ରାଜଭାଷା ଅଛି ତହିଁ ଲାଭ
ମାତ୍ର ନ ହରାଅ ଜାତୀୟ ସ୍ୱଭାବ ।
ହେବ ଭାବ କାଳେ ସଭ୍ୟ ଭବ୍ୟ ପରି ?
ଆବୋରି ନ ବସ ପରର ପସରା ।
ନ କରିଲେ ମାତୃଭାଷାର ଉନ୍ନତି
ଘୁଞ୍ଚିବକି କେବେ ଦେଶର ଦୁର୍ଗତି ?"

ସେତେବେଳେ ବଙ୍ଗ ଦେଶରେ ନବଯୁଗର ଆନ୍ଦୋଳନ ଚାଲିଥାଏ ଏହି ନବ-ଅଭ୍ୟୁଦୟର ଯୁଗରେ କ୍ରାନ୍ତିକାରୀ ପରିବର୍ତ୍ତନ ହୋଇଥାଏ । ସାହିତ୍ୟ ଓ ସମାଜରେ ଯୁଗଯୁଗର ଜଡ଼ତା ପରିହାର କରି ନୂତନ ଚେତନାବୋଧର ସଙ୍କେତ ମିଳିଥାଏ । ଏହି ଆତ୍ମଜାଗରଣ ଯୁଗରେ ଲେଖକ ତାର ପାରିପାର୍ଶ୍ୱିକ ପରିସ୍ଥିତି ସମ୍ପର୍କରେ ଥାଏ ସମ୍ପୂର୍ଣ୍ଣ ସଚେତନ । ଏହି ସଚେତନତା ପ୍ରାଚୀନ ସାହିତ୍ୟରେ ଦୁର୍ଲଭ ହୋଇଥିଲା । ଲେଖକ ଓ କବି କେବଳ ଧର୍ମାନୁମୋଦିତ ଭାବନାରେ ନିମଗ୍ନ ହୋଇଥିଲା କିମ୍ବା ରୀତିଯୁଗୀୟ ଶୃଙ୍ଗାର ଅନୁଚିନ୍ତାରେ ସେ ପ୍ରଣୋଦିତ ହୋଇଥିଲା । ମାତ୍ର ଏହି ଏକକ ଅନୁଚିନ୍ତା ଆଉ ଅଧିକ କାଳ ରହିଲାନାହିଁ । ୧୮୦୧ ଖ୍ରୀଷ୍ଟାବ୍ଦରେ ଫୋର୍ଟ ଉଇଲିୟମ ଦୁର୍ଗରେ ଆରବୀ, ପାରସୀ, ବଙ୍ଗଳା, ସଂସ୍କୃତ ପ୍ରଭୃତି ଭାରତୀୟ ଭାଷା ଶିକ୍ଷାର ବ୍ୟବସ୍ଥା କରାଗଲା । ତତ୍‌କାଳୀନ ରାଜପ୍ରତିନିଧି ଏ ଦେଶକୁ ଆସି ପ୍ରଥମେ ଅନୁଭବ କଲେ ଯେ

ଏ ଦେଶରେ ଇଂରେଜ କର୍ମଚାରୀଗଣ ଦେଶୀୟ ଭାଷା ଏବଂ ଆଇନକାନୁନ ଜାଣିବା ଆବଶ୍ୟକ । ନଚେତ ସେମାନେ ଭଲଭାବରେ ଶାସନ କରିପାରିବେ ନାହିଁ । ସେହି ଉଦ୍ଦେଶ୍ୟରେ ସରକାରୀ ନିର୍ଦ୍ଦେଶନାମା ମଧ୍ୟ ପ୍ରଚାରିତ ହୋଇଥିଲା । ପାଦ୍ରୀ ଉଇଲିୟମ କେରିଙ୍କ ପ୍ରଯତ୍ନରେ ଅନେକ ପୁସ୍ତକ ବିଦେଶୀ ଭାଷାରୁ ଅନୂଦିତ ହୋଇ ବଙ୍ଗଳାରେ ଲିଖିତ ଓ ମୁଦ୍ରିତ ହେଲା । ୧୮୧୭ ଖ୍ରୀଷ୍ଟାବ୍ଦରେ ସ୍କୁଲ୍‌ବୁକ୍ ସୋସାଇଟି ସ୍ଥାପିତ ହେବାରୁ ବଙ୍ଗଭାଷାରେ ପୁସ୍ତକ ପ୍ରଣୟନ ଓ ପ୍ରକାଶ ପାଇଁ ଅଧିକ ସୁଯୋଗ ଉପସ୍ଥିତ ହେଲା । ୧୮୧୮ ଖ୍ରୀଷ୍ଟାବ୍ଦ ପରେ ବଙ୍ଗଳାଗେଜେଟ, ଦିଗ୍‌ଦର୍ଶନ, ସମାଚାର ଦର୍ପଣ ପ୍ରଭୃତି ସାମୟିକ ପତ୍ର ପ୍ରକାଶିତ ହେଲା । ଏଥିପାଇଁ ବଙ୍ଗଳା ସାହିତ୍ୟରେ ନବଯୁଗର ପ୍ରବର୍ତ୍ତନ ହେଲା ବୋଲି କୁହାଯାଇଥାଏ । ଯେତେବେଳେ ବଙ୍ଗଦେଶ ସହିତ ଓଡ଼ିଶାପ୍ରାନ୍ତ ସାମିଲ ହୋଇ ରହିଥିବାରୁ ଏସବୁର ପ୍ରତିକ୍ରିୟା ଓଡ଼ିଆଭାଷା ଅଞ୍ଚଳରେ ହେବା ସ୍ୱାଭାବିକ । ୧୮୩୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ପ୍ରଥମେ ମିସନ ପ୍ରେସ ପ୍ରତିଷ୍ଠିତ ହୋଇ ଖ୍ରୀଷ୍ଟିୟ ଧର୍ମପୁସ୍ତକର ଓଡ଼ିଆ ଅନୁବାଦ ମୁଦ୍ରିତ ଓ ପ୍ରଚାରିତ ହେବାପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହେଲା । ପାଠ୍ୟପୁସ୍ତକ ନ ଥିବାରୁ ଓଡ଼ିଆ ଭାଷାରେ ଶିକ୍ଷାଦାନ କରାଯାଇ ପାରୁ ନ ଥିଲା । ପାଠ୍ୟପୁସ୍ତକ ଅଭାବ ଦୂରୀକରଣ ପାଇଁ ଯେଉଁ କେତେଜଣ ଅଗ୍ରଣୀ ଭୂମିକା ନେଇଥିଲେ, ସେମାନଙ୍କ ମଧ୍ୟରେ ଫକୀରମୋହନ ସେନାପତି, ବିଚ୍ଛନ୍ଦ ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଗୌରୀଶଙ୍କର ରାୟ, କପିଳେଶ୍ୱର ବିଦ୍ୟାଭୂଷଣ, ଜଗମୋହନ ଲାଲ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଉତ୍କଳ ଦୀପିକା, ଉତ୍କଳ ହିତୈଷିଣୀ, ଓଡ଼ିଆ ଓ ନବସମ୍ବାଦ, ସମ୍ବାଦ ବାହିକା, ସଂସ୍କାରକ ପ୍ରଭୃତି ପତ୍ରପତ୍ରିକାର ଅଭ୍ୟୁଦୟ ହୋଇଥିଲା । ଏମାନଙ୍କର ଆବିର୍ଭାବ ଯୋଗୁଁ ଓଡ଼ିଆ ଭାଷା ଆନ୍ଦୋଳନର ସୂତ୍ରପାତ ହେଲା ଏବଂ ସେ କାଳରେ ପ୍ରବାସୀ ଅଣଓଡ଼ିଆ ରାଜକର୍ମଚାରୀଗଣ ଓଡ଼ିଆ ଭାଷାକୁ ଲୋପ କରିବା ପାଇଁ ଯେଉଁ ହୀନ ଚକ୍ରାନ୍ତ ଚଳାଇ ଥିଲେ, ଫକୀରମୋହନଙ୍କ ପରି ଜାତୀୟ ବୀରମାନଙ୍କ ଆପ୍ରାଣ ଚେଷ୍ଟାରେ ତାହା ସଫଳ ହୋଇ ନ ଥିଲା । ସମ୍ବାଦପତ୍ରର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହୋଇ ପାରିଲା ।

ଫକୀରମୋହନଙ୍କର ଜୀବନ ଥିଲା ବହୁମୁଖୀ । ସେ ଏକାଧାରରେ ଶିକ୍ଷକ, ସାମ୍ବାଦିକ, ରାଜକର୍ମଚାରୀ, ସଂସ୍କାରକ ଏବଂ ସାହିତ୍ୟିକ ଥିଲେ । ରାଜାଙ୍କଠାରୁ ପ୍ରଜା, ଧନୀଠାରୁ ନିର୍ଦ୍ଧନ, ପ୍ରତ୍ୟେକ ଶ୍ରେଣୀର ଲୋକଙ୍କ ସହିତ ସେ ମିଶିବାର ସୁଯୋଗ ଲାଭ କରିଥିଲେ । ଜୀବନର ଏହି ବ୍ୟାପକ ଅନୁଭୂତି ତାଙ୍କର ଗଳ୍ପ ଏବଂ ଉପନ୍ୟାସ ମାଧ୍ୟମରେ ରୂପାୟିତ ହୋଇଅଛି । ନୂତନ ସଭ୍ୟତାର ଆଲୋକ ସଂସ୍ପର୍ଶରେ ସେ କାଳର ସମାଜରେ ଯେଉଁ ପ୍ରତିକ୍ରିୟା ପ୍ରକଟିତ ହୋଇଥିଲା, ତାହାର ସୂଚନା ମିଳିଥାଏ ସେନାପତିଙ୍କ ଲେଖାରେ । ତାଙ୍କ ପୂର୍ବରୁ ଓଡ଼ିଆ ଗଳ୍ପ ଓ ଜୀବନର ଏପରି ମାର୍ମିକ ଏବଂ ରସାଳ ରୂପାୟନ ଆଉ କୌଣସି ଲେଖକ କରିପାରି ନଥିଲେ । ତାଙ୍କ ପାଇଁ କଳା ହେଲା ଅଧିକ

ବାସ୍ତବ ଏବଂ ଜୀବନ; ସାହିତ୍ୟ ହେଲା ଜୀବନର ଏକ ସମାଲୋଚନା । ଜୀବନ ସହିତ କଳାର ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ, ଏହି କଥାଟି ଫକୀରମୋହନ ଉତ୍ତମରୂପେ ଉପଲବ୍ଧି କରିଥିଲେ ଏହି ପ୍ରସଙ୍ଗରେ ଜଣେ ବିଶିଷ୍ଟ ପାଶ୍ଚାତ୍ୟ ଚିନ୍ତାନାୟକଙ୍କର ଆଲୋଚନା ଉଲ୍ଲେଖଯୋଗ୍ୟ ।

"The artist opens our eyes and our ears and our imagination so that he writes or paints or composes comes to have more 'reality' for us than that clouded actual enviornment in which we walk and breathe. The 'things' in a painting have more purity and precision and intensity than the things as seen by the routine practical eye. The characters in a novel have more urgency and clarity than the people we brush against in our hurried daily contacts. The place to seek for reality is not in some metaphysical formula, but in the unimpeachable realities in work of art."

(Art and the Man—by Irwin Edman. P. 52)

ଓଡ଼ିଆ ସାହିତ୍ୟରେ ଏ ପ୍ରକାର ଅନନ୍ୟସାଧାରଣ ଅନୁଭୂତି ଫକୀରମୋହନ ହିଁ ପ୍ରଥମେ ଆମକୁ ଦେଲେ ।

## ନବ ଉନ୍ମେଷର ଯୁଗ ଓ ତତକାଳୀନ ଓଡ଼ିଆ ସାହିତ୍ୟ—

ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ଆବିର୍ଭାବ ଆକସ୍ମିକ ନୁହେଁ । ତାଙ୍କୁ ଅନେକ ସମାଲୋଚକ ଭାବପ୍ରବଣ ହୋଇ 'ଓଳଆରୁ ପଡ଼ି ଗଜା' ବୋଲି କହିଥାଆନ୍ତି । ଫକୀରମୋହନଙ୍କ ସାହିତ୍ୟ ସାଧନା ପ୍ରତି ଏହା ଉଚିତ ଅବଧାରଣା ନୁହେଁ । ସାହିତ୍ୟ ସାଧନା ସମାଜ ଓ ପରମ୍ପରାରୁ ବିଚ୍ୟୁତ ହେଲେ ତାହା କୃତ୍ରିମ କାରୁକାର୍ଯ୍ୟର ରୂପ ଧାରଣ କରିଥାଏ । ଫକୀରମୋହନ ଜଣେ ଖାଣ୍ଟି ସମାଜ ସଚେତନ ବିପ୍ଳବୀ ଅଗ୍ରଗାମୀ ସାହିତ୍ୟ ସାଧକ । ତେଣୁ ତାଙ୍କର କାବ୍ୟସାଧନାକୁ ଏକକ ବିଗ୍ରହରେ ମୂଲ୍ୟାୟନ କରିବାର କୌଣସି କାରଣ ନାହିଁ । ଫକୀରମୋହନ ଯେଉଁ କାଳରେ ଲେଖନୀ ଧାରଣ କରିଥିଲେ, ତାହା ହେଉଛି ଭାରତୀୟ ଜୀବନରେ ନବ ଉନ୍ମେଷ ବା ରେନେସାଁର ଯୁଗ । ଏହି ନବ ଉନ୍ମେଷ ଆନ୍ଦୋଳନ ଊନବିଂଶ ଶତାବ୍ଦୀରେ ନାନା କାରଣରୁ ଆରମ୍ଭ ହୋଇଥିଲା । 'Studies in the Bengal Renaissance' ପୁସ୍ତକରେ ସମ୍ପାଦକ ଶ୍ରୀ ଅତୁଲଚନ୍ଦ୍ର ଗୁପ୍ତ ଏ ସମ୍ପର୍କରେ କେତେକ ଚମତ୍କାର ବିଷୟରେ ଆଲୋକପାତ କରି ଅଛନ୍ତି । ଫକୀରମୋହନ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଏହି ରେନେସାଁର ଐତିହାସିକ ଆଭିମୁଖ୍ୟ ବିଚାର କରିବାକୁ ପଡ଼ିବ ।

ପ୍ରାୟ ୧୮୧୩ ଖ୍ରୀଷ୍ଟାବ୍ଦରେ ରାଜା ରାମମୋହନ କଲିକତାରେ ଅବସ୍ଥାନ କରି ନିଜର ବନ୍ଧୁମାନଙ୍କ ସାହାଯ୍ୟରେ ସଂସ୍କାରଧର୍ମୀ ଆନ୍ଦୋଳନର ସୂତ୍ରପାତ କଲେ। ସେ କାଳର ସମାଜରେ ଏହା ଥିଲା ଅତ୍ୟନ୍ତ ଅଭିନବ ଏବଂ ବୈପ୍ଳବିକ। ଯୁଗଯୁଗର ବଦ୍ଧମୂଳ ଧାରଣା ବିରୁଦ୍ଧରେ ଏପରି ପ୍ରଚଣ୍ଡ ବେଗରେ କେହି ପ୍ରତିବାଦର ସ୍ୱର ଉତ୍ତୋଳନ କରି ନ ଥିଲେ। ରାଜା ରାମମୋହନ ତାଙ୍କର ଜଣେ ଇଉରୋପୀୟ ବନ୍ଧୁ James Silk Buckingharnଙ୍କୁ ୧୮।୧।୧୮୧୮ ଖ୍ରୀଷ୍ଟାବ୍ଦରେ ଏକ ପତ୍ରରେ ହିନ୍ଦୁ ସମାଜର ଦୁର୍ଗତି ସମ୍ପର୍କରେ ବିଶ୍ଳେଷଣ କରି ଲେଖିଥିଲେ—

"I regret to say that the present system of religion adhered to by the Hindus is not well calculated to promote their political interests. The distinction of castes, introducing in innmerable divisions and subdivisions among them, has entirely deprived them of patriotic feeling and the multitude of religious rites and ceremonies and the laws of purification have totally disqualified them from undertaking any difficult enterprises. He concludes this long letter by saying that, "It is necessary that some change should take place in their religion atleast for the sake of their political advantage and social comfort· He felt deeply about the necessary of getting rid of those soul—killing accretions to religion which were the outcome of degeneration and curruption due partly to priest craft and partly to historical and social causes. But he had a profound respect for the original purity of the doctrine and practice of Hindu religion."

(Studies in the Bengal Renaissance P.-9)

ଏହି ଶତାବ୍ଦୀରେ ଇଂରେଜ ଶିକ୍ଷାର ପ୍ରଚଳନ ଫଳରେ ପାଶ୍ଚାତ୍ୟ ଜ୍ଞାନାଲୋକରେ ଉଦ୍ଭାସିତ ହୋଇ ଏ ଦେଶର ଶିକ୍ଷିତଗଣ ନିଜକୁ ଆବିଷ୍କାର କଲେ ଏବଂ ଭାରତୀୟ ସମାଜରେ ଯୁଗ ଯୁଗ ଧରି ସଞ୍ଚିତ ବଦ୍ଧମୂଳ ଧାରଣା ଏବଂ କୁସଂସ୍କାର ବିରୁଦ୍ଧରେ ଖଡ୍ଗହସ୍ତ ହେଲେ। ଏହି ପରିପ୍ରେକ୍ଷୀରେ ଜନ୍ମଗ୍ରହଣ କଲା। ଦୟାନନ୍ଦଙ୍କ ଆର୍ଯ୍ୟ ସମାଜ ଏବଂ ରାମମୋହନଙ୍କ ବ୍ରାହ୍ମ ସମାଜ ଆନ୍ଦୋଳନ। ଭାରତବର୍ଷର ଚିନ୍ତାଧାରାରେ ଏହା ଅଭୂତପୂର୍ବ ଆଲୋଡ଼ନ ଆନୟନ କଲା। ତତ୍କାଳୀନ ଶିକ୍ଷିତଗୋଷ୍ଠୀ ଭାରତୀୟ

ସଂସ୍କୃତ ପ୍ରତି କେବଳ ବିମୁଖ ନଥିଲେ ଅଥବା ମୋହଗ୍ରସ୍ତ ହୋଇ ଇଂରେଜୀ ଶିକ୍ଷା ପାଇଁ ଆଗ୍ରହ ପ୍ରକାଶ କରି ନ ଥିଲେ, ସେମାନେ ବିଶ୍ୱାସ କରୁଥିଲେ ଯେ ଇଂରେଜୀ ଶିକ୍ଷା ଲାଭ ନକଲେ ଏ ଦେଶରେ ବୈଜ୍ଞାନିକ ଭାବନା ପ୍ରବେଶ କରିବ ନାହିଁ । ଯୁଗର ପ୍ରଗତି ପାଇଁ ଏକାନ୍ତ ଭାବରେ ବୈଜ୍ଞାନିକ ଅନୁଶୀଳନ ଆବଶ୍ୟକ । ଭାରତୀୟ ପ୍ରାଚୀନ ଐତିହ୍ୟର ଉଦ୍‌ଘାଟନ ଥିଲା ରେନେସାଁ ଆନ୍ଦୋଳନର ଅନ୍ୟତମ ସ୍ଲୋଗାନ । ବଙ୍ଗଳା ପରି ଓଡ଼ିଶା ଭୂମିରେ ଏହି ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରିଥିଲେ ଫକୀରମୋହନ, ରାଧାନାଥ, ମଧୁସୂଦନ, ଗୌରୀଶଙ୍କର, ବିଶ୍ୱନାଥ, ରାମଶଙ୍କର ପ୍ରଭୃତି । ବଙ୍ଗ ସାହିତ୍ୟରେ ଦେବେନ୍ଦ୍ରନାଥ ଋକ୍‌ବେଦର ଅନୁବାଦ କଲେ ଏବଂ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମହାଭାରତର ଅନୁବାଦ ପ୍ରକାଶ କଲେ । ଦେଶୀୟ ଭାଷାର ପ୍ରାଧାନ୍ୟ ସ୍ୱୀକାର କରିବା ପାଇଁ ଏହି ସମୟରେ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏପରି କି ୧୮୬୩ ଖ୍ରୀଷ୍ଟାବ୍ଦରେ କେଦାରପୁର ବ୍ରାହ୍ମ ସମାଜରେ କେତେକ ଯୁବକମାନଙ୍କ ଦାବୀ ଫଳରେ ସଂସ୍କୃତ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷା ମାଧ୍ୟମରେ ଚର୍ଚ୍ଚର କାର୍ଯ୍ୟ ପରିଚାଳନା କରାଯାଇଥିଲା । ବଙ୍ଗଳା ସହିତ ଶାସନ କ୍ଷେତ୍ରରେ ଓଡ଼ିଆ ଭାଷୀ ଅଞ୍ଚଳ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିବାରୁ ଏହି ଆନ୍ଦୋଳନର ଆବର୍ତ୍ତନ ଓଡ଼ିଶା ଭୂମିରେ ମଧ୍ୟ ଦେଖା ଯାଇଥିଲା । ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କର ଧର୍ମ ପ୍ରଚାର ଏବଂ ଶିକ୍ଷା ବିସ୍ତାର ଆନ୍ଦୋଳନ ଚିନ୍ତାଧାରାରେ ପରିବର୍ତ୍ତନ ଆନୟନ କରିବା ପାଇଁ କେତେକ ପରିମାଣରେ ସକ୍ଷମ ହୋଇପାରିଥିଲା । ସେ କାଳରେ ବହୁ ଶିକ୍ଷିତ ଲୋକ ପରିବର୍ତ୍ତନର ସ୍ୱାଦ ଉପଲବ୍‌ଧି କରିବା ପାଇଁ ଖ୍ରୀଷ୍ଟିୟାନ ଧର୍ମ କିମ୍ବା ବ୍ରାହ୍ମଧର୍ମ ଗ୍ରହଣ କରିବା ପାଇଁ ଆଗ୍ରହୀ ହୋଇପଡ଼ୁଥିଲେ । ମଧୁସୂଦନ, ବିଶ୍ୱନାଥ କର, ଫକୀରମୋହନ ପ୍ରଭୃତି ଏ ଯୁଗରେ ବ୍ରାହ୍ମଧର୍ମ ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରିଥିଲେ । ଏ ସମ୍ପର୍କରେ ଫକୀରମୋହନ ନିଜର ଆତ୍ମଚରିତରେ କେତେକ କୌତୁହଳପୂର୍ଣ୍ଣ ବିବରଣୀ ପ୍ରଦାନ କରିଅଛନ୍ତି ।

"ସେହି ସମୟରେ ବାଇବେଲ ଏବଂ ଅନ୍ୟାନ୍ୟ ପୁସ୍ତକ ପାଠ ଏବଂ ପାଦ୍ରୀ ସାହେବମାନଙ୍କ ସହିତ କଥୋପକଥନ ଦ୍ୱାରା ଜାଣିଲି ଯେ ଏକମାତ୍ର ପ୍ରଭୁ ପରମେଶ୍ୱର ଜଗତର ସୃଷ୍ଟିକର୍ତ୍ତା ଏବଂ ପ୍ରଭୁଙ୍କ ପୁତ୍ର ଯୀଶୁଖ୍ରୀଷ୍ଟ ଆମ୍ଭର ତ୍ରାଣକର୍ତ୍ତା + × + କବି ରାଧାନାଥବାବୁଙ୍କୁ ଏ ସବୁ କଥା କହିଲି; ଏ ବିଷୟରେ କଣ କରିବା କର୍ତ୍ତବ୍ୟ ଦୁଇଜଣ ଅନେକ ଦିନ ପର୍ଯ୍ୟନ୍ତ ବସି ବିଚାର କଲୁ । ଶେଷରେ ଦିନେ ଦୁଇଜଣଯାକ ଏକାଦିନକେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ସକାଶେ ସ୍ଥିରକଲୁ । ଶେଷରେ ଦିନେ ରାଧାନାଥବାବୁ ହିନ୍ଦୁଧର୍ମ ତ୍ୟାଗ କରିପାରିବେ ନାହିଁ ବୋଲି ପ୍ରକାଶ କଲେ । ଏକୁଟିଆ ଖ୍ରୀଷ୍ଟାନ ହେବାକୁ ମୋର ସାହସ ଅଣ୍ଟିଲା ନାହିଁ । + + + ଏହି ଘଟନାର ଅନେକ ଦିନ ଉତ୍ତାରେ ବାଲେଶ୍ୱର ନିମକ ମାହାଲକୁ ଜଣେ କିରାଣି ବଙ୍ଗ ଦେଶରୁ ଆସିଲେ—ନାମ ପ୍ରସନ୍ନକୁମାର ଚାଟୁର୍ଯ୍ୟା । ଶୁଣିଲି ଲୋକଟି ବ୍ରାହ୍ମ । ତାଙ୍କ ସହିତ ସାକ୍ଷାତ କରି, ବ୍ରାହ୍ମଧର୍ମ ସମ୍ବନ୍ଧରେ କଥୋପକଥନ କଲି । × × × କେତେକ ମାସ ଉତ୍ତାରେ ପ୍ରକାଶ୍ୟ ରୂପେ ଗୋଟିଏ ସ୍ୱତନ୍ତ୍ର ବ୍ରାହ୍ମ ମନ୍ଦିର ସ୍ଥାପନ କରାଯିବାର ସ୍ଥିର କରାଗଲା । ଉପାସକ

ଆମ୍ଭମାନଙ୍କ ସେହି ସଭାର ସଭ୍ୟ, ଅର୍ଥାତ୍ ଦାମୋଦରପ୍ରସାଦ ଦାସ, ଗୋବିନ୍ଦପ୍ରସାଦ ଦାସ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ବାବୁ । ଏମାନଙ୍କ ଛଡ଼ା ସମୟ ସମୟରେ ଅନ୍ୟାନ୍ୟ କେତେଜଣ ସଙ୍ଗୀ ମଧ୍ୟ ଉପାସନାରେ ଯୋଗ ଦିଅନ୍ତି । ବାଲେଶ୍ୱର ମୋତିଗଞ୍ଜ ବଜାର ପଶ୍ଚିମ ପ୍ରାନ୍ତରେ ମୟୂରଭଞ୍ଜ ମହାରାଜାଙ୍କର ଗୋଟିଏ କୋଠା ବସାଘର ଥିଲା । ସହର ମଧ୍ୟରେ ସେହି କୋଠାର ଡାକ ନାମ ରାଜା-କୋଠା । ଉକ୍ତ ରାଜା କୋଠାରେ ୧୮୬୬ କ ୬୮ ମସିହାରେ, ସମ୍ଭବତଃ, ଗ୍ରୀଷ୍ମକାଳରେ ଉପାସନା କାର୍ଯ୍ୟ ଆରମ୍ଭ ହେଲା । ଉକ୍ତ ସମୟ ପର୍ଯ୍ୟନ୍ତ ବାଲେଶ୍ୱରବାସୀ ବ୍ରହ୍ମଧର୍ମର ନାମ ଶୁଣି ନ ଥିଲେ ।''

ଫକୀରମୋହନ ୧୮୧୬ ଖ୍ରୀଷ୍ଟାବ୍ଦରେ ବ୍ରାହ୍ମ ସମାଜର ପ୍ରତିନିଧି ଭାବରେ ମାନ୍ଦ୍ରାଜ ସମ୍ମିଳନୀରେ ଯୋଗଦାନ କରିଥିଲେ । ଏହି ରେନେସାଁ ଆନ୍ଦୋଳନର ଜଣେ ବିଶିଷ୍ଟ କର୍ଣ୍ଣଧାର ଭାବରେ ସେ ଅନୁଭବ କରିଥିଲେ ଯେ ଏ ଦେଶର ପ୍ରାଚୀନ ସାହିତ୍ୟର ଗୌରବ ଲୋକ ସମାଜ ମଧ୍ୟରେ ଉଦ୍‌ଘାଟିତ ହେବା ଆବଶ୍ୟକ । ତେଣୁ ଅତୀତରେ ରାମାୟଣ ମହାଭାରତ ପ୍ରଭୃତି ପୁରାଣ ବହୁ ପ୍ରଚାର ହୋଇଥିଲେ ହେଁ ଲେଖକ ପୁନର୍ବାର ରାମାୟଣ, ମହାଭାରତ, ମୋହମୁଦ୍‌ଗର, ଭଗବତଗୀତା, ଖିଲ ହରିବଂଶ, ଉପନିଷତ୍ ସଂଗ୍ରହ, ଯୋଗଶାସ୍ତ୍ର ପ୍ରଭୃତି ଅନୁବାଦ କରିଥିଲେ । ରାମଶଙ୍କର ରାୟ ବିଭିନ୍ନ ବେଦର ଓଡ଼ିଆ ଅନୁବାଦ ପ୍ରଚାର କରିଥିଲେ । ସେ ଯେଉଁ ପୌରାଣିକ ନାଟକଗୁଡ଼ିକ ପ୍ରଣୟନ କରିଥିଲେ ତାହାର ଅନ୍ତରାଳରେ ଲେଖକଙ୍କ ଏହି ନବଉନ୍ମେଷର ଭାବଧାରା ଅଲୋଡ଼ିତ କରିଥିବା ଜଣାଯାଏ । ଏହି ପ୍ରସଙ୍ଗରେ ସେ ନିଜ ଗ୍ରନ୍ଥାବଳୀର ଭୂମିକାରେ ଲେଖିଅଛନ୍ତି—

''ସ୍ୱାର୍ଥାନ୍ୱେଷୀ କବିମାନେ ପୁରାଣ ଗଢ଼ି ଲୋକଙ୍କୁ କେତେ ପ୍ରକାର ଯେ ଭଣ୍ଡି ଅଛନ୍ତି, ତାହାର ସୀମା ନାହିଁ ଏବଂ ପ୍ରକୃତ କଥା ଛଡ଼ା ମିଥ୍ୟା କହି ମନୁଷ୍ୟତା ପରିବର୍ତ୍ତେ ଅମନୁଷ୍ୟତା ଭିଆଇ ଅଛନ୍ତି । ମୁଁ ରାମାୟଣ ପାଠରେ ଯାହା ଉପଲବ୍‌ଧି କଲି ଏବଂ ପ୍ରକୃତରେ ଆଦିକବି ବାଲ୍ମୀକି ରଚିତ ରାମାୟଣରେ ଯାହା ଅଛି ତାହାହିଁ ରାମାଭିଷେକ ନାଟକରେ ବିବୃତ ହୋଇଅଛି ।

ସତ୍‌ଶିକ୍ଷା ଦେବା ମୋର ପ୍ରଧାନ ଉଦ୍ଦେଶ୍ୟ ଥିବାରୁ ବେଦ, ସ୍ମୃତି ତଥା ରାମାୟଣ, ମହାଭାରତ, ଭାଗବତ, ଚୈତନ୍ୟଚରିତାମୃତ, ଗୀତଗୋବିନ୍ଦ ଓ ଇତିହାସାଦି ପାଠକରି ଦେଶଲୋକଙ୍କ ଆଗରେ ତହିଁର ସ୍ୱାଦୁ ନାଟକାକାରରେ ବାଢ଼ିଅଛି ।''

ଫକୀରମୋହନଙ୍କ ଗଳ୍ପ, ଉପନ୍ୟାସ ଏବଂ କାବ୍ୟ କବିତାରେ ଏହି ସମକାଳୀନ କୁସଂସ୍କାର ବିରୁଦ୍ଧରେ ପ୍ରବଳ ପ୍ରତିବାଦର ସ୍ୱର ଦେଖିବାକୁ ମିଳେ । ସେ ପ୍ରଚାରଧର୍ମୀ ଲେଖକ ନଥିଲେ । ମାତ୍ର ତାଙ୍କର ଉପନ୍ୟାସର ଚରିତ୍ର ଏବଂ ଘଟଣାଗୁଡ଼ିକର ଏପରି ବିନ୍ୟାସ ହୋଇଅଛି ଯେ ପାଠକ ଏହି ନବଯୁଗର ଭାବଧାରାରେ ସ୍ୱଭାବତଃ ଅନୁପ୍ରାଣିତ ହୋଇଯାଇଥାଏ ।

ବାସ୍ତବିକ ଊନବିଂଶ ଶତାବ୍ଦୀରେ ଇଂରେଜଶିକ୍ଷିତ ଓଡ଼ିଆମାନେ ଓଡ଼ିଆ ଭାଷାକୁ ଆଦର କରିବା ପାଇଁ କୁଣ୍ଠିତ ହେଉଥିଲେ । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର

ଅଭାବ ନଜିର ଦେଖାଇ ଅଣଓଡ଼ିଆ ରାଜକର୍ମଚାରୀଗଣ ଓଡ଼ିଆ ଭାଷାର ବିଲୋପ ପାଇଁ ଆନ୍ଦୋଳନ କରିଥିଲେ । ଓଡ଼ିଆଭାଷୀ ଅଞ୍ଚଳ ଶାସନ ସୂତ୍ରରେ ଅନ୍ୟ ପ୍ରଦେଶ ସହିତ ଗ୍ରଥିତ ଥିବାରୁ ଓଡ଼ିଆ ଭାଷା ଉପଯୁକ୍ତ ସହାନୁଭୂତିରୁ ବଞ୍ଚିତ ହୋଇଥିଲା । ୧୮୩୮ ଖ୍ରୀଷ୍ଟାବ୍ଦରେ ପ୍ରଥମେ କଟକରେ ମିସନ ପ୍ରେସ ପ୍ରତିଷ୍ଠିତ ହେଲା । ଏହି ପ୍ରେସରେ ଖ୍ରୀଷ୍ଟିୟ ଧର୍ମପୁସ୍ତକ ମୁଦ୍ରିତ ହେଉଥିଲା ଏବଂ ପାଦ୍ରି ସାହେବମାନଙ୍କ ଦ୍ୱାରା ଲିଖିତ କେତେକ ପୁସ୍ତକ ସେତେବେଳେ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ଥିଲା । କଲିକତାର ସ୍କୁଲ ବୁକ୍ ସୋସାଇଟି ଓଡ଼ିଆ-ଭାଷୀ ଅଞ୍ଚଳ ପାଇଁ ପାଠ୍ୟପୁସ୍ତକ ନିର୍ବାଚନର ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ସମିତିର ସଦସ୍ୟବୃନ୍ଦ ଓଡ଼ିଆ ଭାଷାରେ ଅନଭିଜ୍ଞ ଥିବାରୁ ଓଡ଼ିଆ ପାଠ୍ୟ ପୁସ୍ତକ ଉପଯୁକ୍ତ ନ୍ୟାୟ ଲାଭ କରିବା କଥା ଆଶା କରାଯାଉଥିଲା । ପ୍ରବାସୀ ରାଜକର୍ମଚାରୀଙ୍କ ଚକ୍ରାନ୍ତ ଯୋଗୁ ଓଡ଼ିଶାରେ ଭାଷା ଆନ୍ଦୋଳନର ସୂତ୍ରପାତ ହେଲା । ସୁଖର କଥା ଯେ ବିଚ୍ଛନ୍ଦାନନ୍ଦ, ନନ୍ଦକିଶୋର, ଜଗମୋହନ, ଫକୀରମୋହନ, ବିଚ୍ଛନ୍ଦଚରଣ, ରାଧାନାଥ, ଗୌରୀଶଙ୍କର ଶଟନମିଲର ପ୍ରଭୃତିଙ୍କ ସହଯୋଗ ଫଳରେ ଓଡ଼ିଆ ଭାଷା ଆସନ୍ନ ମୃତ୍ୟୁ ମୁଖରୁ ରକ୍ଷାଲାଭ କଲା ଏବଂ ୧୮୭୩ ଖ୍ରୀଷ୍ଟାବ୍ଦ ପରେ ସରକାର ଓଡ଼ିଆ ପାଠ୍ୟ ପୁସ୍ତକର ଉନ୍ନତି ପାଇଁ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କଲେ । ଏହି ଘଟଣାର କିଛିକାଳ ପୂର୍ବେ ଫକୀରମୋହନ ୧୮୬୮ ଖ୍ରୀଷ୍ଟାବ୍ଦରେ ଗୋଟିଏ ଛାପାଖାନା ପ୍ରତିଷ୍ଠା କରି ଓଡ଼ିଆ ଭାଷାରେ ପୁସ୍ତକ ଏବଂ ସାମୟିକ ପତ୍ରିକା ପ୍ରକାଶ କରିଥିଲେ । ସେତେବେଳେ ଓଡ଼ିଆ ଭାଷାର ଅବସ୍ଥା ପର୍ଯ୍ୟାଲୋଚନା କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼ିଥାଏ । ଖ୍ରୀଷ୍ଟାନ ପାଦ୍ରୀମାନେ ବଙ୍ଗଳା ଭାଷାରୁ ଯେଉଁ ଗଦ୍ୟପୁସ୍ତକ ଅନୁବାଦ କରିଥିଲେ, ତାହା ବିକୃତ ଓଡ଼ିଆ ଗଦ୍ୟ ବୋଲି ସ୍ୱୀକାର କରିବାକୁ ହେବ । ପାଦ୍ରୀକୃତ 'ନୀତିକଥା' ସ୍କୁଲମାନଙ୍କରେ କିପରି ପଠିତ ହେଉଥିଲା ସେ ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କର ଏକ ପ୍ରବନ୍ଧରୁ ଉଦ୍ଧାର କରାଯାଇ ପାରେ ।

"କେତେବେଳେ ଏକ କୁକୁର କୌଣସି ସ୍ଥାନରେ ଖଣ୍ଡେ ବ୍ୟାଘ୍ରଚର୍ମ ଦେଖି ନିକଟବର୍ତ୍ତୀ ହୋଇ ତାକୁ ଦନ୍ତରେ କାମୁଡ଼ିବାକୁ ଲାଗିଲା ।"

ଏହି ବାକ୍ୟକୁ ଶିକ୍ଷକ ବୁଝାଉଥିଲେ—'କେତେବେଳେ କି କୌଣସି ସମୟରେ—ଏକ କି ଏକ ସଂଖ୍ୟକ—କୁକୁର କି ଶ୍ୱାନ—କୌଣସି କି କେହି—ସ୍ଥାନରେ କି ସ୍ଥଳ ବିଶେଷରେ—ଖଣ୍ଡେ କି ଏକ ଖଣ୍ଡ—ବ୍ୟାଘ୍ରଚର୍ମ କି ଶାର୍ଦ୍ଦୁଳ ତ୍ୱଚ—ଦେଖି କି ଦର୍ଶନ କରି—ନିକଟବର୍ତ୍ତୀ କି ସମୀପବର୍ତ୍ତୀ—ହୋଇ କି ହଇ—ତାକୁ କି ଚର୍ମ ବିଶେଷକୁ—ଦାନ୍ତରେ କି ଦଶନରେ—କାମୁଡ଼ିବାକୁ କି ଦଂଶନ କରିବାକୁ—ଲାଗିଲା କି ଲାଗିଲା ।

ଫକୀରମୋହନ ତାଙ୍କ ଆତ୍ମଚରିତରେ ମଧ୍ୟ ଏହିପରି ଏକ ଉଦାହରଣ ପ୍ରଦାନ କରିଅଛନ୍ତି । ତାହା ହେଲା—

"କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟିଏ ବୃକ୍ଷ ଡାଳରେ ବସିଥିଲା ।"

ତାହା ପାଠ କରାଯାଉଥିଲା—"କୌଣସି ଦିନରେ—କୋଣସି ଅହ୍ନରେ, ଗୋଟିଏ କାକ—ଏକ ଗୋଟି ବାୟସ, ଖଣ୍ଡିଏ ମାଂସ—କି ଖଣ୍ଡିଏ ପଲ, ମୁଖରେ ଧରି—ବଦନରେ ଧାରଣ କରି, ଗୋଟିଏ ବୃକ୍ଷ କି—ଏକଗୋଟା ମହୀରୁହ, ଡାଳରେ କି—ଶାଖାରେ, ବସିଥିଲା କି—ଉପବେଶନ କରିଥିଲା ।"

ପ୍ରସଙ୍ଗ କ୍ରମେ ସେ କାଳରେ ପାଠ୍ୟ ହେଉଥିବା ସଟନ ସାହେବଙ୍କ ଲିଖିତ ଗଦ୍ୟର ମଧ୍ୟ ଅବତାରଣା ଆବଶ୍ୟକ ମନେହୁଏ ।

"ମନୁଷ୍ୟର ପାଇଁ ଯେଉଁ ସବୁଠୁଁ ଉତ୍ତମ ବିଷୟ ତାହା ମନୁଷ୍ୟର ଦ୍ୱାରା ହାନି ନ ହୋଇପାରେ କେହି ତାକୁ ହରଣ କରି ନପାରନ୍ତି ଅବା କାହାକୁ ତାହା ଦିଆହିଁ ନ ଯାଇପାରେ । ପରମେଶ୍ୱରଙ୍କର ମହାକାର୍ଯ୍ୟ ଏହି ଜଗତ ଯେମନ୍ତ ଉତ୍ତମ ତେମନ୍ତ ଏହି ଜଗତର ବିବେଚନା କରିବାକୁ ମନୁଷ୍ୟର ମନ ଉତ୍ତମ ବରଞ୍ଚ ଜଗତର ସର୍ବୋତ୍ତମ ଭାଗ ହୁଅଇ । ଏହି ଦୁଇ ବସ୍ତୁ ଏପାନ୍ତ ଆମ୍ଭମାନଙ୍କର ଅଛୁ ଯେ ସରକ ଜଗତରେ ବାସ କରି ଓ ମନର ଦ୍ୱାରା ସମସ୍ତ ଭୋଗ କରି ସେ ସରକ ଏହି ଜଗତ ମନ କେହି ଆମ୍ଭମାନଙ୍କଠାରୁ ହରଣ କରି ନ ପାରଇ । (ମନର ଧୈର୍ଯ୍ୟର କଥା)

ସୌଭାଗ୍ୟର କଥା ଯେ ସରକାରଙ୍କ ଶୁଭଦୃଷ୍ଟି ପଡ଼ିବାରୁ ଗ୍ରୁନବୃତ୍ତି ପରୀକ୍ଷା ପାଇଁ ଅନେକ ସୁଲେଖକ ପାଠ୍ୟ ପୁସ୍ତକ ରଚନା କରିଥିଲେ । ସେମାନଙ୍କ ମଧ୍ୟରେ ଫକୀରମୋହନ ଥିଲେ ଅନ୍ୟତମ । ଫକୀରମୋହନଙ୍କ ଲିଖିତ ରାମାୟଣ ଅଯୋଧ୍ୟାକାଣ୍ଡ ଏବଂ ଭାରତ ଇତିହାସ, ପାଠ୍ୟପୁସ୍ତକ ହିସାବରେ ନିର୍ବାଚିତ ହୋଇଥିଲା । ତେବେ ପାଠ୍ୟପୁସ୍ତକ ରଚନାରେ ଭକ୍ତକବି ମଧୁସୂଦନ ରାଓ ଏକପ୍ରକାର ନେତୃତ୍ୱ ଗ୍ରହଣ କରିଥିଲେ । ତାଙ୍କର ଗଦ୍ୟ ରଚନା ଶୈଳୀ ଥିଲା ଅତ୍ୟନ୍ତ କ୍ଲିଷ୍ଟ ଏବଂ ଦୀର୍ଘ ସମାସାନ୍ତ ପଦଯୁକ୍ତ । ପୁନଶ୍ଚ ରାମଶଙ୍କର ଏବଂ ଗୋପାଳବଲ୍ଲଭ ଯେଉଁ ଗଦ୍ୟଶୈଳୀରେ ଉପନ୍ୟାସ ପ୍ରଣୟନ କଲେ ତାହା ଅପେକ୍ଷାକୃତ ସରଳ ହେଲେହେଁ ତହିଁରେ ପ୍ରାଚୀନ କାବ୍ୟ ଯୁଗର ସାଙ୍ଗୀତିକ ଶୈଳୀର ପ୍ରଭାବ ଅନୁଭୂତ ହେଉଥିଲା ।

## ଉଦାହରଣ ସ୍ୱରୂପ

"ପୃଥିବୀର ଇତିହାସରେ ସଙ୍କୀର୍ତ୍ତିତ ଯେଉଁ ନରପତିମାନେ ନିଜର ଦେବୋପମ ସୁନିର୍ମଳ ଚରିତର ଏବଂ ଲୋକୋତ୍ତର ଲୋକ ହିତକର ଜୀବନର ଶୁଭ୍ରାଲୋକ ଦ୍ୱାରା ନିଖିଳ ସଂସାରର ମୁଖ ଉଜ୍ଜ୍ୱଳ କରିଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ପ୍ରାଚୀନ ଉତ୍କଳର ବୌଦ୍ଧ ନୃପତି ପୁଣ୍ୟଶ୍ଳୋକ ମହାରାଜ ଅଶୋକ ଜଣେ ଅଗ୍ରଗଣ୍ୟ ରାଜା ଥିଲେ ।"

(ମଧୁସୂଦନ ରାଓ—ଅଶୋକ)

"ହୋଇଛି ବସନ୍ତ କାଳ, ରବ ଦେଇଛି କୋକିଳ, ତରୁତର ଲତାକୁଳ, ଅଙ୍ଗରେ ନବଦୁକୁଳ, ଲୋହିତ ହରିତ ପୀତେ ରଞ୍ଜିତ ନିଚୋଳ, ବିଶାଳରସାଳ ଶିରେ ସୁଗନ୍ଧ ବକୁଳମାଳ, କିଂଶୁକ ମଣ୍ଡିତ କୁଞ୍ଜେ ମତ୍ତ ମଧୁକର ରୋଳ ।"

(ଭାମାଭୂୟାଁ—ଗୋପାଳବଲ୍ଲଭ)

ଫକୀରମୋହନ ଅନୁଭବ କରିଥିଲେ ଯେ ସେହି ଅଭ୍ୟୁଦୟ କାଳରେ ଏ ପ୍ରକାର ଗଦ୍ୟ ଓଡ଼ିଆ ମାନଙ୍କୁ ଛୁଇଁ ପାରିବ ନାହିଁ । ଲୋକ ପ୍ରଚଳିତ ଢଗ, ଢମାଳି ଯାହା ସାହିତ୍ୟିକ ସମାଜରେ ଅନାଦୃତ ହେଉଥିଲା, ଫକୀରମୋହନ ସେ ସବୁ ଗଦ୍ୟରେ ବ୍ୟବହାର କରି ସାହିତ୍ୟିକ ମର୍ଯ୍ୟାଦା ଆରୋପ କଲେ । ଲୋକଙ୍କର କଥିତ ଭାଷାକୁ ସେ ଅତ୍ୟନ୍ତ ରସୋତ୍ତୀର୍ଣ୍ଣ କରି ଓଡ଼ିଆ ଗଦ୍ୟ ସାହିତ୍ୟରେ ଯୁଗାନ୍ତର ଆନୟନ କଲେ । ଫକୀରମୋହନଙ୍କ ଉପନ୍ୟାସ ପାଠ କଲେ ଏହାର ଭୂରି ଭୂରି ଉଦାହରଣ ମିଳିପାରିବ । ପଲ୍ଲୀବହୁଳ ଭାରତବର୍ଷରେ ସାହିତ୍ୟିକ ପ୍ରକାଶଭଙ୍ଗୀ ଯଦି ପଲ୍ଲୀଚଳଣି ଏବଂ ଜୀବନ ପ୍ରବାହରୁ ଦୂରେଇ ଯାଏ, ତାହେଲେ ସେପରି ସାହିତ୍ୟ ଲୋକ ଜୀବନରେ ପ୍ରାଣବନ୍ତ ହେବନାହିଁ ବୋଲି ସେ ବୁଝି ପାରିଥିଲେ । ସେଥିପାଇଁ ଫକୀରମୋହନଙ୍କ ଶୈଳୀ ଅତ୍ୟନ୍ତ ମୌଳିକ, ଆକର୍ଷିକ ଏବଂ ଅନନ୍ୟସାଧାରଣ । ତାଙ୍କର ପ୍ରକାଶ-ଭଙ୍ଗୀର ସାମାନ୍ୟ ଏକ ଉଦାହରଣ ହିଁ ଏହି ଉକ୍ତିର ଯାଥାର୍ଥ୍ୟ ପ୍ରମାଣିତ କରିପାରିବ ।

"ଗାଆଁ ମାଇକିନିଆମାନେ ଦେଖିବାକୁ ଧାଇଁଲେ, ରେବତୀ, ଶୁକୁରି, ମଙ୍ଗି, ମାଳିଆ, କେମା ମା, ଭୀମାମାଉସୀ, ହରୁରାମା, ସୋଦରି, ମେଙ୍କ, କନକ, ନେତ, କେଙ୍ଗା, ସାବି, କମଳୀ...ଇତ୍ୟାଦି ଗଉଡ଼ଘର କନିଆ ବୋହୂ କେହି ପିଲାକାଖେଇ, କେହି ପିଲା ହାତ ଧରି ଚଲାଇ, କେହି ଜଣକ ପଛରେ, କେହି ଏକାକିନୀ ଧାଇଁଛନ୍ତି ।"

(ଛମାଣ ଆଠଗୁଣ୍ଠ—ଫକୀରମୋହନ)

## ଔପନ୍ୟାସିକ ଫକୀରମୋହନ

୧୯୦୦ ଖ୍ରୀଷ୍ଟାବ୍ଦରେ କର୍ମମୟଜୀବନରୁ ଅବସର ଗ୍ରହଣ କରି ଫକୀରମୋହନ କଟକରେ ନିଜର ବାଲିଗ୍ରବାଦସ୍ଥିତ ବାସଭବନରେ ଅବସ୍ଥାନ କରିଥିଲେ । ସେତେବେଳକୁ ତାଙ୍କର ବୟସ ୫୭ବର୍ଷ ହୋଇଥିଲା । ନାନା ଗଡ଼ଜାତରେ ଦେବାନ କାର୍ଯ୍ୟରେ ବାହେଲ ହୋଇ ସେ ଦୀର୍ଘକାଳ କର୍ମମୁଖର ଜୀବନ ମଧ୍ୟରେ କେତେଗୁଡ଼ିଏ ପୁରାଣ, ଅନୁବାଦ, କାବ୍ୟ କବିତା ପ୍ରଣୟନ କରିଥିଲେ । ମାତ୍ର ଉତ୍କଳର କଥାସମ୍ରାଟ ବ୍ୟାସକବି ଫକୀରମୋହନଙ୍କର ସେ ପର୍ଯ୍ୟନ୍ତ ଅଭ୍ୟୁଦୟ ହୋଇ ନ ଥିଲା । ଜୀବନର ଉତ୍ତରକାଳରେ ନାନା ଅନୁଭୂତିରେ ରସାଣିତ ହୋଇ ବ୍ୟାସକବି କଥା ସାହିତ୍ୟ ସୃଷ୍ଟିରେ ମନୋନିବେଶ କଲେ । ସୁଖର କଥା ଯେ ଏହି ସମୟରେ ବିଶ୍ୱନାଥ କରଙ୍କ ସମ୍ପାଦନାରେ ଉତ୍କଳ ସାହିତ୍ୟ ପ୍ରକାଶିତ ହେଲା ଏବଂ ସମ୍ପାଦକଙ୍କ ସନିର୍ବନ୍ଧ ଅନୁରୋଧ ରକ୍ଷା କରି ଫକୀରମୋହନ ଗୋଟିକ ପରେ ଗୋଟିଏ ଗଳ୍ପ ପ୍ରକାଶ ପାଇଁ ଦେଉଥିଲେ ଏବଂ ତାଙ୍କର ଉପନ୍ୟାସଗୁଡ଼ିକ ମଧ୍ୟ ଧାରାବାହିକ ଭାବରେ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଉପନ୍ୟାସ ଲେଖା ସମ୍ପର୍କରେ ଫକୀରମୋହନଙ୍କ ଆତ୍ମଚରିତର ବିବରଣୀ ଏଠାରେ ଆଲୋଚ୍ୟ ହୋଇପାରେ । ସେ ଲେଖିଥିଲେ—"କଟକ ବାସ ସମୟରେ ମୋ'ର ଉପନ୍ୟାସ ଲେଖା ଆରମ୍ଭ ହୁଏ । ମୁଁ ପ୍ରଥମେ 'ରେବତୀ' ନାମକ ଗୋଟିଏ ଗଳ୍ପ

ଲେଖିଲି । 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିବାପାଇଁ ତାହା ସମ୍ପାଦକଙ୍କୁ ଦେଲି । ମୁଁ ଏହି ସମୟରେ ଯେଉଁ ଗଳ୍ପ ଉପନ୍ୟାସ ଲେଖୁଥିଲି ତାହା ମୋହର ନାମରେ ପ୍ରକାଶ ନ କରି ଧୂର୍ଜ୍ଜଟି ନାମରେ ପ୍ରକାଶ କରୁଥିଲି । ଏ ନାମଟି ବାଛିଥିଲେ ମୋର ପ୍ରିୟବନ୍ଧୁ ମଧୁସୂଦନ ରାଓ । ତତ୍ପରେ ଛମାଣ ଆଠଗୁଣ୍ଠ ନାମରେ ଗୋଟିଏ ଗଳ୍ପ ଆରମ୍ଭ କଲି । ତାହା କ୍ରମଶଃ ବଢ଼ି ବଢ଼ି ଗୋଟିଏ ବଡ଼ ଉପନ୍ୟାସରେ ପରିଣତ ହେଲା । ଏହାପରେ 'ଅପୂର୍ବ ମିଳନ' ନାମରେ ଗୋଟିଏ ଉପନ୍ୟାସ ଲେଖିବାକୁ ଆରମ୍ଭ କରେଁ ଏବଂ ଏହି ନାମରେ ତାହା ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା । ସ୍ୱତନ୍ତ୍ର ପୁସ୍ତକାକାରରେ ଯେତେବେଳେ ଛପାହେଲା ତାହାର ନାମ ଦେଲି ଲଛମା । ମୋର ଏହି ଗଳ୍ପ ଓ ଉପନ୍ୟାସମାନ ପଢ଼ି ପାଠକମାନେ ବିଶେଷ ପ୍ରୀତ ହୋଇଥିଲେ ।"

(ଆତ୍ମଚରିତ-୧୯୬୭—ପୃ. ୧୭୪-୭୫)

ଫକୀରମୋହନ ଅଳ୍ପ କେତେଗୋଟି ଗଳ୍ପ ଓ ଉପନ୍ୟାସ ଲେଖିଥିଲେ; ମାତ୍ର ଏହାର ମାଧ୍ୟମରେ ସେ ଓଡ଼ିଆ ସମାଜ ଜୀବନର ପ୍ରକୃତ ଆଲେଖ୍ୟ ରୂପାୟିତ କରିବାରେ ସଫଳ ହୋଇଛନ୍ତି । ତାଙ୍କ ପରି ଓଡ଼ିଆ ଜୀବନକୁ ଚିହ୍ନି ଚହ୍ନାଇବାରେ ଆଉ କେହି ଶିଳ୍ପୀ ଏପରି ଆନ୍ତରିକ ଉଦ୍ୟମ ପୂର୍ବରୁ କରି ନ ଥିଲେ । ବାସ୍ତବିକ ଫକୀରମୋହନ ଥିଲେ ଜଣେ ଶ୍ରେଷ୍ଠ ଜୀବନଧର୍ମୀ କଳାକାର । ଜୀବନର ଅନୁଶୀଳନ ଏବଂ ଅନୁସନ୍ଧାନ କରି ତାହାର କଳାତ୍ମକ ପରିବେଷଣ କରିବାରେ ଫକୀରମୋହନଙ୍କ ପରି ଆଉ କାହିଁ ରସସ୍ରଷ୍ଟା ମିଳନ୍ତି ନାହିଁ । ଫକୀରମୋହନଙ୍କ ସାହିତ୍ୟ ସଂସାରରେ ବିଚରଣ କରିବାପାଇଁ ହେଲେ ଏହି କାରଣରୁ ତାଙ୍କର ସମକାଳୀନ ସାମାଜିକ ପୃଷ୍ଠଭୂମି ସମ୍ପର୍କରେ ସମ୍ୟକ ଜ୍ଞାନ ଆବଶ୍ୟକ । ନଚେତ କବି ଓ ଔପନ୍ୟାସିକ ଫକୀରମୋହନଙ୍କ ସାହିତ୍ୟ ସାଧନାର ପ୍ରକୃତ ମୂଲ୍ୟାୟନ ହୋଇପାରିବ ନାହିଁ ।

# ଜାତୀୟକବି ଗଙ୍ଗାଧର ମେହେର

କବି ଗଙ୍ଗାଧର ସମାଜର ଯେ ଜଣେ ସାର୍ଥକ କବି ଥିଲେ ଏଥିରେ ଦ୍ୱିମତର ଅବକାଶ ନାହିଁ । ମାତ୍ର ତାଙ୍କର ରଚନାଗୁଡ଼ିକ ସମସ୍ତଙ୍କୁ ଅତିକ୍ରମକରି ସର୍ବଯୁଗୀୟ ଭାବନାର ଆଧାର ହୋଇପାରିବ କି ନାହିଁ ତାହାହିଁ ଆଜି ବିଚାରିବାର କଥା । ପୂର୍ଣ୍ଣାତ୍ମା ନ ହେଲେ ମୃତ୍ୟୁକୁ କେହି ଅମୃତର ସୋପାନ କରିପାରେ ନାହିଁ । ସାହିତ୍ୟରେ ଗଙ୍ଗାଧର ଏହି ଶ୍ରେଣୀର ସାଧକ ଥିଲେ, ଯାହାଙ୍କର ମୃତ୍ୟୁର ବହୁବର୍ଷ ପରେ ମଧ୍ୟ ସେ ଅମଳିନ ପ୍ରତିଭା ହୋଇ ରହିଛନ୍ତି ।

କବି ଗଙ୍ଗାଧର ପରାଧୀନ ଉତ୍କଳରେ ଏକ ବିଜାତୀୟ ଯୁଗରେ ଜନ୍ମଗ୍ରହଣ କରି ଜୀବନ ଅତିବାହିତ କରିଥିଲେ । ଆଜି ଆମର ସୌଭାଗ୍ୟ ଯେ ସ୍ୱାଧୀନ ଉତ୍କଳରେ ସେହି ଜାତୀୟ କବିଙ୍କର ସ୍ମୃତି ତର୍ପଣ ପାଇଁ ଉଦ୍ୟମ ଚାଲିଅଛି । ଗଙ୍ଗାଧରଙ୍କ ବହୁମୁଖୀ ପ୍ରତିଭାର ଆଲୋଚନା ପାଇଁ ଏହା ଯଥାର୍ଥ କ୍ଷେତ୍ର ନୁହେଁ । ମାତ୍ର ଜାତୀୟକବି ଗଙ୍ଗାଧର କିପରି ଜାତିର ଜୀବନର ଧାରାକୁ ଅଧ୍ୟୟନ କରି ତାହାର ମରମର ବାଣୀ ଅତି ବ୍ୟାକୁଳଭାବରେ ପରିବେଷଣ କରିଥିଲେ, ତାହାହିଁ ଆଜିର ଆଲୋଚ୍ୟ ବିଷୟ । କବି ପଦାନତ ଉତ୍କଳରେ ହୀନମନ୍ୟ ରୋଗଗ୍ରସ୍ତ ଉତ୍କଳୀୟଙ୍କୁ ସତର୍କ କରି ଦେଇଥିଲେ ଯେ ଜାତିର ବିକାଶ ଓ ସମୃଦ୍ଧି ପ୍ରଧାନତଃ ତାର ଜାତୀୟଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ଉପରେ ନିର୍ଭର କରେ । ପରମୁଖାପେକ୍ଷୀ ଜାତିର ଭବିଷ୍ୟତ ପ୍ରଗତି ସୁଦୂରପରାହତ । ସାଂସ୍କୃତିକ ସମ୍ପଦର ଅଭାବରେ ପୃଥିବୀରେ କୌଣସି ଜାତି ଅଗ୍ରସର ହୋଇଛି ବୋଲି ଇତିହାସ ସାକ୍ଷ୍ୟ ଦିଏ ନାହିଁ । ଇଂରେଜି ଭାଷା ଓ ସଭ୍ୟତା ପ୍ରତି ଅନୁସରଣକାରୀ ତତ୍କାଳୀନ ଶିକ୍ଷିତ ଉତ୍କଳୀୟଙ୍କୁ ସତର୍କ କରି ସେ କହିଥିଲେ—

"ମାତୃଭୂମି ମାତୃଭାଷାରେ ମମତା
ଯାହାର ଜନମି ନାହିଁ,
ତାକୁ ଯେବେ ଜ୍ଞାନୀ ଗଣନ୍ତେ ଗଣିବା
ଅଜ୍ଞାନ ରହିବେ କାହିଁ ।" (ମାତୃଭୂମି)

ମାତ୍ର ତାଙ୍କ ଜନ୍ମର ଶହେବର୍ଷ ପରେ ଏ ଅବସ୍ଥାରେ ବିଶେଷ ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସହିତ ଓଡ଼ିଆ ସାହିତ୍ୟର ଚର୍ଚ୍ଚା ଯେ ସମଧିକ ପ୍ରସାରିତ ହୋଇଅଛି, ଏଥିରେ ଆଦୌ ସନ୍ଦେହ ନାହିଁ । ମାତ୍ର ଶିକ୍ଷିତ ଉତ୍କଳୀୟ ମାନଙ୍କେ ଓଡ଼ିଆଭାଷା ଓ ସାହିତ୍ୟର ଉନ୍ନତିକୁ ନିଜର ଉନ୍ନତି ବୋଲି

ଏବେ ମଧ୍ୟ ମନେ କରନାହାନ୍ତି । ଏବେ ମଧ୍ୟ ବ୍ୟବହାରିକ ତଥା ସାଂସ୍କୃତିକ ଜୀବନରେ ଓଡ଼ିଆ ଭାଷା ଓ ସାହିତ୍ୟ ଉପଯୁକ୍ତ ମର୍ଯ୍ୟାଦା ଲଭ କରିପାରିନାହିଁ । ସବୁଠାରୁ ଅବଶୋଷର କଥା ଯେ ଗଙ୍ଗାଧରଙ୍କ ସମାଜରେ ଓଡ଼ିଆ ଭାଷାର ପ୍ରଧାନ ଶତ୍ରୁ ଥିଲେ ଅଣଓଡ଼ିଆ ପ୍ରବାସୀ । ମାତ୍ର ବର୍ତ୍ତମାନ ଓଡ଼ିଆ ଭାଷାର ଶତ୍ରୁ ହେଉଛନ୍ତି ଓଡ଼ିଆ ଭାଷୀ ଉଚ୍ଚଶିକ୍ଷିତ, ପଦାଧିକାରୀ ଏବଂ ସମାଜପତିଗଣ ।' ଓଡ଼ିଆ ଭାଷା ପ୍ରବାସୀ ଚକ୍ରାନ୍ତରେ ଲୋପ ହୋଇ ଯାଉଥିଲାବେଳେ ରାଧାନାଥ, ଗୌରୀଶଙ୍କର, ଫକୀରମୋହନ, ମଧୁସୂଦନ ଏବଂ ସର୍ବୋପରି ଗଙ୍ଗାଧର ଯେଉଁ ସାଧନା କରିଥିଲେ, ଆଜି ହୁଏତ ସେ କଥା ଅନେକଙ୍କୁ ଅଜ୍ଞାତ । ଓଡ଼ିଆ ଭାଷା ପ୍ରତିଷ୍ଠା ଅର୍ଜନ କରିଥିବାରୁ ଯେଉଁମାନେ ଆଜି ବିଭିନ୍ନ ଉପାୟରେ ବିଭିନ୍ନ ସ୍ତରରେ ଲାଭବାନ ହୋଇଛନ୍ତି ଏବଂ ଉଚ୍ଚ ସୌଭାଗ୍ୟର ଅଧିକାରୀ ହୋଇଛନ୍ତି, ସେହିମାନେ ଓଡ଼ିଆ ଭାଷା ଓ ସାହିତ୍ୟ ଚର୍ଚ୍ଚା କରିବାପାଇଁ ସମ୍ମାନବୋଧ କରନ୍ତି ନାହିଁ । ଏ ତ ଗଲା ଓଡ଼ିଆ ସାହିତ୍ୟର କଥା ।

ଗଙ୍ଗାଧର ତତ୍‌କାଳୀନ ଓଡ଼ିଆ ସମାଜକୁ ଯେଉଁ ଦୃଷ୍ଟିରେ ଦେଖିଥିଲେ ତାହା ଆଲୋଚନା କଲେ ଆଧୁନିକ ସମାଜରେ ସେହି ବାଣୀର ଉପଯୋଗିତା ଅକ୍ଷରେ ଅକ୍ଷରେ ଅନୁଭୂତ ହୁଏ । ଗଙ୍ଗାଧର ସାମନ୍ତବାଦୀ ସମାଜରେ ଅବତୀର୍ଣ୍ଣ ହୋଇଥିଲେ । ଜମିଦାରୀ ଏବଂ ପୌରୋହିତ୍ୟ ପ୍ରଥା ସମାଜକୁ ନାନା ଭାବରେ ନଷ୍ଟଭ୍ରଷ୍ଟ କରି ପକାଉଥିଲା, ସେମାନଙ୍କ ଅତ୍ୟାଚାରରେ ଜନସାଧାରଣ ଅତିଷ୍ଠ ହୋଇ ପଡ଼ିଥିଲେ । ସମାଜରେ ଜାତି ଅଜାତିର ବାଡ଼ବତା ସୃଷ୍ଟି କରି ମୁଷ୍ଟିମେୟ ଲୋକ ଯାବତୀୟ ସୁବିଧା ସୁଯୋଗ ଲଭ କରୁଥିଲେ; ତେଣୁ ସମାଜର ଅଧିକାଂଶ ଦାରିଦ୍ର୍ୟ ଏବଂ ଅଜ୍ଞାନ ଅନ୍ଧକାର ମଧ୍ୟରେ ସଡ଼ି ମରୁଥିଲେ । କବି ଗଙ୍ଗାଧର ତାଙ୍କର କବିତାରେ ତତ୍କାଳୀନ ସମାଜର ନାନା ଦୋଷ ଓ ଦୁର୍ବଳତାକୁ ଆଘାତ କରିବା ସଙ୍ଗେ ସଙ୍ଗେ ଏହି ସୁବିଧାବାଦୀ ଶୋଷକମାନଙ୍କୁ ଧରି ପକାଇ ଦେଇଛନ୍ତି । ବିଶେଷତଃ ତାଙ୍କର "ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର" କବିତାଟିରେ କବି ସେ କାଳର ଉତ୍ପୀଡ଼ିତ, ଶୋଷକ ଏବଂ ନ୍ୟସ୍ତସ୍ୱାର୍ଥ ଲୋକମାନଙ୍କୁ ଅତି ତୀବ୍ର ଭାବରେ ସମାଲୋଚନା କରି ସମାଜକୁ ସତର୍କ କରିଦେଇଛନ୍ତି । ସେ ଲେଖିଥିଲେ —

"ମନ ଯାର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯାର ବିଦଳିତ ଗଣିକା ଚରଣେ,
ଜୀବନ ଯା ଲକ୍ଷ ଲକ୍ଷ ଲୋକଙ୍କର ଭାର
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର ।"

ଗଙ୍ଗାଧରଙ୍କ ସାହିତ୍ୟର ଆଲୋଚନା ଅବସରରେ ପ୍ରତ୍ୟେକ ଉତ୍କଳୀୟ ସ୍ୱାଧୀନ ଭାରତର ସାଂସ୍କୃତିକ ସମାଜକୁ ଅନୁଧ୍ୟାନ କଲେ ବିଚଳିତ ହେବ । କାରଣ ଗଙ୍ଗାଧରଙ୍କ ଏ ବାଣୀ ଏବେ ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ । ସମାଜର ବିଭିନ୍ନ ସ୍ତରରେ ଅତ୍ୟାଚାରୀ, ଲମ୍ପଟ ଓ ଅମିତଗ୍ରସ୍ତ ବ୍ୟକ୍ତିମାନେ ପଦାଧିକାରୀ ହୋଇ ଦାରିଦ୍ର୍ୟ ଓ ଅଜ୍ଞାନ ଅନ୍ଧକାର ପ୍ରପୀଡ଼ିତ ଓଡ଼ିଆ ଜାତିକୁ ଉତ୍ପୀଡ଼ନ କରିବାରେ ଲାଗିଛନ୍ତି ।

ଯେଉଁ ଦେଶରେ ହାଅନ୍ନ ହାଅନ୍ନ ହୋଇ ଲକ୍ଷ ଲକ୍ଷ ଲୋକ ଜୀବନବ୍ୟାପୀ ଦୁଃଖ ଶୋକରେ ସଢ଼ୁଥାନ୍ତି, ସାଧାରଣ ଶିକ୍ଷା, ଚିକିତ୍ସା ଏବଂ ମାର୍ଜିତ ଜୀବନ ଯାପନ ଯେଉଁମାନଙ୍କ ନିକଟରେ ଏବେ ମଧ୍ୟ ସ୍ୱପ୍ନପ୍ରାପ୍ୟ, ସେହିମାନଙ୍କର ରାଜସ୍ୱରେ ପ୍ରତିପାଳିତ ଉଚ୍ଚ ସରକାରୀ କର୍ମଚାରୀ ଅତି ଦାୟିତ୍ୱହୀନ ଏବଂ ସ୍ୱାର୍ଥପର ଭାବରେ ଲକ୍ଷ ଲକ୍ଷ ଟଙ୍କା ଗସ୍ତ ଖର୍ଚ୍ଚ ନିଅନ୍ତି ବୋଲି ସାମୟିକ ପ୍ରତିକୂଳ ସମାଲୋଚନା ଶୁଣାଯାଇଥାଏ । ବହୁ ବର୍ଷ ତଳେ ଏହି ଶ୍ରେଣୀର କର୍ମଚାରୀମାନଙ୍କୁ ଗଙ୍ଗାଧର ଲୋକଙ୍କ ଦୃଷ୍ଟିରେ ଉପସ୍ଥିତ କରିଥିଲେ ନିମ୍ନଲିଖିତ ପଦ ଜରିଆରେ—

"ଭ୍ରମଣ ଖରଚ ପାଇଁ ପାଇଥାଏ ଭତ୍ତା
ଖାଇଥାଏ ମୋଡ଼ି ଏଣେ ଦରିଦ୍ରଙ୍କ ମଥା
କରୁଥାଏ କ୍ଷମତାର ଅପବ୍ୟବହାର
ତାକୁ ମଧ୍ୟ ବୋଲୁଥାନ୍ତି ଧର୍ମ ଅବତାର ।"

ଆଧୁନିକ ରାଜନୀତିକ ଜୀବନ ବହୁ ପରିମାଣରେ ଦୂଷିତ ହୋଇଛି ବୋଲି ମୁକ୍ତକଣ୍ଠରେ ଆଲୋଚନା ହେଉଛି । ବହୁ ନିଷ୍ଠାବାନ କର୍ମୀ ଏଥିରେ ବିଚଳିତ ହୋଇ ରାଜନୀତି ପ୍ରତି ବୀତସ୍ପୃହ ହୋଇ ପଡ଼ୁଛନ୍ତି । ଦେଶରେ କ୍ରମଶଃ ନୈରାଶ୍ୟର ବାତାବରଣ ବୃଦ୍ଧିଲାଭ କରୁଛି । ଯୁଦ୍ଧ ପରବର୍ତ୍ତୀ ସମାଜର ପ୍ରତିଦ୍ୱନ୍ଦ୍ୱିତା ଏବଂ ସ୍ୱାଧୀନତା ପରବର୍ତ୍ତୀ ସୁଯୋଗ ବଳରେ ଅନେକ ଅର୍ଥହୀନ ଲୋକ ଅଳ୍ପ କାଳ ମଧ୍ୟରେ ରାଜନୀତିକ ଜାହାଜର ଆଶ୍ରୟ କରି ଅଭାବନୀୟ ଭାବରେ ବିତ୍ତଶାଳୀ ହୋଇ ପଡ଼ିଛନ୍ତି, ଅଥଚ ସେହିମାନେ ନିଜର ଅର୍ଥନୀତିକ କ୍ଷମତା ବଳରେ ସମାଜର ଉଚ୍ଚସ୍ତରରେ ଅଧିଷ୍ଠିତ ହୋଇ ନୀତି ଓ ସାଧୁତାର ବ୍ୟାଖ୍ୟାନ କରିବା ଫଳରେ ସାଧାରଣ ଜୀବନ ଯେ କିପରି ପଙ୍କିଳ ହୋଇ ପଡ଼ୁଛି, ତାହା ସହଜରେ ଅନୁମେୟ । ଗଙ୍ଗାଧରଙ୍କ ଅବସ୍ଥାନ କାଳରେ ମଧ୍ୟ ସମାଜରେ ଏପରି ଶୋଷକ ଏବଂ ପ୍ରବଞ୍ଚକ ରହିଥିଲେ । ସେମାନେ ମଧ୍ୟ ଏହିପରି ଜନସମାଜକୁ ନାନା ଭାବରେ ପ୍ରତାରିତ କରିଥିଲେ । ସେହିମାନଙ୍କୁ କଟାକ୍ଷ କରି ଗଙ୍ଗାଧର ଲେଖିଥିଲେ—

'ବହିର୍ଗତ ହୋଇଥାଏ
ଘରୁ ଶୂନ୍ୟ କରେ
ଶଗଡ଼ ଶଗଡ଼ ଦ୍ରବ୍ୟ
ଆଣି ଘରେ ଭରେ
ସେହି ଦ୍ରବ୍ୟମାନ ପୁଣି
ଦେଖାଏ ବଜାର
ତାକୁ ମଧ୍ୟ ବୋଲୁଥାନ୍ତି
ଧର୍ମ ଅବତାର ।'

ଆଧୁନିକ ସମାଜର ପାଠକ ଭାବରେ ବେଳେ ବେଳେ ମନ ହୁଏ ଏବେ ମଧ୍ୟ କବି ଗଙ୍ଗାଧର ଆମ ମଧ୍ୟରେ ଥାଆନ୍ତେ କି ? ଜାତିର ଏ ଦୁଃଖ ଏବଂ ଅଭାବକୁ ଏପରି ଭ୍ରାନ୍ତିଲ ଭାବରେ କିଏ କଟାକ୍ଷ କରି ପାରିବ ?

ତେବେ ଗଙ୍ଗାଧର ନୈରାଶ୍ୟବାଦୀ ନ ଥିଲେ । ଆଜିକାଲି ପରି ସେତେବେଳେ ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟର ଶତ୍ରୁ ଥିଲେ । ସମାଜରେ କାଞ୍ଚନର ପ୍ରାଦୁର୍ଭାବ ଥିଲା । ଅସମାନ୍ତର ସମାଜରେ ଜୀବନର ମୂଲ୍ୟବୋଧ ଧନର ପରିମାପ ବଳରେ ହିଁ ନିର୍ଣ୍ଣୀତ ହେଉଥିଲା । ଅମିତପରାକ୍ରମ ଶାସକ ସମାଜର ଅଷ୍ଟଗ୍ରହ ଭଳି ବିଚରଣ କରି ନାନା ଅଶାନ୍ତିର କାରଣ ହୋଇଥିଲେ । ମାତ୍ର ଏ କଳଙ୍କ କାଳିମାର ବିରୁଦ୍ଧରେ ଦଣ୍ଡାୟମାନ ହୋଇ ଜାତୀୟ ଚରିତ୍ରର ଶ୍ରୀବୃଦ୍ଧି କରିବା ସଙ୍ଗେ ସଙ୍ଗେ ସମାଜର ପ୍ରଗତିରେ କାରଣ ହେବାପାଇଁ ସେ ଆହ୍ୱାନ ଜଣାଇଥିଲେ । ସେ ଥିଲେ ଜଣେ କର୍ମଯୋଗୀ । ତାଙ୍କର ଉଜ୍ଜ୍ୱଳ ନିଷ୍ଠା ଓ ସାଧନାର ତୁଳନା ନ ଥିଲା । ତେଣୁ ଯେଉଁ ସମୟରେ ଭାରତୀୟ ସମାଜରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ବଳରେ ନାନା ପ୍ରଗତି ସମ୍ଭବ ହେଉଥିଲା, ସେତେବେଳେ ଉତ୍କଳ ବିଧୁ ଭାବରେ ପଛରେ ପଡ଼ିଥିଲା । ଏହି ହୀନମନ୍ୟତା ଦୂରକରି ଜାତିର ପ୍ରାଣରେ ସାହସ ଓ କର୍ମନିଷ୍ଠା ଜାଗ୍ରତ କରିବାପାଇଁ କବି ଲେଖିଥିଲେ—

'କରମ ନିମନ୍ତେ ନାହିଁ ବଂଶ ପ୍ରୟୋଜନ,
ନୀଚ ହୋଇ କରେ ଯେବେ ଉତ୍ତମ କରମ
ତା ଚରଣେ ଉଚ୍ଚ ସେବେ ସଂସାର ଧରମ ।'

ଆଧୁନିକ ଓଡ଼ିଆ ସମାଜର ସବୁଠାରୁ ବଡ଼ ଦୁର୍ବଳତା ହେଉଛି ହୀନମନ୍ୟତା । ବହୁକାଳରୁ ଅବହେଳିତ ଦାରିଦ୍ର୍ୟ କଣ୍ଟକିତ ଓଡ଼ିଆ ପ୍ରାଣ ଯେ ନିସ୍ତେଜ ଏବଂ ନିରୁତ୍ସାହିତ ହୋଇପଡ଼ିବ, ଏଥିରେ ଆଦୌ ସନ୍ଦେହ ନାହିଁ । ଗଙ୍ଗାଧରଙ୍କ ସମୟରେ ଉତ୍କଳୀୟ ସମାଜର ଅବସ୍ଥା ଆହୁରି ଉତ୍କଟ ଧରଣର ଥିଲା । କର୍ମଯୋଗୀ ନ ହେଲେ ଜାତିର ବିକାଶ ଅସମ୍ଭବ । ବର୍ତ୍ତମାନ ହେଉଛି ପ୍ରତିଯୋଗିତାର ଯୁଗ । ଏ ଯୁଗରେ ପାଦକୁ ପାଦ ମିଳାଇ ଅଗ୍ରସର ନ ହେଲେ ଜାତି ପଛକୁ ପଡ଼ିଯିବ । କଥାରେ କହନ୍ତି 'ଶୋଇଲା ପୁଅର ଭାଗ ନାହିଁ' । ସ୍ୱାଧୀନ ଭାରତରେ ପରିକଳ୍ପନା ଏବଂ ପ୍ରଗତିର ଏକ ଦୌଡ଼ ଚାଲିଅଛି । ଏ ଦୌଡ଼ରେ ସମକକ୍ଷ ହୋଇ ଅଗ୍ରସର ନ ହେଲେ ଓଡ଼ିଆ ଜାତି ପଛରେ ପଡ଼ିଯିବ । ଆଜକୁ ବହୁ ବର୍ଷ ତଳେ ଗଙ୍ଗାଧର ତତ୍କାଳୀନ ସମାଜକୁ ଯେଉଁ ଭାଷାରେ ଉଦ୍‌ବୋଧନ ଦେଇଥିଲେ, ଆଜି ସେହି ବାଣୀର ମୂଲ୍ୟବୋଧ ଅତ୍ୟନ୍ତ ବ୍ୟାପକ ଭାବରେ ଅନୁଭୂତ ହେଉଛି ବୋଲି ଜଣାଯାଏ । ସେ ଆହ୍ୱାନ ଜଣାଇ କହିଥିଲେ—

'ଚୌଦିଗେ ଶୁଭୁଛି ଉଠ ଜାଗ ଜାଗ
ଅଣ୍ଟା ଭିଡ଼ି ନିଜ କର୍ମେ ଲାଗ ଲାଗ
କର୍ମ ବାଷ୍ପରଥ ଧାଇଁ ଶଙ୍ଖ ସ୍ୱନେ
ଆସି ଏବେ ଲାଗି ଗଲାଣି ଷ୍ଟେସନେ ।

ଚଢ଼ିବା ସମୟ ହେଲାଣି ନିକଟ
ଶୋଇ ପଡ଼ିଅଛ ନ କାଣି ଠିକଟ ।'

× × ×

ବୃଦ୍ଧିଥିବ ଯେବେ ଦୁଶ୍ୟେ ହୋଇ କାବା
ବୃକ୍ଷତଳେ ଭେକେ ମରୁଥିବ ବାବା
ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।' (ଉଦ୍‌ବୋଧନ)

ଭାରତୀ-ଭକତ ଗଙ୍ଗାଧର ଓଡ଼ିଆ ସାହିତ୍ୟରେ ଅକ୍ଷୟ ଯଶର ଅଧିକାରୀ । ଯୁଗ ଯୁଗ ପାଇଁ ତାଙ୍କର କଳ୍ପନାବିଳାସ ଓ ମାଧୁର୍ଯ୍ୟମୟବାଣୀ ଓଡ଼ିଆ ପାଠକ ଓ ସମାଜ ପ୍ରାଣରେ ଅପୂର୍ବ ପ୍ରେରଣା ଓ ସାନ୍ତ୍ୱନା ବିତରଣ କରୁଥିବ । ଯୁଗର କବି ହୋଇ ମଧ୍ୟ ସେ ସର୍ବଯୁଗମୟୀ ସାହିତ୍ୟର ବାର୍ତ୍ତାବହ ହୋଇ ଅଛନ୍ତି । ତାଙ୍କର କାବ୍ୟ କବିତାରେ ଜାତିର ପ୍ରାଣର ବ୍ୟାକୁଳତା ଅତି ପ୍ରାଞ୍ଜଳ ଓ କରୁଣ ଭାବରେ ଝଙ୍କୃତ ହୋଇଅଛି । ସେଥିପାଇଁ ଗଙ୍ଗାଧର ପାଠକ ସମାଜରେ ଏତେ ଆପଣାର ଏବଂ ନମସ୍ୟ । ଏଣୁ ନନ୍ଦକିଶୋରଙ୍କ ଭାଷାରେ କବିଙ୍କୁ ଶ୍ରଦ୍ଧାଞ୍ଜଳି ଦେବାକୁ ଇଚ୍ଛା ହୁଏ—

କିନ୍ତୁ 'ତୁମ୍ଭେ ଧୀନକବି ରହିବ ଜୀବିତ
ଯେତେ ଦିନ ଭବେ ଥିବ,
ଓଡ଼ିଆ ସାହିତ୍ୟ ।

# ପଲ୍ଲୀକବି ନନ୍ଦକିଶୋର

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଗଭୀର ପ୍ରେମ ଅଥବା ଭକ୍ତିର ଉଚ୍ଛଳ ପ୍ରବାହ ବହୁଦିନ ଧରି ଚାଲିଆସିଛି । ଇଂରେଜମାନେ ଏ ଦେଶକୁ ଆସିବା ପରେ ଏବଂ ଇଂରାଜୀ ସାହିତ୍ୟ ବାଟ ଦେଇ ବିଶ୍ୱସାହିତ୍ୟର ସ୍ୱାଦ ଉପଭୋଗ କଲା ପରେ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟ ପରି ଓଡ଼ିଆ ସାହିତ୍ୟରେ ମଧ୍ୟ ଆଧୁନିକ ଯୁଗର ଆରମ୍ଭ ହୋଇଛି । ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରଭୃତି ଏହି ନବଯୁଗର ନିର୍ଦ୍ଦେଶ ଦିଅନ୍ତି । କିନ୍ତୁ ଦେଖିବାର କଥା ଯେ ଏମାନଙ୍କ ଅବ୍ୟବହିତ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ ପ୍ରଭୃତିଙ୍କ ମହନୀୟ ରସାଳ ପ୍ରେମମୂଳକ ରଚନା ବିଶେଷଭାବରେ ପ୍ରଚାରିତ ହେଉଥିଲା । ନବଯୁଗର ଉନ୍ମେଷ ଆଣିବାରେ ରାଧାନାଥ ମଧୁସୂଦନ ପ୍ରଭୃତି ପ୍ରତିରୋଧୀ ହେଲେ । ମାତ୍ର ପ୍ରେମର ଏହି ରସାଳ ଚିତ୍ର ରାଜାରାଣୀଙ୍କର ସମ୍ଭୋଗ, ସାମନ୍ତବାଦୀ ପରିବାରର ନିଖୁଣ ଜୀବନ ଚିତ୍ର ରାଧାନାଥ ଛାଡ଼ିପାରିଲେ ନାହିଁ । ତାଙ୍କର କାବ୍ୟକବିତା ମଧ୍ୟରେ ଏ ଯୁଗର ଅଭିବ୍ୟକ୍ତି ଯଥେଷ୍ଟ ଥିଲେହେଁ ଯୁଗର ଜୀବନ ତାଙ୍କୁ ସ୍ପର୍ଶ କରିପାରିଲା ନାହିଁ । ଯୁଗର ବାତାବରଣ ମଧ୍ୟରେ ସେ ତନ୍ମୟ ରହି ପ୍ରାଚୀନ ପରମ୍ପରାର ରାଜାରାଣୀଙ୍କୁ ନେଇ କାବ୍ୟ ରଚନା କରିଗଲେ । କିଏ ଜାଣିଥିଲା, କେତେକାଳ ଏହିପରି ଆଉ ଯାଇଥାନ୍ତା । ମାଟିର ମଣିଷ, ପଲ୍ଲୀ ସଂସାରର ଅନୁଭୂତି, ଯାହା ବହୁ ଲୋକର ଅନୁଭୂତି ମଧ୍ୟରେ ରୂପାୟିତ ହୁଏ, ସେ ସବୁ ସାହିତ୍ୟରେ କେବେ ରୂପ ପାଇଥାନ୍ତା ।

ସୁଖର କଥା, ଏକ ବୈପ୍ଳବିକ ଯୁଗର ବାର୍ତ୍ତାବହ ରୂପେ ଏତିକିବେଳେ ଦେଖା ଦେଇଥିଲେ ଫକୀରମୋହନ ଓ ପଲ୍ଲୀକବି ନନ୍ଦକିଶୋର ବଳ । ସାହିତ୍ୟ କ୍ଷେତ୍ରରେ ଏ ଦୁଇଜଣଙ୍କର ଆବିର୍ଭାବ ଯେପରି ଦୁଇଟି ଅଭାବନୀୟ ଲକ୍ଷ୍ୟର ପୂରଣ ପାଇଁ ଉଦ୍ଦିଷ୍ଟ ହୋଇଥିଲା ।

ପ୍ରାଚୀନ ସାହିତ୍ୟ ପଦ୍ୟବହୁଳ । ମାତ୍ର ସାହିତ୍ୟରେ ସାଧାରଣ ମଣିଷର ଜୀବନଚିତ୍ର ଯେତିକି ପରିମାଣରେ ରୂପରେଖ ନେଉଛି ସାଧାରଣ ସମାଜର ହସ, କାନ୍ଦ, ଅଭାବ ଅନୁଭୂତି ଯେଉଁଭଳି ଭାବରେ ସାହିତ୍ୟରେ ଅଭିବ୍ୟକ୍ତ ହେଉଛି, ସାହିତ୍ୟ ତେତିକି ଗଦ୍ୟ-ବହୁଳ ହୋଇପଡ଼ୁଛି । ଏଣୁ ଆଧୁନିକ ଯୁଗର ସାହିତ୍ୟ ଗଦ୍ୟପ୍ରଧାନ । ଭଞ୍ଜୀୟ ଭାବଧାରାର ଗତିପଥରେ ଏକ ବୈପ୍ଳବିକ ପରିବର୍ତ୍ତନ କରି ରାଧାନାଥ ସାହିତ୍ୟକୁ ଅନ୍ୟ ରୂପ ଦେଲେହେଁ କାବ୍ୟ କବିତାହିଁ ତାଙ୍କ ସୃଷ୍ଟିର ପ୍ରଧାନ ପ୍ରକାଶ ହୋଇ ରହିଥିଲା । ମଧୁସୂଦନ

ବ୍ରହ୍ମବାଦ ମଧ୍ୟରେ ନିଜକୁ ହଜାଇଦେଇ ମଣିଷ ପ୍ରକୃତିକୁ ଅନୁଧ୍ୟାନ କରିବାକୁ ଆଗ୍ରହ ଦେଖାଇ ନ ଥିଲେ । ପୁଣି ସଂସ୍କୃତ ସାହିତ୍ୟର ନିବିଡ଼ ପ୍ରଭାବ ଫଳରେ ତାଙ୍କର ଗଦ୍ୟଶୈଳୀ କ୍ଲିଷ୍ଟ ହୋଇ ପଡ଼ିଥିଲା । ପଲ୍ଲୀର ଭାଷାରେ ପଲ୍ଲୀର ଅଭାବ ଅନୁଭୂତି, ସୁଖ, ଦୁଃଖ, ହର୍ଷ, ବିଷାଦ ଜୀବନ ଚିତ୍ରର ରୂପ ଫକୀରମୋହନ ଯେଉଁଭଳି ଗଦ୍ୟ ସାହିତ୍ୟରେ ଫୁଟାଇବାର ଭାର ନେଲେ, ସେହିପରି ଏ ଯୁଗର ଅନ୍ୟତମ ବିଶିଷ୍ଟ ରଚନା ଲହରୀ ଅଥବା ଗୀତ କବିତା ମାଧ୍ୟମରେ ପଲ୍ଲୀଜୀବନର ଚିତ୍ର ଦେଲେ ନନ୍ଦକିଶୋର ।

କଟକ ଜିଲ୍ଲାର ସାଲେପୁର ଥାନାର କୁସୁପୁର ଗାଁ ନିକଟରେ ବହିଯାଉଛି ବିରୂପା ନଈ କୁଳୁ କୁଳୁ ହୋଇ । କେଉଁ ଯୁଗର କଥା କହି ସେ ଚାଲିଛି କେଉଁ କାଳରୁ । ତାହାର ଅଦୂରରେ ଅଲତିଗିରି ଓ ଉଦୟଗିରି ପ୍ରକୃତିରାଣୀର ବିଚିତ୍ର ରୂପସମ୍ଭାର ମଧ୍ୟରେ ଐତିହାସିକ ପୁରୁଷ ଭଳି ଉନ୍ନତ ଶିରରେ ଦଣ୍ଡାୟମାନ ।

ଏଇଭଳି ଏକ ପଲ୍ଲୀକୋଳରେ ଆଜକୁ ବହୁ ବର୍ଷ ତଳେ ପଲ୍ଲୀକବି ନନ୍ଦକିଶୋର ଜନ୍ମଗ୍ରହଣ କରିଥିଲେ ।

ଆଜିକାଲି ପରି ସେତେବେଳେ ଇଂରେଜୀ ଶିକ୍ଷାର ପ୍ରଚଳନ ପାଇଁ ଏତେ ସ୍କୁଲ କଲେଜ ବସି ନ ଥିଲା । ମାଟିବଂଶ ଅବଧାନଙ୍କ ପାଠଶାଳାରେ କୋଇଲି, ଗୋପୀଭାଷା, ମାନସାଙ୍କ, ଓଡ଼ାଙ୍କ, ପଣିକିଆ, ବିଚିତ୍ର ରାମାୟଣ, ମଥୁରାମଙ୍ଗଳ, ଭାଗବତ, ଲାବଣ୍ୟବତୀ, ବୈଦେହୀଶ ବିଳାସ ପ୍ରଭୃତିଠାରୁ ଆରମ୍ଭକରି ବ୍ୟାକରଣ, ଲିଖନ ପଦ୍ଧତି ସମସ୍ତ କିଛି ଗାଁ ପିଲାଏ ପଢ଼ୁଥିଲେ । ନନ୍ଦକିଶୋର ଗୁରୁଶାଳୀ ପାଠ ଶେଷ କରି ଅନ୍ନସଂସ୍ଥାନ ପାଇଁ ଜମିଦାରୀ କଚେରୀରେ ତାଲିମ ହେଲେ । ଯୁଗଶିଳ୍ପୀ ଫକୀରମୋହନଙ୍କୁ ନିମକମହାଲରେ ବାନ୍ଧିଦେବାର ପ୍ରୟାସ ବିଧି ଯେପରି ସହିପାରି ନ ଥିଲା, ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ରୂପକାର ନନ୍ଦକିଶୋର ସିରସ୍ତା କାମରେ ଆବଦ୍ଧ ହେବା ସେହିପରି ବିଧିବିଡ଼ମ୍ବନା ଥିଲା । ସୁଯୋଗକ୍ରମେ ତାଙ୍କ ଗାଁରେ ଉଚ୍ଚ ପ୍ରାଥମିକ ସ୍କୁଲ ପ୍ରତିଷ୍ଠିତ ହୁଏ ଏବଂ ନନ୍ଦକିଶୋର ପୁନର୍ବାର ଛାତ୍ର ଜୀବନ ବରଣ କରନ୍ତି । କ୍ରମେ କ୍ରମେ ସେ ଉଚ୍ଚ ପ୍ରାଥମିକ ବୃତ୍ତି, ମାଇନର ବୃତ୍ତି ପାଇ ପରିଶେଷରେ କଲେଜର ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଟାଉନ ସ୍କୁଲରେ ସ୍ୱର୍ଗତଃ ବିଶ୍ୱନାଥ କରଙ୍କୁ ପ୍ରଧାନ ଶିକ୍ଷକ ଏବଂ କଲିଜିଏଟ ସ୍କୁଲରେ ଭକ୍ତକବି ମଧୁସୂଦନଙ୍କୁ ଶିକ୍ଷକ ରୂପେ ପାଇବା ତାଙ୍କ ଜୀବନର ଏକ ବିଶିଷ୍ଟ ଘଟଣା । ଏଇ ଦୁଇ ଧୀମାନ ପୁରୁଷଙ୍କ ସାନିଧ୍ୟ ଲାଭ କରିବା ଫଳରେ ନନ୍ଦକିଶୋରଙ୍କ ଜୀବନ ବିକଶିତ ହେବାପାଇଁ ଯଥେଷ୍ଟ ପ୍ରେରଣା ପାଇଥିଲା । ତାଙ୍କର କଲେଜ ଜୀବନରେ ନବପ୍ରକାଶିତ 'ଉତ୍କଳ ସାହିତ୍ୟ'ରେ ନିଜକୁ ତରୁଣ ଲେଖକ ଭାବରେ ସେ ପ୍ରତିଷ୍ଠିତ କରିପାରିଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ସେ ଶିକ୍ଷା ବିଭାଗରେ ନିଜର ଜୀବନକୁ ନିୟନ୍ତ୍ରଣ କରିଥିଲେ । କଟକ ଟାଉନ-ସ୍କୁଲରେ ସାମାନ୍ୟ ବେତନରେ ଶିକ୍ଷକତାଠାରୁ ଆରମ୍ଭ କରି ସମ୍ବଲପୁର, ବାଲେଶ୍ୱର ତଥା ଟ୍ରେନିଂ କଲେଜରେ ଏହି କାର୍ଯ୍ୟରେ ସେ ନିଯୁକ୍ତ ହୋଇଥିଲେ । କଟକ ଓ ପୁରୀଜିଲ୍ଲାର ପରିଦର୍ଶକ କର୍ମଗୁରୁ ହେବାଠାରୁ ଆରମ୍ଭ କରି

ସମଗ୍ର ଓଡ଼ିଶା ସ୍କୁଲ ସମୂହର ସହକାରୀ ପରିଦର୍ଶକ ହୋଇଥିଲେ । ୧୯୬୭ ମସିହାରେ ସେ ଅବସର ଗ୍ରହଣ କରିଥିଲେ ।

ସେ ଯୁଗର ଯଶସ୍ୱୀ ରାଧାନାଥ, ମଧୁସୂଦନ ଓ ଫକୀରମୋହନ ଜୀବନର କର୍ମ କୋଳାହଳରେ ରହି ଓଡ଼ିଶାର ବିଭିନ୍ନ ଅଞ୍ଚଳ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲେ, ନନ୍ଦକିଶୋରଙ୍କ ଭାଗ୍ୟରେ ମଧ୍ୟ ତାହାହିଁ ଘଟିଥିଲା । ଫକୀରମୋହନଙ୍କ ପରି ସୁନ୍ଦର ପଲ୍ଲୀକୋଳରୁ ଆସି ମନୋରମ ପଲ୍ଲୀର ପ୍ରଶାନ୍ତ ଜୀବନକୁ ସାହିତ୍ୟରେ ପ୍ରାଣବନ୍ତ କରିବାରେ ସେ ଫକୀରମୋହନଙ୍କ ପରି ପାଗଳ ହୋଇଥିଲେ ।

ମାତ୍ର ଦୁଃଖର କଥା ଯେ, ନିରବଚ୍ଛିନ୍ନ ସାହିତ୍ୟ ସାଧନା ତାଙ୍କ ଜୀବନରେ ସମ୍ଭବ ହୋଇ ନ ଥିଲା । ଜୀବନର ପ୍ରଥମ କାଳରେ ତାଙ୍କର ବିଶିଷ୍ଟ ରଚନାଗୁଡ଼ିକ ପ୍ରକାଶିତ ହୋଇଥିଲା । ସଂସାରର କର୍ମକୋଳାହଳରେ ପଶି ସେ ଏ ମହତ କାର୍ଯ୍ୟରୁ ବିରତ ହୋଇଥିଲେ । ଦୁର୍ଭାଗ୍ୟର କଥା ଯେ ପଲ୍ଲୀକବି ପରିଣତ ଜୀବନରେ ଅନ୍ଧହୋଇ ଯାଇଥିଲେ ଏବଂ ଜୀବନରେ ତାଙ୍କର ଏଭଳି ଦୁର୍ଘଟଣା ପାଇଁ ସେ ବହୁ ଅନୁତାପ କରିଥିଲେ । ଏହି ଅନ୍ଧ ଜୀବନରେ ସେ ବହୁ କବିତା ଡାକିଦେଇ ଅଛନ୍ତି । କାନ୍ତକବି ଲକ୍ଷ୍ମୀକାନ୍ତ ଯେପରି ନିଜର ଅକ୍ଷମତା ପାଇଁ ଅଭିମାନ କରି ପରମପିତାଙ୍କ ନିକଟରେ ଅଭିଯୋଗ କରିଛନ୍ତି—

"ନବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ", ସେହିପରି ପଲ୍ଲୀକବି ତାଙ୍କର 'ଗୀତି' ଶୀର୍ଷକ କବିତାରେ ନିଜ ଅବହେଳା ଜନିତ ଏକ କୈଫିୟତ ଦେଇଛନ୍ତି । ପରିଣତ ଜୀବନରେ ସେ ଆଉ କବିତା ଲେଖିପାରି ନାହାନ୍ତି । କବିତା ସ୍ୱତଃସ୍ଫୂର୍ତ୍ତ । ଏହା ଅନ୍ତରର ଆହ୍ୱାନ ମାତ୍ର । ଏହି ଚିରନ୍ତନ ଆହ୍ୱାନକୁ ଏଡ଼ି ସେ ସଂସାର କୋଳାହଳ ମଧ୍ୟରେ ବୁଡ଼ିଗଲେ, ଏହାହିଁ ଆଶ୍ଚର୍ଯ୍ୟର କଥା । ସେ ଦୁଃଖ କରି କହିଛନ୍ତି—

"ବାଣୀ ଆରାଧନା ତେଜି ସେବିଲି ସଂସାର
ମନା ହୋଇଗଲା ମୋତେ ଶ୍ରୀ କୋଠ-ଭଣ୍ଡାର ।
କବିତା ଲୋଡ଼ଇ ସିନା ଏକାନ୍ତ ଅନ୍ତର
ନୋହିଲେ କି ହେବ ଯୋଡ଼ି ଶବଦ ମାତର ।"

ସମସାମୟିକ ପତ୍ର ପତ୍ରିକାରେ ତାଙ୍କ କବିତାର କଟୁ ସମାଲୋଚନା ହୋଇଥିବା ମନେହୁଏ । ତାଙ୍କର 'ଗ୍ରନ୍ଥକାର ଓ ସମାଲୋଚକ' କବିତା ସେହିଭଳି ମନୋଭାବର ପରିଚୟ ଦେଉଅଛି । ଲେଖକର ସାଧନା, ପରିଶ୍ରମ ପ୍ରଭୃତି କିଛି ନ ବୁଝିଥିବା ପଲ୍ଲବଗ୍ରାହୀ ସମାଲୋଚକମାନଙ୍କୁ ସେ ଆକ୍ଷେପ କରିଛନ୍ତି ଏବଂ ଲେଖକର ସମସ୍ତ ପୁସ୍ତକ ଅଧ୍ୟୟନ ନ କରି ତୀବ୍ର ସମାଲୋଚନା ପୂର୍ବକ ମତବ୍ୟକ୍ତ ନ କରିବାକୁ ସେ ଅନୁରୋଧ କରିଛନ୍ତି । ଏଣୁ ମନେହୁଏ, ହୁଏତ ସମାଲୋଚନା ପାଇଁ ସେ ହତୋତ୍ସାହ ହୋଇ ନିରବଚ୍ଛିନ୍ନ ସାହିତ୍ୟ ସେବା କରିପାରିନାହାନ୍ତି, ଅଥବା କୋଳାହଳର ଆକର୍ଷଣ ସେ ଏଡ଼ିପାରି ନାହାନ୍ତି ।

ଫକୀରମୋହନଙ୍କ ପରି ନନ୍ଦକିଶୋର ପଲ୍ଲୀର ଜୀବନକୁ ଅତି ନିବିଡ଼ ଭାବରେ ଅନୁଧ୍ୟାନ କରିଥିଲେ । ସାହିତ୍ୟର ପ୍ରତ୍ୟେକ ବିଭାଗରେ ଲେଖନୀ ଚାଳନା କରିଥିଲେହେଁ ତାଙ୍କର ପ୍ରତିଭାର ସ୍ପଷ୍ଟ ବିକାଶ କେବଳ ପଲ୍ଲୀ କବିତାଗୁଡ଼ିକରୁ ଆମେ ପାଇଥାଉ । ସାହିତ୍ୟରେ ପଲ୍ଲୀର ଜୀବନ ଚିତ୍ରଣକରି ସେ ଅମର ହୋଇଛନ୍ତି । ସେ କାବ୍ୟ ଲେଖିଛନ୍ତି, ଉପନ୍ୟାସ ଲେଖିଛନ୍ତି, କ୍ଷୁଦ୍ର ଗଳ୍ପ, ପ୍ରବନ୍ଧ, ଖଣ୍ଡକବିତା ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛନ୍ତି । ପ୍ରଥମ ଜୀବନରେ ରାଧାନାଥ ଏବଂ ମଧୁସୂଦନଙ୍କ ଲିଖନ ଶୈଳୀକୁ ସେ ନିବିଡ଼ ଭାବରେ ଅନୁସରଣ କରିଛନ୍ତି । ଏଥିରେ ତାଙ୍କର ବ୍ୟକ୍ତିତ୍ୱର ବିକାଶ ହୋଇନାହିଁ । କେବଳ ତାହା ଗତାନୁଗତିକ ଭାବଧାରାର ରୂପାନ୍ତର ପରି ମନେ ହୋଇଅଛି । ଏହି ଭାବରେ ତାଙ୍କର ଭକ୍ତି, ପ୍ରେମ, ଅଥବା ପ୍ରକୃତି ବର୍ଣ୍ଣନାମୂଳକ କବିତା ଓ କାବ୍ୟଗୁଡ଼ିକରେ ସେହି ରାଧାନାଥ ଅଥବା ମଧୁସୂଦନଙ୍କୁହିଁ ଆମେ ଦେଖିଥାଉଁ । ମାତ୍ର ଯେଉଁଠାରେ ପଲ୍ଲୀର ଦ୍ୱାରଦେଶରେ କବି ଆମକୁ ନେଇ ପହଞ୍ଚାଇ ଦେଇଛନ୍ତି, ସେତେବେଳେ ଆମେ କେବଳ ନନ୍ଦକିଶୋରଙ୍କ ସହିତ ଉପଭୋଗ କରୁ ପାହାଡ଼ ତଳର ଚାଳ ମଥାନମରା ପଲ୍ଲୀ, ତାହାର ସୁଖ ଦୁଃଖ, ହସ କାନ୍ଦ, ତେଲ ଲୁଣର ସଂସାର, ପୋଖରୀ ତୁଠରେ ଗାଁ ଝିଅ ବୋହୂଙ୍କର ଜୀବନ ଚିତ୍ର, ବଉଳ ମୂଳରେ ପଲ୍ଲୀବଧୂର ପ୍ରଣତି, ଗାଁଦାଣ୍ଡର ହଳଯୋଗ, କାଳିବାଙ୍କ ସଂସାର ନେଇ ଗାଁର ସାଉକାର ଦୋକାନ, ବିରହୀ କାନ୍ତାର ଶୁଭକାଉ ନିକଟରେ ଖବର ପାଇଁ ବ୍ୟାକୁଳତା, ବୁଢ଼ୀମା କୋଳରେ ଗପ ଶୁଣୁ ଶୁଣୁ ତନ୍ଦ୍ରାଳ ଅନୁଭୂତି, ବରଷା ଦାଣ୍ଡର ଶିଶୁ ଖେଳ, ଇତ୍ୟାଦି । ଆମ ଆଗରେ ସେ ସବୁ ସେତେବେଳେ ଜୀବନ୍ତ ହୋଇଉଠେ ଆମେ ଭାବୁ ସତେ ଯେପରି ପଲ୍ଲୀର ସେହି ଚିରବିନ୍ତ ଜୀବନ ମଧ୍ୟରେ ଆମେ ଜଣେ ହୋଇ ପଡ଼ିଛୁ । ତାଙ୍କର ଆଉ ଗୋଟିଏ ବିଶେଷତ୍ୱ ହେଉଛି ଖଣ୍ଡକବିତା । ଗୀତିକବିତାର ପ୍ରସାର ଆଧୁନିକ ଯୁଗରେ ଅତ୍ୟଧିକ ପରିମାଣରେ ସମ୍ଭବ ହୋଇଛି । ଗୀତିକବିତା ବା ଲିରିକ ସାହିତ୍ୟରେ ଫକୀରମୋହନ, ମଧୁସୂଦନ, ରାଧାନାଥ ପ୍ରଭୃତିଙ୍କର ହାତ ଥିଲେହେଁ ନନ୍ଦକିଶୋର ବଳ ନିଜର ସ୍ୱତନ୍ତ୍ର ପ୍ରତିଭାରେ ନିଜେ ମହାସ୍ଥାନ ହୋଇ ଉଠିଛନ୍ତି ।

ସମାଲୋଚକମାନେ କହିଥାନ୍ତି, ଫକୀରମୋହନ ଆମ୍ଭମାନଙ୍କୁ ଗଦ୍ୟରଚନାରେ ପଲ୍ଲୀ ସଂସାରର ଦାଣ୍ଡଆଡର ଯେଉଁଭଳି ଚିତ୍ର ଦେଇଛନ୍ତି, ନନ୍ଦକିଶୋର ସେହିପରି ତାଙ୍କର ବହୁ ଲିରିକ୍ ମାଧ୍ୟମରେ ବାଡ଼ିଅଡର ଚିତ୍ର ଦେବାରେ ସମର୍ଥ ହୋଇଛନ୍ତି । ମାତ୍ର 'ଶର୍ମିଷ୍ଠା' ଅଥବା "କୃଷ୍ଣକୁମାରୀ"ରେ ସେହିପରି କୌଣସି ନୂତନତା ତାଙ୍କର ପରିଲକ୍ଷିତ ହୁଏନାହିଁ ।

ଗାଁର ଭୌଗୋଳିକ ଜୀବନ ଯେ କେବଳ ଚିତ୍ରଣ କରି ସୁଖୀ ହୋଇ ନାହାନ୍ତି । ଗାଁର ଝିଅ ବୋହୂ, ବୁଢା, ହଳିଆ, ପିଲା ସମସ୍ତଙ୍କ ମୁହଁରେ ଯେଉଁ ଢଗ ଢମାଳୀ କଥାବାର୍ତ୍ତା ନିତିଦିନ ପ୍ରାଣବନ୍ତ ହୋଇଉଠେ, ତାକୁ ନେଇ କବିତା ରଚନା କରିବାରେ ନନ୍ଦକିଶୋର ପ୍ରଥମେ ପଥ ପ୍ରଦର୍ଶକ ହୋଇଛନ୍ତି ଏବଂ ସେଗୁଡ଼ିକୁ ଅମର କରିଛନ୍ତି ।

'ଡାମର କାଉରେ ଡାମର କାଉ, ଉଇ ପରବତେ ବୋବାଉଥାଉ'' ''ଖରା କରୁଅଛି ମେଘ ବରଷୁଛି ବିଲୁଆ ହେଉଛି ବାହା'' ''ମେଘ ବରଷିଲି ଟପର ଟପର କେଶୁର ମାଇଲି ଗଜା'' ''ଦେଇଥିଲେ ପାଇ, ପଢ଼ିଥିଲେ ଗାଇ, ପଡ଼ୁଆ ବାଇରେ ଗୋଧନ ଚରାଇ'' 'ଗଲି ଅଇଲି, ଯାହା ଦେଖିଲି ତା କହିଲି'' ''ଦାଣ୍ଡକୁ ସୁନ୍ଦର ଗୋରୁ, ଘରକୁ ସୁନ୍ଦର ଜୋରୁ'' ''ମୁଁ କାନ୍ଦୁଥାଏ ନାମିପାଇଁ, ନାମି ଅଖିରେ ଟୋପେ ଲୁହ ନାହିଁ'' ''ତଳ ବରଡ଼ା ଖସୁଛି, ମଝି ବରଡ଼ା ହସୁଛି; ଉପର ବରଡ଼ା ଥାଇ କହୁଛି, ମୋ ଦିନକାଳ ଆସୁଛି'' ''ମନ ଥିର କଲେ ଗାଡ଼ୁଆ ଗଙ୍ଗା'' 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ'—ଇତ୍ୟାଦି ସାଧାରଣ କଥା, ଯାହାକୁ କହି ପଲ୍ଲୀ ସଂସାରର ମନୋଭାବ ବ୍ୟକ୍ତ କରାଯାଏ, କେବଳ ଫକୀରମୋହନଙ୍କ ଛଡ଼ା ସାହିତ୍ୟରେ ଏ ସବୁକୁ କେହି ରୂପାୟିତ କରି ନ ଥିଲେ । ପଲ୍ଲୀକବି କି ଗଦ୍ୟ କି ପଦ୍ୟ, ଉଭୟ ରଚନାରେ ଏ ସବୁ ଜୀବନ୍ତ ହୋଇ ଉଠିଛି ।

ଆଉ ଗୋଟିଏ ବିଶେଷ କଥା ମଧ୍ୟ ଏଠାରେ ଲକ୍ଷ୍ୟ କରିବାର ଅଛି । ନନ୍ଦକିଶୋର କେବଳ ଯେ ପଲ୍ଲୀ ପ୍ରକୃତିକୁ ଭଲ ପାଉଥିଲେ, ତାହା, ନୁହେଁ ପଲ୍ଲୀ ଜୀବନ ସହିତ ସେ ନିଜକୁ ମିଶାଇ ଦେଇଥିଲେ । ତାହାର ଫଳରେ ରାଧାନାଥ ଏଇ ଦେଶର ରାଜାଝିଅ, ରାଜାପୁଅ, ଅଥବା ଫକୀରମୋହନ ଏଇ ଦେଶର ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, ଶାରିଆ, ପ୍ରଭୃତିଙ୍କୁ ସାହିତ୍ୟରେ ସ୍ଥାନ ଦେଲେ ସତ, ପଲ୍ଲୀର ଲୋକ, ଦେଶ, ଇତିହାସ, ଅଥବା ନିଜ ଦୃଷ୍ଟିରୁ ସାହିତ୍ୟକୁ ଚିନ୍ତା କରି ଜାଣି ନ ଥିଲେ । ଯୁଗ ଯୁଗ ଧରି ପଲ୍ଲୀ ସଂସାର ମଧ୍ୟରେ ରାମାୟଣ ମହାଭାରତର ଅପରୂପ ପ୍ରଭାବ ବିଦ୍ୟମାନ ଥିଲି । ଯାତ୍ରା, ପାଲି, ଗୋଟିପୁଅ ପ୍ରଭୃତି ବିଭିନ୍ନ ଅନୁଷ୍ଠାନ ଜରିଆରେ ପୁରାଣ ଅଥବା କେତେକ ବିଶିଷ୍ଟ ଇତିହାସର ଘଟଣାକୁ ନେଇ ପଲ୍ଲୀ ଜୀବନ ବିଭୋର ହୋଇ ଉଠିଥିଲି । ତେଣୁ ସତେ ଯେପରି ପଲ୍ଲୀର ଚିନ୍ତାଧାରାକୁ ଆଧୁନିକ କବିତାରେ ରୂପାୟିତ କରିବାର ମୋହ ନନ୍ଦକିଶୋର ଛାଡ଼ି ପାରିଲେ ନାହିଁ । ଏଣୁ ତାଙ୍କର ପଲ୍ଲୀ ପ୍ରକୃତି ଅଥବା କେତେକ ଭକ୍ତି ବା ଶିକ୍ଷା ମୂଳକ କବିତା ଛଡ଼ା ବହୁ କବିତା ପୌରାଣିକ ଉପାଖ୍ୟାନ ଦ୍ୱାରା ରୂପବନ୍ତ ହୋଇଛି । 'ରାମରାବଣ ଯୁଦ୍ଧ' 'କୁରୁପାଣ୍ଡବ ଯୁଦ୍ଧ' 'ଏକଲବ୍ୟ' 'ଗୌତମ' କଣ୍ଠ ଓ ଗୌତମୀ, 'ପିଙ୍ଗଳ ଓ ଅଶୋକ, କୁନାଲ ଓ ତିଷ୍ୟରକ୍ଷିତା, ସୀତା ବନବାସ, 'କୃଷ୍ଣକୁମାରୀ', 'ଯଯାତି ଓ ଦେବଯାନୀ' ପ୍ରଭୃତି ନାନା ପୌରାଣିକ ଓ ଐତିହାସିକ ଲୋକପ୍ରିୟ ଉପାଖ୍ୟାନ ସବୁ ତାଙ୍କର କବିତା ସଂସାରକୁ ଖାଦ୍ୟ ଯୋଗାଇଛି ।

ରଚନାର ଶୈଳୀ ଦୃଷ୍ଟିରୁ ବିଚାର କଲେ ନନ୍ଦକିଶୋର ରାଧାନାଥ, ମଧୁସୂଦନଙ୍କ ଠାରୁ କିଛିଦୂର ଆଗେଇ ଆସିଛନ୍ତି । ରାଧାନାଥ ମଧୁସୂଦନ ପ୍ରାଚୀନ କାବ୍ୟ ସାହିତ୍ୟର ଧାରାରୁ ବିଚ୍ଛିନ୍ନ ହୋଇଥିଲେ ମଧ୍ୟ ପୂର୍ବପରି ରାଗରାଗିଣୀର ଅନୁସରଣ କରିଥିଲେ ଏବଂ ଉପମା, ଅନୁପ୍ରାସ ଓ ଯମକର ଆଶ୍ରୟ ନେଇଥିଲେ ।

ମାତ୍ର ନନ୍ଦକିଶୋର ଇଂରାଜୀ ଏବଂ ବଙ୍ଗଳା ସାହିତ୍ୟର ପ୍ରଭାବରେ ସମ୍ପୂର୍ଣ୍ଣ ନୂତନ ଗୀତରେ ଛନ୍ଦର ପ୍ରଚଳନ କଲେ । ତାଙ୍କର ରଚନା ଯେଉଁଳି ସରଳ ଏବଂ ପ୍ରାଞ୍ଜଳ, ସେହିପରି ଉପମା, ଅନୁପ୍ରାସ, ରୂପକ ଇତ୍ୟାଦିର ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ । ଏଣୁ ଆଧୁନିକ ଯୁଗସରଣୀରେ ସେ ପ୍ରଥମେ ବାଟ ଫିଟାଇଲେ ।

ପୂର୍ବ ପ୍ରେରଣା କ୍ରମେ ଆମର ମଧ୍ୟ ପ୍ରାଚୀନ ସାହିତ୍ୟ ଭକ୍ତି ଅଥବା ପ୍ରେମମୂଳକ । ବିଶେଷକରି ଅଭିଜାତ ସମାଜର ନାୟକନାୟିକା ଅଥବା ଅତିମାନବ ପ୍ରଭୃତି ସାହିତ୍ୟର ବିଷୟବସ୍ତୁ ହେଉଥିବାରୁ ପଲ୍ଲୀଜୀବନର ଚିତ୍ର ଦେବା ସେଥିରେ ସମ୍ଭବ ହେଉ ନ ଥିଲା । ପଲ୍ଲୀର ସୁଖଦୁଃଖ ଭିତରେ ଲେଖକ ନିଜକୁ ପ୍ରକାଶ କରିବାର ସୁଯୋଗ ନ ଥିଲା । ମାତ୍ର ବିଂଶ ଶତାବ୍ଦୀର ସାହିତ୍ୟକୁ ଅଧିକ ପ୍ରଭାବିତ କରିଛି ପଲ୍ଲୀଜୀବନର ରୂପ ପଲ୍ଲୀର ମାଟିର ମଣିଷ, ମୁଣ୍ଡିଆ ତଳର ପରଜା ଦାଦିବୁଢ଼ା, ଅଥବା ଗାଁ ତୋଟା ତଳର ଗୋବର ଗୋଟେଇ । ତଥାପି ପ୍ରାଚୀନ ଗଦ୍ୟ ସାହିତ୍ୟରେ ପ୍ରସଙ୍ଗକ୍ରମେ ବହୁ ସ୍ଥାନରେ ଉପମା ନ୍ୟାୟରେ ପଲ୍ଲୀ ସଂସାରର ଚିତ୍ର ଆମ ଆଖି ଆଗରେ ପଡ଼େ । ଉଦାହରଣ ସ୍ୱରୂପ କବିଶ୍ରେଷ୍ଠ ଉପେନ୍ଦ୍ର ଭଞ୍ଜ ରାବଣର ସୀତାହରଣକୁ ଲକ୍ଷ୍ୟ କରି ବୈଦେହୀଶ ବିଳାସରେ ଲେଖିଛନ୍ତି—

"ବିଧିରେ ପ୍ରଜାପତି-ନପ୍ତା ଅର୍ଥୀ
ବ୍ୟାକୁଳ ବଳୀବର୍ଦ୍ଦ ଯୋଚି ତଥି
ବଳେ ହରଷ ପ୍ରଜାଙ୍କୁ ପଡ଼ଉଡ଼ି
ବୁଣିବାକୁ ପ୍ରେମରାଗୀକି ଲୋଡ଼ି
ବଳ ଥିଲେ ତୁମେ
ବିଚ୍ଛେଦ (ଣି) ସୀରକୁ ଦ୍ୱନ୍ଦ୍ୱ ଆରମ୍ଭେ (ଏକତ୍ରିଂଶ ଛାନ୍ଦ)

ଅର୍ଥାତ୍ ଗ୍ରାମାଧିକାରୀ ଲୋଭପରବଶ ହୋଇ ପ୍ରଜାର ଭୂମିରେ ବଳଦ ଯୋଚି ବଳାତ୍କାରରେ ପ୍ରଜାକୁ ପଡ଼ଉଡ଼ି ତାର ଜମିରେ ଶସ୍ୟ ରୋପଣ କଲା ପରି ରାବଣ ସୀତାଙ୍କ ହୃଦୟରୂପ ଭୂମିରେ ଦୁଃଖରୂପ ବଳଦ ଯୋଚି ଅର୍ଥାତ୍ ଭୟ ଦେଖାଇ, ବଳାତ୍କାରରେ ତାଙ୍କର ଆନନ୍ଦରୂପକ ପ୍ରଜାକୁ ତଡ଼ି ନିଜର ଅନୁରାଗରୂପକ ଫଳକୁ ବୁଣିବାକୁ ଇଚ୍ଛା କରିଅଛି । ମାତ୍ର ବଳଶାଳୀ ପ୍ରଜା ଏହାର ପ୍ରତିଦାନରେ ଯେପରି ଗ୍ରାମାଧିକାରୀ ସୀର ଅର୍ଥାତ୍ ଲଙ୍ଗଳ ଧ୍ୱଂସ କରେ, ସେହିପରି ରାମଚନ୍ଦ୍ର ଯୁଦ୍ଧ କରି ରାବଣର ଶିର ଛେଦନ କରନ୍ତି ।

ଏହିଭଳି ପ୍ରସଙ୍ଗକ୍ରମେ ବହୁ ଉଦାହରଣ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣ ପ୍ରଭୃତି କାବ୍ୟକାରମାନଙ୍କ ଲେଖାରୁ ମିଳିଥାଏ । ମାତ୍ର ପଲ୍ଲୀକବି ନନ୍ଦକିଶୋର ବଳ ପଲ୍ଲୀର ଜୀବନ୍ତ ଛବି ଯେଉଁଳି ଭାବରେ ଦେଇଛନ୍ତି, ସେ ଇଂରେଜ କବି ଗୋଲ୍ଡ୍‌ସ୍ମିଥ୍‌ଙ୍କ ସହିତ ତୁଳନୀୟ ହୋଇପାରନ୍ତି । ଗୋଲ୍ଡ୍‌ସ୍ମିଥ ତାଙ୍କର 'ଭ୍ରମଣକାରୀ' (Traveller) ଏବଂ 'ପରିତ୍ୟକ୍ତ' ଗ୍ରାମ (Deserted Village) କବିତାରେ ପଲ୍ଲୀ ଜୀବନର ନିଖୁଣ

ଛବି ଟାଣିଛନ୍ତି । ତାଙ୍କର ପ୍ରିୟ ପଲ୍ଲୀର ଦୃଶ୍ୟରେ ମୁଗ୍‌ଧ ହୋଇ ପ୍ରାକୃତିକ ନିସୃମକୁ ଏଡ଼ି ବସନ୍ତ ଯେପରି ନୃତ୍ୟ ଗ୍ରଜପଣ କରୁଥାଏ । ଗାଁ ଜମିଦାରର ଅତ୍ୟାଗ୍ରହ. ଗାଁର ସ୍କୁଲଘର, ଚଟୀଘର, ଗାଁ ଧର୍ମମନ୍ଦିର, ଇତ୍ୟାଦି ପ୍ରତ୍ୟେକ ସ୍ଥଳରେ ସେ ପଲ୍ଲୀର ଜୀବନ ଅତି ସୁନ୍ଦର ଭାବରେ ଫୁଟାଇଛନ୍ତି । ପ୍ରସିଦ୍ଧ ଇଂରେଜ କବି ଟେନିସନ, ମାଥିଉ ଆରନଲ୍‌ଡ଼, ରବର୍ଟ ବ୍ରିଜ୍ ପ୍ରଭୃତି ସେମାନଙ୍କ କବିତାରେ ଯେଉଁଭଳି ପଲ୍ଲୀଚିତ୍ର ଦେଇ ଇଂରେଜ ସାହିତ୍ୟକୁ ମହୀୟାନ କରିଛନ୍ତି, ନନ୍ଦକିଶୋର ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ସେହିପରି ମହୀୟାନ କରିଛନ୍ତି । ନନ୍ଦକିଶୋରଙ୍କ ପୂର୍ବାଗ୍ରଣୀ ଭକ୍ତକବି ମଧୁସୂଦନ ତାଙ୍କର ପ୍ରକୃତି ବର୍ଣ୍ଣନାରେ ସ୍ଥାନେ ସ୍ଥାନେ ପଲ୍ଲୀଚିତ୍ର ଦେବାକୁ ଭୁଲି ନାହାନ୍ତି । ଗାଁର ଆବହାଓ୍ୱା ମଧ୍ୟରେ ପ୍ରତ୍ୟେକ ଋତୁର ଆଗମନ ଏବଂ ପ୍ରତ୍ୟାଗମନ ମଧ୍ୟରେ ସେ ପଲ୍ଲୀର ସ୍ୱପ୍ନ ଦେଖିଛନ୍ତି । ମାତ୍ର ତାହା ଅଳ୍ପ । ଏକ ସ୍ଥାନରେ ତାଙ୍କର କବିତାରେ ରୂପ ପାଇଛି—

କାହିଁ ଲଉଡ଼ି ଧରି ଚରାଏ ଗୋ-ବାଛୁରି
ଗଉଡ଼ ମୁରଲୀ ବଜାଇ,
କାହିଁ ଧାନ ଅମଳ କରଇ କୃଷିବଳ
ଖଳାରେ ବେଙ୍ଗଲା ପକାଇ
କାହିଁ ବା ତଟ କାନନରେ
ଭୀଷଣ ଶାର୍ଦ୍ଦୂଳ ବିଚରେ
କାହିଁ ଭୀମ ଶ୍ମଶାନେ ଗୃଧ୍ର, ଶୃଗାଳ ଶ୍ୱାନେ
ବୁଲନ୍ତି ବିକଟ ନାଦରେ ।

ଅନ୍ୟ ପକ୍ଷରେ ଫକୀରମୋହନ ତାଙ୍କର ଅଧିକାଂଶ କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସରେ ପଲ୍ଲୀଚିତ୍ରର ସୁଷମାକୁ ଏଭଳି ଭାବରେ ରୂପ ଦେଇଛନ୍ତି ଯେ ତାହା ଯେ କୌଣସି ଯୁଗରେ ମଧ୍ୟ ପାଠକକୁ ମୁଗ୍‌ଧ କରିବ । ଗାଁର ବାଟ ମଙ୍ଗଳା, ଗାଁ ପୋଖରୀ ଭୂଠ, କଳହୁଡ଼ୀ ଚମ୍ପା, ଧୂର୍ତ୍ତ ହରିବୋଲ ବାରିକ, ଶୋଷକ ଜମିଦାର ମଙ୍ଗରାଜ, ନିରୀହ ଭଗିଆ ଶାରିଆ ପ୍ରଭୃତି ପଲ୍ଲୀ ଜୀବନର ସମସ୍ତ କଥା ସେ ପ୍ରାଣବନ୍ତ କରି ଦେଇଛନ୍ତି । ସେହିସବୁ ଦୃଶ୍ୟ ସାଧାରଣ ଆଖିରେ ପ୍ରତିଦିନ ପଡ଼େ, ଅଥଚ ତାର ହିସାବ କେହି ରଖନ୍ତି ନାହିଁ । ସେ ସବୁ କଳାକାର ମନରେ ଗଭୀର ରେଖାପାତ କରି ସାହିତ୍ୟରେ ଅମରତ୍ୱ ପାଏ । ଏହି ଭାବରେ ପଲ୍ଲୀ ପ୍ରକୃତି ନନ୍ଦକିଶୋର ଏବଂ ଫକୀରମୋହନଙ୍କ ଲେଖନୀରେ ଅମର ହୋଇ ଉଠିଛି । ଉଦାହରଣ ଦେଲେ କଥାଟି ଅଧିକ ସ୍ପଷ୍ଟ ହୋଇ ଉଠିବ । ତାଙ୍କର ପଲ୍ଲୀ କବିତା ମଧ୍ୟରେ 'କାକ ବାରତା' ଅନ୍ୟତମ ଶ୍ରେଷ୍ଠ ରଚନା । ଭକ୍ତକବି ମଧୁସୂଦନ ଏ କବିତାର ଭୂରି ଭୂରି ପ୍ରଶଂସା କରିଅଛନ୍ତି । ଯାହା ନିତିଦିନ ଆମେ ଗାଁରେ ଶୁଣୁ ଅଥଚ ଆଧୁନିକ ଯୁଗର ପ୍ରଭାବ ସଙ୍ଗେ ସଙ୍ଗେ ସେ ସବୁ ଲୋପ ପାଇବାକୁ ବସିଲଣି, କବି ସେ ସବୁ ପଲ୍ଲୀବାସୀ ମୁଖରୁ ଛଡ଼ାଇ ଆଣିଛନ୍ତି—

"ଡାମରା କାଉରେ ଡାମରା କାଉ
ଉଚ୍ଚ ପରବତେ ବୋବାଉ ଥାଉ ।"

ଘର ବାଣ୍ଟି ମଝିରେ ଝିଅ ବୋହୂଏ ଏକାଠି ହୁଅନ୍ତି । ଦାଣ୍ଡରେ ନାଥ ଭିକ୍ଷା ମାଗି ଚାଲିଯାଏ । ରାମ, ସୀତା, ସାବିତ୍ରୀ, ସତ୍ୟବାନ, ନଳ, ଦମୟନ୍ତୀ, ଗୀତ ଗାଇ ଗାଇ ପଲ୍ଲୀ ପ୍ରାଣରେ ଆଲୋଡ଼ନ ଆଣେ । ଶୁଭକାଉ ଉଡ଼ିଯାଏ ଘର ଚାଳ ମଥାନ ଦେଇ । ନବ ବିବାହିତା ତରୁଣୀ ପ୍ରଣୟୀର ଅବର୍ତ୍ତମାନରେ ବିକଳ ହୋଇଉଠେ ଏବଂ ତାର ଖବର ପାଇବା ପାଇଁ କାଉକୁ ଆହାର ଦେଇ ବାରତା ପଚାରେ । କି ଜୀବନ୍ତ ଅଥଚ ଅତି ସତ୍ୟ ଘଟଣା ଯାହା ହୃଦୟକୁ ବାରମ୍ବାର ସ୍ପର୍ଶ କରିଥାଏ ।

ଡାହାଣିଆ ଖରା ବୁଡ଼ିଯାଉଛି । ବୁଢ଼ୀମା'ର କୋଳରେ ଅବୋଧ ଶିଶୁ ହଳଦି, ତେଲ ଲଗାଇ ଅଟ୍ଟହାସ କରୁଛି । ବୁଢ଼ୀମା 'ବାଇମନ' କରି କେତେ ଗପ କହି, କେତେ ଠାରି ଅବୁଝା ନାତିକୁ ବୁଝାଇବାରେ ଲାଗିଛି—

"ଡାଆଣିଆ ଖରା ପଡ଼ିଛି ବେଳ ଯାଉଛି ବୁଡ଼ି,
କି ସୁନ୍ଦର ପାରା ଯୋଡ଼ିଏ ଯାଉ ଅଛନ୍ତି ଉଡ଼ି ।
ଆସ ଆସ ପାରା ଯେ ଟିକେ ମୋର ପିଢ଼ାରେ ବସ,
ଖାଇବାକୁ ଦେବି ତୁମ୍ଭଙ୍କୁ ମୁହିଁ ନଡ଼ିଆ ରସ ।
ପିଇବାକୁ ଦେବି ତୁମ୍ଭଙ୍କୁ ପଦ୍ମ ପୋଖରୀ ପାଣି,
ଶୋଇବାକୁ ଦେବି ଖଟୁଲି ମାଳୀଘରୁ ମୁଁ ଆଣି ।
ମାଳୀଘର ଖଟୁଲିରେ ଯେ ବାଉଁଶର ପାତିଆ
ମାଆ ଝିଅଙ୍କର ଗୋଡ଼ରେ ରତନର ଝୁଣ୍ଟିଆ ।
ଶାରୀ ପଚାରିଲା ଶୁଆରେ କେଉଁ ଦାଣ୍ଡରେ ଯିବା
ଶୁଆ ବୋଲେ ଶାରୀ ଚାଲ ଗୋ ବଡ଼ଦାଣ୍ଡରେ ଯିବା ।
ବଡ଼ ଦାଣ୍ଡେ ଦାଣ୍ଡେ ଯାଆନ୍ତେ ଯାଉଁ ଗୋବର ଲଣ୍ଡି,
ଲିପି ପୋଛି ଦେଇ ଯାଆ ମା ପୂଜି ମଙ୍ଗଳଚଣ୍ଡୀ ।"

"ନବବର୍ଷ ଭାବନାରେ" କବି ମାଆ କୋଳରେ ନିଜକୁ ରଖି ଅତୀତର ଗ୍ରାମ୍ୟଗ୍ରାମ୍ୟ ପଲ୍ଲୀ ଜୀବନର ଅମର ଚିତ୍ର ସିଙ୍କ ଚିତ୍ରକର ଭାବରେ ଆମ ଆଗରେ ବାଢ଼ି ଦେଇଛନ୍ତି । କେଉଁଠି ଟିକି ନୂଆ ବୋହୂ ପାଣି ଆଣୁ ଆଣୁ ତାର ପାଦ ଖସିଯାଉଛି । ଗ୍ରେଟ ପିଲାଏ ତାଳ ମାରି ଉପଭୋଗ କରୁଛନ୍ତି । କେଉଁଠି ବାଟ କଡ଼ରେ ନୂଆ ବୋହୂଟିଏ ଅପର ମଣିଷକୁ ଦେଖି ବାଟଭାଙ୍ଗି ଠିଆ ହେଉଛି, ଲାଜରେ ଝାଉଁଳି ପଡ଼ୁଛି । ମା କୋଳରେ ଶିଶୁର ମନେ ପଡ଼ୁଛି, ଶଅରୁଣୀଙ୍କର ଜାମୁଡାଳ ନାଚ, ଭେଦୁଅ ମାସର ଜହ୍ନିଫୁଲ ଗୀତ, ଖୁଦୁରୁକୁଣୀ ଓଷା ମେଳା, ଗାଁ ଯାତର ତାଡ଼କା ରାକ୍ଷସୀ, ରାମ ହନୁମାନ ସାଜ, ଭୀମ ଅର୍ଜୁନ, ସାଧବ ଝିଅ, ରାଜା ପୁଅ କଥା, ଚକୁଳିଆ ପଣ୍ଡା କଥା, ବାଉଁଶବଣର ଭୂତ

କଥା, କାନ୍ଥବାଡ଼ରେ ନିଜ ଛାଇକୁ ଦେଖି ଡରିବା, ଆମ୍ବବଗିଚ୍ଛରେ ଶିଆଳି ଲଟା ତଳେ ଦୋଳି ଖେଳୁ ଖେଳୁ ପାହାଡ଼ ଉପରେ ମେଘଚଲି ଦେଖି ମୁଗ୍ଧ ହେବା, ସବୁ କିଛି ମନେ ପଡ଼ୁଛି । ପୁଣି ଆଖି ଆଗରେ ନାଚଉଠେ ବର୍ଷା ଦିନର ପଡ଼ିଆରେ ଛତୁତୋଳା, ପଲ୍ଲୀ ଜୀବନର କଇଁଚ ଲତା, ସାହାଡ଼ା ତଳେ ବଣଭୋଜି । ତାପରେ ଚତୁର୍ଦ୍ଦିଗ୍ୟର ବିର୍ଣ୍ଣ ସନ୍ଧ୍ୟା ଆସେ । ପଲ୍ଲୀବଧୂ ମାନ ଆହରଣରେ କବିତାର ଲହର ତୋଳି ଗଗ୍ରା ନେଇ ଚାଲିଯାଏ ପୋଖରୀ କୂଳକୁ, ମିଟିମିଟି ନୂଆବୋଉ ଜାଳେଣି ସଞ୍ଜଦୀପ । ଦୂରରୁ କୃଷକ ଆଉ ଗୋପାଳ ମୁହଁରେ ସଙ୍ଗୀତର ମୂର୍ଚ୍ଛନା ଲହର ତୋଳେ । ବାତ୍ୟା ବାଦଲକୁ ଦେଖି ପିଲାଏ ବାଇଆ ପରି ନାଚ ଗୋଡ଼ାନ୍ତି, ଚୁଲିମୁଣ୍ଡେ ନୂଆବୋହୂ ପାଖେ ଶିଶୁ ବର୍ଷାଗୀତ ଶୁଣିବାକୁ ଭଲପାଏ ।

ନନ୍ଦକିଶୋରଙ୍କ ଲେଖନୀ ବ୍ୟତୀତ ଏଭଳି ଅଭିବ୍ୟକ୍ତି ଆଉ କାହାଠାରେ ସମ୍ଭବ ?

"ଲୁଣ ତେଲ ମସଲ ଗୋ ନିଅ
ଗତ ପାଳି କାଳି ଶୁଝିଦିଅ ।"
ଶୁଣି ଏ ଉଠିଆ ଡାକ ଘରଣୀଏ ଡାକ ହାକ
ହୋଇଣ ଆସନ୍ତି, ପୁଣି ହୁଏ ଦେବା ନେବା
ଧାନ ରବି ପଇସାରେ ମିଳେ ଯାକୁ ଯେବା ।

ଅଥବା—

ଗ୍ରାମ ଜମିଦାରଙ୍କର ଘର
ଦାଣ୍ଡେ ଚାଲିବାକୁ ମାଡ଼େ ଡର
ସାଉଣ ସ୍ନାନ ପ୍ରଭାତେ ଉଚ୍ଚ ପିଣ୍ଡାରେ ସାଆନ୍ତେ
ବସିଣ କରନ୍ତି ସେବା ପୂଜା ବିଧିମାନ ।"

ଏ ସବୁ ଗାଁର ନିତିଦିନିଆ ଦୃଶ୍ୟ । ସତ୍ୟ ଶିବ ସୁନ୍ଦର ମୂର୍ତ୍ତିମାନ ହୋଇ ଉଠିଛି ଏହି ପଲ୍ଲୀ ଜୀବନରେ । ନନ୍ଦକିଶୋରଙ୍କ ପରେ ପଲ୍ଲୀର ଏହି ଶାନ୍ତ ସରଳ ଚିତ୍ର ପ୍ରଦାନ କରିବାରେ ଖୁବ୍ ଅଳ୍ପ ଲେଖକ ସଫଳ ହୋଇଛନ୍ତି କହିଲେ ଚଳେ ।

ନନ୍ଦକିଶୋର କାବ୍ୟ, କବିତା, ପ୍ରବନ୍ଧ, ଉପନ୍ୟାସ, କ୍ଷୁଦ୍ର ଗଳ୍ପ ପ୍ରଭୃତି ବିବିଧ ମାଧ୍ୟମରେ ବହୁ ପୁସ୍ତକ ଲେଖିଛନ୍ତି । ତେବେ ତାଙ୍କର କାବ୍ୟ ଅଥବା ଉପନ୍ୟାସ, ଏବଂ ବହୁ କବିତା କେବଳ ଆଦର୍ଶମୂଳକ ପରି ମନେହୁଏ । ପୌରୋହିତ୍ୟ ଭଣ୍ଡାମି, କନ୍ୟାଦାୟ ପ୍ରଥା, ବିଧବା ବିବାହ, ଯୌତୁକ ପ୍ରଥା, ସରଳ ବିଶ୍ୱାସରେ ଅସ୍ୱାସ୍ଥ୍ୟକର ପାଦୁକା ସେବା ପ୍ରଭୃତି ସମାଜର ବିଭିନ୍ନ କୁସଂସ୍କାର ବିରୁଦ୍ଧରେ ସେ ଲେଖନୀ ଚଳାଇଛନ୍ତି । ପୁରୁଷ ଚରିତ୍ର ଅପେକ୍ଷା ତାଙ୍କ ଲେଖନୀରେ ନାରୀ ଚରିତ୍ର ଅଧିକ ସ୍ପଷ୍ଟ ଏବଂ ଉଜ୍ଜ୍ୱଳ ହୋଇ ଉଠିଛି । କେତେକ କବିତାରେ ସେ ନିଜକୁ ଶିକ୍ଷକ ଆସନରେ ବସେଇ ନୀତି ଶିକ୍ଷା ଦେବାକୁ ପ୍ରୟାସୀ ହୋଇଥିବାରୁ ସାହିତ୍ୟର ଲକ୍ଷ୍ୟ ଓ କଳା କ୍ଷୁଣ୍ଣ ହୋଇଅଛି ।

ତାଙ୍କର ସମସ୍ତ ରଚନା ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଜୀବନ ଦର୍ଶନର ଆମେ ସୂଚନା ପାଉ । କବିବର ରାଧାନାଥ ଗଭୀର ନୈରାଶ୍ୟବାଦୀ ଥିଲେ । ଜୀବନକୁ ସେ ହାହାକାର ମଣୁଥିଲେ । 'ବାହୁଡ଼ିବି ଏବେ ଦାରୁଣ ସଂସାରେ' କହି ଚିଲିକାଠାରୁ ଦୁଃଖରେ ସେ ବିଦାୟ ନେଇଥିଲେ । ଏ ସଂସାର, ଏ ସମାଜ ତାଙ୍କୁ ଆନନ୍ଦ ଦେଇପାରୁ ନ ଥିଲା । ଜୀବନର ସ୍ୱାଦ, ଜୀବନ ସମ୍ଭୋଗ ସେ ଏହି ମ ଟିର ସଂସାରରେ ଖୋଜି ପାଇ ନଥିଲେ । ମାତ୍ର ଅନ୍ୟ ପକ୍ଷରେ ଭକ୍ତକବି ମଧୁସୂଦନ ଘୋର ଆଶାବାଦୀ ଥିଲେ । ସମସ୍ତ ଦୁଃଖ ଶୋକ ମଧ୍ୟରେ ସେ 'ଧରଧୈର୍ଯ୍ୟ ଦେନରେ ସାନ୍ତ୍ୱନା' କହି ସୃଷ୍ଟିର ଅମୃତ ପୀୟୂଷ ପିଇବାକୁ ଆହ୍ୱାନ ଦେଇଥିଲେ । ଉପନିଷଦର ସେହି ଗଭୀର ଆନନ୍ଦବାଦ ଏବଂ ଆଶାବାଦର ବାଣୀ "ଆନନ୍ଦଦେବ ଇମାନି ଭୂତାନି ଜାୟନ୍ତେ ଆନନ୍ଦେ ଚ ବିଲୀୟନ୍ତେ" ତାଙ୍କ ପ୍ରାଣରେ ବାରମ୍ବାର ଆଲୋଡ଼ନ ସୃଷ୍ଟି କରୁଥିଲା । ମାତ୍ର ଅନ୍ୟ ପକ୍ଷରେ ନନ୍ଦକିଶୋର ବଳି "ନୁହେଁ ଏ ସଂସାର ସୁଖ ଶାନ୍ତିର ସ୍ଥଳ" ବୋଲି ଘୋଷଣା କରିଛନ୍ତି । ସଂସାରର ଜୀବନ-ଯୁଦ୍ଧରେ ଭାଇ ଗଳାରେ ଭାଇ ଛୁରି ଦେଇଛି । ନିକୃଷ୍ଟ ସ୍ୱାର୍ଥପର ହୋଇ ମଣିଷ ଆପଣା ସୁଖରେ ଧାଇଁଛି । ଧନପାଇଁ ମଣିଷ ପିତା ମାତା, ବନ୍ଧୁ ପ୍ରୀତି ସମସ୍ତ ପର କରି ଦେଇଛି । ବଳୀୟାନ ଲୋକ ଦୁର୍ବଳ ଉପରେ ଅତ୍ୟାଚାର କରି ନିଜର ଲାଭ ଉଠାଇବାରେ ଲାଗିଛି, କେତେ ରାବଣ ସମାଜରେ ପର ସ୍ତ୍ରୀ ହରଣ କରୁଛନ୍ତି । କେତେ ପରଦାରା ଅନ୍ୟ ପୁରୁଷ ନିକଟରେ ଆତ୍ମସମର୍ପଣ କରୁଛନ୍ତି । ଦୁଃଖ ବିସମ୍ବାଦ ଚାରିଆଡ଼େ ପୂରି ରହିଛି । ଏ ସବୁ ଭୀଷଣ ଦୃଶ୍ୟ ମଧ୍ୟରେ କବି ଅଧୀର ହୋଇ ମଧୁସୂଦନଙ୍କ ପରି ବ୍ରହ୍ମବାଦର ସ୍ୱପ୍ନ ଦେଖିପାରି ନାହାନ୍ତି—ଜଗତର ମଙ୍ଗଳ ବିଧାନ ଭିତରେ ଆନନ୍ଦବାଦ, ଆଶାବାଦର ସ୍ୱପ୍ନରେ ବିଭୋର ହୋଇ ପାରିନାହାନ୍ତି । ମାତ୍ର ବାସ୍ତବ ଜୀବନ-ଯୁଦ୍ଧରେହିଁ ଜୀବନ ସମ୍ଭୋଗ, ଜୀବନର ସ୍ୱାଦ ଉପଲବ୍ଧି କରିବା ଏ ଯୁଗର ସାହିତ୍ୟର ବିଶିଷ୍ଟ ଲକ୍ଷଣ । ସେ ପଳାୟନପନ୍ଥୀ ହେବାକୁ ଚାହେଁ ନାହିଁ । ନନ୍ଦକିଶୋର ସମୟେ ସମୟେ ଆଶାବାଦର ସ୍ୱପ୍ନ ଆମ ଆଗରେ ବାଢ଼ିଛନ୍ତି ସତ, କିନ୍ତୁ ତାହା ସେତେ ବାସ୍ତବ ହୋଇପାରି ନାହିଁ ।

# କାନ୍ତକବି ଲକ୍ଷ୍ମୀକାନ୍ତ

ଲଙ୍ଗଳା ବୟସରେ କେତେ ହସି ଖେଳି ବୁଲିଛୁ । "ଦେ ମୋତେ ବାଇଆ କରି ଆରେ ମୋର ବାଇଆ ରଜା, ନାଚିବି ମୁଁ ଲଙ୍ଗଳା ହୋଇ ତାଳି ମାରି ଦେଖିବୁ ମଜା ।" ଗୀତଟି ଗାଇ କେତେବାର ବୁଢ଼ୀମାଆର ଶିଥିଳ ପ୍ରାଣରେ ରକ୍ତର ସଞ୍ଚାର କରିଛୁ । ଯେତେଁ ଯେତେଁ ବଡ଼ ହୋଇଛୁ, ଏ ପିଲାଦିନର ସୁଲଳିତ କବିତାଟି ଗାଇ ମୁଁ ଆତ୍ମହରା ହୋଇଛୁ । ଓଡ଼ିଶାର ପୁରପଲ୍ଲୀରେ ଶହ ଶହ ବୃଦ୍ଧ, ଯୁବା, ଶିଶୁ ପ୍ରଭୃତି ବୟସ ନିର୍ବିଶେଷରେ ଏ ଗୀତର କାଉଁରୀଛୁଆଁ ମାଧୁରୀରେ ପାଗଳ ହୋଇ ଉଠନ୍ତି । ମାତ୍ର ଅଧିକାଂଶ ଏ ପ୍ରାଣଘେନା କବିତାର କବିଙ୍କୁ ଜାଣନ୍ତି ନାହିଁ । ବହୁଦିନଯାଏ ମୁଁ ବି ଜାଣି ନ ଥିଲି । ବଡ଼ ହୋଇ ସାହିତ୍ୟ ପଢ଼ିଲାବେଳେ ଭାବୁଥିଲି—'ମନବୋଧ ଚଉତିଶା' 'କଳାକଳେବର ଚଉତିଶା' 'ଦେଖି ନବକାଳିକା ବିକାଳିକାମାଳିକା' ପ୍ରଭୃତି ବହୁ ପ୍ରାଚୀନ ଲୋକପ୍ରିୟ କବିତା ପରି ଏ ମଧ୍ୟ କେଉଁ କାବ୍ୟଯୁଗର କବିଙ୍କ ଲେଖନୀନିଃସୃତ । ମାତ୍ର 'ଦେ ମୋତେ ବାଇଆ କରି' ଭଳି ବହୁ କବିତା ଉତ୍କଳର ପଲ୍ଲୀସଂସାରରେ ଯାହାଙ୍କୁ ଲୋକପ୍ରିୟ କରିଅଛି, ସେ ହେଉଛନ୍ତି ଏ ଯୁଗର ବରେଣ୍ୟ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ।

କବିଙ୍କୁ କେହି ସୃଷ୍ଟି କରେ ନାହିଁ । ନୈସର୍ଗିକ ଗୁଣର ଅଧିକାରୀ ହୋଇ ସେ ଜନ୍ମଗ୍ରହଣ କରନ୍ତି । ଏଇ କଥାଟି ଇଂରେଜୀରେ କୁହାଯାଏ poets are born, not made. ଓଡ଼ିଆ ସାହିତ୍ୟରେ ଯୁଗର ଆବହାଉଆକୁ ସତେଜ ରଖିବାପାଇଁ ଯୁଗେ ଯୁଗେ ଯୋଗ୍ୟ ପ୍ରତିଭାର ବିକାଶ ସମ୍ଭବ ହୋଇଛି । ନାନା ଝଡ଼ଝଞ୍ଜା, ବାଧାବିଘ୍ନ, ନିୟତିର ଅବିଚାର ବିରୁଦ୍ଧରେ ଦଣ୍ଡାୟମାନ ରହି ଲକ୍ଷ୍ମୀକାନ୍ତଙ୍କର ବିଶାଳ ପ୍ରତିଭାର ଉନ୍ମେଷ ସମ୍ଭବ ହୋଇଛି । ରୋଗ, ଶୋକ, ଅପମାନ, ରାଜନୀତି, ପଦମର୍ଯ୍ୟାଦା ତାଙ୍କୁ ପଛରୁ ଧରି ରଖିପାରି ନାହିଁ । ଦୈବର ଅଟ୍ଟହାସକୁ ଖାତିରି ନ କରି ପଙ୍ଗୁ ହୋଇ ମଧ୍ୟ କାନ୍ତକବିର ପବିତ୍ର ଗୌରବମୟ ଗିରି ଆରୋହଣ କରିବାରେ ସେ ସମର୍ଥ ହୋଇଛନ୍ତି ।

ସେ ଆଜକୁ ଅନେକ ବର୍ଷ ତଳର କଥା । ଏ ଦେଶରେ ଇଂରେଜ ଶାସନ ପ୍ରତିଷ୍ଠିତ ହୋଇଥାଏ । ଶାସନକୁ ଅଧିକ ନିୟନ୍ତ୍ରଣ ଓ ଦୃଢ଼ କରିବାପାଇଁ ସମଗ୍ର ଦେଶରେ ପ୍ରଯତ୍ନ ଚାଲିଥାଏ । ରାଜନୀତିର ସଂଘର୍ଷ ଭିତରେ ଦେଶରେ କେତେ ପରିବର୍ତ୍ତନ, ଉତ୍ଥାନ ପତନ ସମ୍ଭବ ହୋଇଥାଏ ! ସ୍ୱାଧୀନ ଓଡ଼ିଶାର ରାଜାଙ୍କ ଅମଳରେ ଭୂସ୍ୱାମୀମାନେ

ଭଦ୍ରଖରେ ରାଜପଣ୍ଡ କରୁଥିଲେ । ଏମାନେ ନିଜକୁ ଚୌହାନବଂଶୀୟ କ୍ଷତ୍ରିୟ ବୋଲି ମନେ କରନ୍ତି । ମୁସଲମାନଙ୍କଦ୍ୱାରା ଉତ୍କଳର ସ୍ୱାଧୀନତା-ରବି ବିକଳାଙ୍ଗ ହେବା ସମୟରେ ଭୂୟାଁ ସାମନ୍ତଗଣ ଭଦ୍ରଖରୁ ବିତାଡ଼ିତ ହୋଇ ଦଶମାଇଲ ଦୂରବର୍ତ୍ତୀ ତାଳପଦା ଗ୍ରାମରେ ବାସବାସ ଆରମ୍ଭ କଲେ । ମୁସଲମାନ-ରାଜତ୍ୱ ପରେ ପରେ ମରହଟ୍ଟାମାନେ ଏ ଦେଶ ଅଧିକାର କଲେ । ଏମାନଙ୍କ ଅମଳରେ ଭୂୟାଁ ସାମନ୍ତଗଣ ସାଧାରଣ ଜମିଦାର ଭାବରେ କାଳାତିପାତ କରୁଥିଲେ । ଏ ଦେଶରେ ଇଂରେଜ ଅଧିକାର ଆସିଲାବେଳକୁ ତାଳପଦାର ସାମନ୍ତ ପରିବାର ବିପୁଳ ସମ୍ପତ୍ତି ହରାଇ ସାରଲେଣି । ଅଥଚ ପରମ୍ପରାରେ ଆଭିଜାତ୍ୟ ତଥା ବଂଶ ଗୌରବର ଟେକ ଅକ୍ଷୁଣ୍ଣ ରହିଥାଏ । ଏହି ବଂଶ ସାମନ୍ତରାୟ ପରିବାରରେ ଅଠର ଶହ ଅଠାଅଶୀ ମସିହା ଡିସେମ୍ବର ନଅ ତାରିଖ ଦିନ ଓଡ଼ିଆ ସାହିତ୍ୟ ଆକାଶରେ ଚଳିତ ଅର୍ଦ୍ଧଶତାବ୍ଦୀର ଅନ୍ୟତମ ଗୌରବମୟ ଜ୍ୟୋତିଷ୍କ ଭାବରେ କାନ୍ତକବି ଲକ୍ଷ୍ମୀକାନ୍ତ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଚୌଧୁରୀ ଭାଗବତପ୍ରସାଦ ସାମନ୍ତରାୟ ମହାପାତ୍ର ଯେ ସମୟରେ ଆଇନ ବ୍ୟବସାୟରେ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ ଏବଂ ସମସାମୟିକ ସହିସ୍ପୁ ରାଜମାତରେ ଭାଗ ନେଇ ବ୍ୟବସ୍ଥାପକ ମଧ୍ୟ ହୋଇ ପାରିଥିଲେ । ଭଦ୍ରଖ ଅନ୍ତର୍ଗତ ଜମିଦାର ହରେକୃଷ୍ଣ ଦାସଙ୍କ କନ୍ୟା ରାଧାମଣି ଦେବୀ ଲକ୍ଷ୍ମୀକାନ୍ତଙ୍କ ପରି ସୁପୁତ୍ରଙ୍କୁ ଗର୍ଭରେ ଧାରଣ କରି ଭାଗ୍ୟବତୀ ହୋଇଥିଲେ ।

ଆଧୁନିକ ଶିକ୍ଷା ଲାଭ କରିବାର ସମସ୍ତ ସୁଯୋଗ ତାଙ୍କର ଥିଲା । ତେଣୁ ତାଙ୍କର ପିତାମାତା ତାଙ୍କୁ ଉଚ୍ଚଶିକ୍ଷା ଦେବାପାଇଁ ତ୍ରୁଟି ଆଦୌ କରି ନ ଥିଲେ । ୧୮୯୫ ମସିହାରେ ସେ ହାଇସ୍କୁଲରେ ଭର୍ତ୍ତି ହୋଇଥିଲେ । ୧୯୧୦ ମସିହାରେ ଆଇ. ଏ. ପାସ୍ କରି ଉଚ୍ଚଶିକ୍ଷା ପାଇଁ କଲିକତା ରିପନ୍ କଲେଜରେ ନାମ ଲେଖାଇଥିଲେ । ମାତ୍ର କୌଣସି କାରଣରୁ ସେ ପୁନର୍ବାର କଟକ ଫେରି ଆସିଥିଲେ ଏବଂ କଟକ ରେଭେନ୍ସା କଲେଜରୁ ୧୯୧୩ ମସିହାରେ ସେ ଡିଗ୍ରୀ-ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ । ଉଚ୍ଚଶିକ୍ଷା ବୋଲନ୍ତେ ଯାହା ବୁଝାଏ, ତାହା ସେ ପାଇଥିଲେ । ବଡ଼ଲୋକ ପରିବାରରେ ସେ ଜନ୍ମଗ୍ରହଣ କରି ସମସ୍ତ ସୁଖ ସୁବିଧାର ଅଧିକାରୀ ହୋଇଥିଲେ । ଧନ, ମାନ, ଅଭିମାନ ସବୁ ଥାଇ ମଧ୍ୟ ନିୟତିର ଦାରୁଣ କଷାଘାତ ତାଙ୍କୁ ସାରା ଜୀବନ ପାଇଁ ଅଭିଶପ୍ତ କରି ରଖିଥିଲା । ଦୁର୍ଭାଗ୍ୟର କଥା ଯେ ବି. ଏ. ପାସ କରିବା ପରେ ପରେ ଲକ୍ଷ୍ମୀକାନ୍ତ କୁଷ୍ଠରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ସାରାଜୀବନ ପାଇଁ ତାଙ୍କୁ ପଙ୍ଗୁ କରି ବଧିର ଯେ କେଉଁ ଲକ୍ଷ୍ୟ ସାଧିତ ହେଲା ବୁଝି ହୁଏ ନାହିଁ । ଜୀବନବ୍ୟାପୀ ଏହି କ୍ଳେଶ ଓ ଯନ୍ତ୍ରଣା ମଧ୍ୟରେ ତାଙ୍କର କବିତ୍ୱର ଅସରନ୍ତି ପ୍ରବାହ ଯେପରି ଛଳ ଛଳ ହୋଇ ସମଗ୍ର ଉତ୍କଳ-ବକ୍ଷରେ ପ୍ରବାହିତ ହୋଇଛି, ସେସବୁ ଭାବିବସିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତାଙ୍କର ରକ୍ତମାଂସର ଶରୀରକୁ ବିକଳ ଓ ବିକୃତ କରିବାରେ ନିର୍ମମ ବିଧି ସଫଳ ହୋଇଛି ସତ, ମାତ୍ର ତାଙ୍କର ନୈସର୍ଗିକ ଅମର

କଳ୍ପନାକୁ ପଙ୍ଗୁ କରିଦେବାର ପ୍ରଚେଷ୍ଟା ତାହାର ବ୍ୟର୍ଥ ହୋଇଛି । ବାଲେଶ୍ୱରର କେଉଁ ନିଭୃତ କୋଣରେ ଏହି ନମସ୍ୟ ପଙ୍ଗୁର କଳ୍ପନା ଓ ଚିନ୍ତାଧାରା ଗତ ବହୁବର୍ଷ ଧରି ଏମନ୍ତ ଉତ୍କଳ ସ୍ତ୍ରୀ ହୃଦୟକୁ ଟାଣିଉଛନ୍ତି ରସ ଆହରଣରେ ସାହାଯ୍ୟ କରିଛି । ବହୁବର୍ଷ ତଳେ ଓଡ଼ିଆ ସାହିତ୍ୟର କାନ୍ତକୋମଳ ପଦ୍ୟାବଳୀର କବି ରସକଲ୍ଲୋଳକାର ଦୀନକୃଷ୍ଣଙ୍କର କବିତ୍ୱ ମଧ୍ୟ ଅଭାବ, ଅନଟନ, ରାଜଦଣ୍ଡ, ରୋଗଯନ୍ତ୍ରଣା ମଧ୍ୟଦେଇ ବିକଶିତ ହୋଇଥିଲା ।

ପ୍ରତିଭା ଲୁଚି ରହେ ନାହିଁ । ସୁଯୋଗ ପାଇଲେ ତାହା ରୂପ ନେବା ପାଇଁ ବ୍ୟାକୁଳ ହୋଇପଡ଼େ । ଯେହିପରି କାନ୍ତକବିଙ୍କର ପ୍ରତିଭାର ଉନ୍ମେଷ ଯୌବନରେ ଦୃଷ୍ଟି ହୋଇଥିଲେହେଁ ତାର ପୂର୍ବାଭାସ ତାଙ୍କର ବାଲ୍ୟକାଳର ଆଚରଣରେ ପ୍ରକଟିତ ହୋଇଥିଲା । କାନ୍ତକବି ମଧ୍ୟ ରାମାୟଣ ମହାଭାରତର ଆଦର୍ଶଦ୍ୱାରା ଜୀବନରେ ପ୍ରଭାବିତ ହୋଇଥିଲେ । ଏତଦ୍‌ବ୍ୟତୀତ ପିଲାଦିନେ ଗାଁମାନଙ୍କରେ ସାଧାରଣ ଆମୋଦ ପ୍ରମୋଦ ପାଇଁ ଅନୁଷ୍ଠିତ ହେଉଥିବା ଯାତ୍ରା, ଲୀଳା, ସୁଆଙ୍ଗ ପ୍ରଭୃତି ତାଙ୍କ ଜୀବନ ଉପରେ ଗଭୀର ରେଖାପାତ କରିଥିଲା । ସେହି ଦିନରୁ କାନ୍ତକବି ଲକ୍ଷ୍ମୀକାନ୍ତ ମନେ ମନେ କବିତା ଯୋଡ଼ି ପାଇବାରେ ଆନନ୍ଦ ପାଉଥିଲେ । କିଏ ଜାଣିଥିଲା ଯେ ଦିନେ ଯାତ୍ରାଦଳର ନର୍ତ୍ତକ ଶୁଣି ମନରେ ଗୁଣି ହେଉଥିବା ଯୁବକ ଲକ୍ଷ୍ମୀକାନ୍ତଙ୍କ ମଧ୍ୟରେ କାନ୍ତକବିର ପ୍ରତିଭା ଲୁକ୍କାୟିତ ଅଛି !! ଗୁରୁଜାବସ୍ଥାରେ ଉତ୍କଳମଣି ଗୋପବନ୍ଧୁ ତାଙ୍କର ଉପର ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ଗୁରୁଜାବସ୍ଥାରୁ ତାଙ୍କର କବିତ୍ୱର ଉନ୍ମେଷ ହୋଇଥିଲା । ତେଣୁ ସେ କବି ହେବାପାଇଁ ସାଧନା ଆରମ୍ଭ କଲେ ଏବଂ ତାଙ୍କର ପ୍ରଥମ ଲେଖା ବାଲେଶ୍ୱର "ସମ୍ବାଦ ବାହିକା"ରେ ପ୍ରକାଶ ପାଇଥିଲା । ତା ପରେ ପରେ ସେ 'ମୁକୁର', 'ଉତ୍କଳ ସାହିତ୍ୟ' 'ନବଭାରତ', 'ବାରୁଣୀ' ଓ 'ଡଗର' ପତ୍ରିକାରେ ନିଜର ଚିନ୍ତାଧାରାର ଅଭିବ୍ୟକ୍ତି କରିବାରେ ଲାଗିଲେ । ଲେଖକଜୀବନର ପ୍ରଥମାବସ୍ଥାରେ ସେ ଭକ୍ତକବି ମଧୁସୂଦନ, ଗୋପବନ୍ଧୁ, ବ୍ରଜସୁନ୍ଦର ଦାସ, ବିଶ୍ୱନାଥ କର, ଗୋପାଳ ପ୍ରହରାଜ, ଶଶିଭୂଷଣ ରାୟ, ମୃତ୍ୟୁଞ୍ଜୟ ରଥ, ଚିନ୍ତାମଣି ମହାନ୍ତି ପ୍ରଭୃତି ସାହିତ୍ୟିକମାନଙ୍କ-ଠାରୁ ଉତ୍ସାହ ଓ ଆଶୀର୍ବାଦ ଲାଭ କରିଥିଲେ । ନିଜ ଲେଖକ ଜୀବନ ସମ୍ବନ୍ଧେ ସେ 'ମୁଁ କାହିଁକି ଲେଖେ' ଶୀର୍ଷକ ପ୍ରବନ୍ଧରେ 'ଡଗର' ପତ୍ରିକାର ୧୪ଶ ବର୍ଷ ୧୬ଶ ସଂଖ୍ୟାରେ ଲେଖିଛନ୍ତି "ବ୍ରଜସୁନ୍ଦରବାବୁଙ୍କ ନିର୍ଦ୍ଦେଶ, ଉପଦେଶ ଓ ଉତ୍ସାହ ପାଇ ମୁ ମୁକୁରରେ ଲେଖିବାକୁ ଆରମ୍ଭ କଲି କବିତା ଓ ଗଳ୍ପ ।" ପୁନର୍ବାର ଅନ୍ୟଠାରେ ସେ ଲେଖିଛନ୍ତି "ସବୁଠାରୁ ବଡ଼ ପ୍ରେରଣା ମିଳିଥିଲା ମୋତେ ଦିନେ ବ୍ୟାସ କବିଙ୍କଠାରୁ । ଫକୀରମୋହନଙ୍କ ଆଶୀର୍ବାଦ ମୋ ଲେଖକଜୀବନ ଉପରେ ଏଭଳି ଗଭୀର ପ୍ରଭାବ ପକାଇ ଦେଲା ଯେ ତାହା ଅଳଭ୍ୟ ହୋଇ ରହିଯାଇଛି ମୋ ଶିରା ଶିରାରେ । ମୋର ଗୋଟିଏ ଲେଖା ଦେଖି ସେ ମୋତେ କୁଣ୍ଢେଇ ପକାଇ କହିଲେ—ଯେ ଲେଖାରେ ଫୁଲ ଚନ୍ଦନ ପଡ଼ୁ । ଥକିବୁ ନାହିଁ ବାପା—ଭଲମନ୍ଦର ବିଚାର କରିବୁ ନାହିଁ—ତୁ ଲେଖିଯିବୁ । ସେ ବିଚାର କରିବ—'କାଳ' । କାଳର ଅଗ୍ନିରେ ପୋଡ଼ି ହୋଇ ଯାହା

ଖାଟ ତାହା ପାଉଁଶ ହୋଇଯିବ, ଆଉ ଯାହା ଖାଣ୍ଟି ସୁନା ତାହା ଝଟକି ରହିଯିବ, କାଲ କାଲକୁ ।”

ଓଡ଼ିଆ ସାହିତ୍ୟରେ ଲକ୍ଷ୍ମୀକାନ୍ତଙ୍କ ସ୍ଥାନ ନିରୂପିତ ହୋଇ ନାହିଁ । କାରଣ, ତାଙ୍କର ଅସଂଖ୍ୟ ଲେଖା ପତ୍ରିକାମାନଙ୍କରେ ପ୍ରକାଶିତ ହେଲେହେଁ ପୁସ୍ତକାକାରରେ ସେ ସବୁ ସଙ୍କଳିତ ହୋଇ ନାହିଁ । ତେବେ ଲକ୍ଷ୍ମୀକାନ୍ତ ଯେ ସାହିତ୍ୟର କେଉଁ ବିଭାଗରେ ହାତ ଦେଇ ନାହାନ୍ତି ଏପରି ନୁହେଁ । ସେ ଏକାଧାରରେ କବି, ଗଳ୍ପଲେଖକ, ଔପନ୍ୟାସିକ, ନାଟକ ଲେଖକ, ସନ୍ଦର୍ଭ ଲେଖକ, ସାମ୍ବାଦିକ ଏବଂ ସର୍ବୋପରି ସବୁ ଯୁଗପାଇଁ ସେ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ସର୍ବଶ୍ରେଷ୍ଠ ହାସ୍ୟରସ ଓ ପାରୋଡ଼ି (ଲାଳିକା) କବି । ଇଂରେଜି ସାହିତ୍ୟରେ ମଧ୍ୟ ତାଙ୍କର ବ୍ୟୁତ୍ପତ୍ତି ଅସାଧାରଣ । Current Affairs ଓ Mayurbhanja Chronicle ପତ୍ରିକାରେ ତାଙ୍କର ଇଂରେଜି ରଚନାଗୁଡ଼ିକ ବହୁମୁଖୀ ପ୍ରତିଭାର ପରିଚୟ ପ୍ରଦାନ କରିଥିଲି ।

ଗ୍ରହଜୀବନର ଅବ୍ୟବହିତ ପରେ ଲକ୍ଷ୍ମୀକାନ୍ତ ରୋଗଗ୍ରସ୍ତ ହୋଇ ପଡ଼ିଲେ । ଫଳରେ ବାହାରେ କୌଣସି କର୍ମରେ ନିଯୁକ୍ତ ରହିବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ତେଣୁ ଲକ୍ଷ୍ମୀକାନ୍ତ ନିଜ ଗାରେ ସଙ୍ଗୀତ ଚର୍ଚ୍ଚାରେ ଲାଗିପଡ଼ିଲେ । ଏହି ସମୟରେ ଉତ୍କଳପ୍ରସିଦ୍ଧ ସଙ୍ଗୀତଜ୍ଞ ମନମୋହନ ସାବତଙ୍କ ସହିତ ତାଙ୍କର ଗଭୀର ଘନିଷ୍ଠତା ସମ୍ଭବ ହୋଇଥିଲା । ଏହି ସମୟରେ ତାଙ୍କର ପ୍ରଯତ୍ନରେ ଏକ ନାଟ୍ୟଶାଳା ପ୍ରତିଷ୍ଠିତ ହୋଇଥିଲା ଏବଂ ତାଙ୍କ ରଚିତ କାଳୀୟଦଳନ, ଶରଦରାସ, ବସନ୍ତରାସ, ଚନ୍ଦ୍ରହାସ, ମହାବୀର କର୍ଣ୍ଣ ପ୍ରଭୃତି ଗୀତନାଟ୍ୟ ଓ ନାଟକଗୁଡ଼ିକ ଅଭିନୀତ ହୋଇ ଯେଉଁଭଳି ବିପୁଳ ଲୋକପ୍ରିୟତା ହାସଲ କରିଥିଲା, ତାହା ଅବର୍ଣ୍ଣନୀୟ । ଜନସାଧାରଣଙ୍କ ମଧ୍ୟରେ ଲକ୍ଷ୍ମୀକାନ୍ତ ଅତି ଆପଣାର ହୋଇ ପଡ଼ିଲେ । ଯୁଗ ଯୁଗ ଧରି ଭାରତୀୟ ସମାଜ ଓ ସାହିତ୍ୟ ପୁରାଣ ଯୁଗର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଥିଲା । ମାତ୍ର ଇଂରେଜି ସାହିତ୍ୟର ପ୍ରଭାବରେ ରାଧାନାଥ ଯୁଗରେ ସାହିତ୍ୟର ରୂପ ବଦଳିଗଲା । ଫଳରେ ଏ ଯୁଗର ସାହିତ୍ୟ ଗଣମନକୁ ଅଧିକ ସ୍ପର୍ଶ କରିପାରିଲା ନାହିଁ । ଗଣମନକୁ ଦୋହଲାଇଲା ଭଳି କଥାବସ୍ତୁ ପରିବେଷଣ କରିବାରେ ଫକୀରମୋହନ ବୈପ୍ଳବିକ ଚିନ୍ତାଧାରାର ପରିଚୟ ଦେଇଥିଲେ । ଯୁଗ ଯୁଗ ଧରି ଗଣ ଯାହା ଗ୍ରହଣ କରୁଥିଲା, ତାକୁ ସେପରି ସେ ମଧୁର ପରିବେଷଣପାଇଁ ଲକ୍ଷ୍ମୀକାନ୍ତ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଅସଂଖ୍ୟ କବିତା ଓ ଗୀତନାଟ୍ୟ ପ୍ରଭୃତି ଏଇଥିପାଇଁ ବୋଧହୁଏ ଲୋକରେ ଅଧିକ ପ୍ରଚଳିତ ଓ ଆଦୃତ ।

କାନ୍ତକବିଙ୍କର ବହୁମୁଖୀ ପ୍ରତିଭାର ବିକାଶ ମଧ୍ୟରେ ରଙ୍ଗରଚନାର ସ୍ରଷ୍ଟା ଓ ପାରୋଡ଼ି (ଲାଳିକା) ଲେଖକ ଲକ୍ଷ୍ମୀକାନ୍ତ ଯୁଗ ଯୁଗ ପାଇଁ ଓଡ଼ିଆ ସାହିତ୍ୟରେ ଅମର ହୋଇ ରହିବେ । ଗୋପବନ୍ଧୁଙ୍କ ଭାଷାରେ “ଏ ଦେଶକୁ ବସନ୍ତର ଆଗମନ ପୂର୍ବରୁ ଗ୍ରୀଷ୍ମର ଭୀଷଣ ରୌଦ୍ରତାପ ବ୍ୟାକୁଳ କରିଥାଏ । ଯୌବନ ଆସିବା ପୂର୍ବରୁ ବାର୍ଦ୍ଧକ୍ୟ ଅତର୍କିତ ଭାବରେ ଆକ୍ରମଣ କରେ ।” ଆମର ଜାତୀୟ ଜୀବନରେ ବଢ଼ି, ମରୁଡ଼ି, ଶୋକ

ଦୁର୍ଦ୍ଦିନର ତାଣ୍ଡବଲୀଳା ନିରବଚ୍ଛିନ୍ନ ଲାଗି ରହିଛି । ବୋଧହୁଏ ଏଇଥିପାଇଁ ଯୁଗଯୁଗର ଓଡ଼ିଆ ସାହିତ୍ୟଭଣ୍ଡାରରେ ହାସ୍ୟରସର ଅଭାବ ଏତେ ବେଶି । ରଙ୍ଗରସର କଳାକାର ଭାବରେ କ୍ୱଚିତ୍ ଲେଖକ ଦେଖା ଦେଇଛନ୍ତି । ଲକ୍ଷ୍ମୀକାନ୍ତ ଯୁଗ ଯୁଗର ଏହି ଅପୂରଣୀୟ ସ୍ଥାନ କେବଳ ପୂରଣ କରି ନାହାନ୍ତି, ତାଙ୍କ ସୃଷ୍ଟିରେ ସେ ଚିରକାଳପାଇଁ ମହାସ୍ଥାନ୍ ହୋଇଉଠିଛନ୍ତି । ଏହା ବୋଲି ହାସ୍ୟ ରସର ଅବତାରଣା ଯେ ଆମର ନ ଥିଲା, ଏପରି ନୁହେଁ । ସଂସ୍କୃତ ନାଟକ ଓ ଯାତ୍ରା ସୁଆଙ୍ଗ ଅନୁଷ୍ଠାନଗୁଡ଼ିକରେ ଦୁଆରୀ ଓ ବିଦୂଷକର ଅବତାରଣା ଏହି ରଙ୍ଗରସର ସୃଷ୍ଟିପାଇଁ ମୁଖ୍ୟତଃ ହୋଇଥାଏ । କବିସୂର୍ଯ୍ୟଙ୍କ "ଏ ହେଲି ହୋ ସେ ହେଲି, ଏକ ସେ ମହାରାଜା ଥିଲି" ଅଥବା କଳସା ଚଉତିଶାର ଶିବପାର୍ବତୀ ସ୍ୱୟମ୍ବର ବର୍ଣ୍ଣନା, ବ୍ରଜନାଥଙ୍କ 'ଚତୁରବିନୋଦ' ଅଥବା ହାସ୍ୟରସିକ ଯଦୁମଣିଙ୍କ ଅସଂଖ୍ୟ କବିତା ପ୍ରଭୃତିରେ ରଙ୍ଗରସର ଅବତାରଣା କରାଯାଇଛି । ମାତ୍ର ବିଶାଳ ଓଡ଼ିଆ ସାହିତ୍ୟ-ରାଜ୍ୟରେ ଏ ସବୁ ନଗଣ୍ୟ । ଫକୀରମୋହନଙ୍କ ପରେ ପରେ ଗତ ବହୁ ବର୍ଷ ଧରି ଏକମାତ୍ର ଲକ୍ଷ୍ମୀକାନ୍ତଙ୍କ ବ୍ୟଙ୍ଗ କବିତା, ଶ୍ଳେଷ କବିତା ଲଳିକା ପ୍ରଭୃତି ଓଡ଼ିଆ ପାଠକ ସଂସାରକୁ ପ୍ରାଣବନ୍ୟାରେ ସନ୍ତରଣ ପାଇଁ ଏକ ନୂତନ ଖୋରାକ ଯୋଗାଇ ଆସିଛି । ମାତ୍ର ଏଇଠି ସ୍ୱତଃ ପ୍ରଶ୍ନ ଉଠେ ଯେ ଜଣେ ଚିରଦୁଃଖୀ, ରୋଗଗ୍ରସ୍ତ, ବିକଳାଙ୍ଗର ଲେଖନୀ ସମଗ୍ର ଓଡ଼ିଆ ଜାତିକୁ ହସାଇବାରେ ସମର୍ଥ ହେଲା କିପରି ? କବି ତାଙ୍କର 'ମୁଁ କାହିଁକି ଲେଖେ' ପ୍ରବନ୍ଧରେ ନିଜେ ହିଁ ଏହାର ଉତ୍ତର ଦେଇଛନ୍ତି । ତାଙ୍କ ମତରେ ଅନେକ ସମୟରେ ମନଫୁଲଣିଆ ଗୀତ ଆମେ ଗାଉ ସତ, ମାତ୍ର ତାହା ଅନ୍ତରର ନିର୍ଯ୍ୟାସ ନୁହେଁ । ସାମୟିକ ଉତ୍ତେଜନାରେ ପଡ଼ି ସେଭଳି ସଙ୍ଗୀତରେ ଆତ୍ମହରା ହେବା ସ୍ୱାଭାବିକ । ଯେଉଁମାନେ ଚିରଦୁଃଖୀ, ଚିର ଆତୁର, ତାଙ୍କର ଅନ୍ତରରୁ ସମ୍ଭବ ହୁଏ ପ୍ରକୃତ ସଙ୍ଗୀତ ଝଙ୍କାର । ବୋଧହୁଏ ଏଇଥିପାଇଁ କଲ୍ଲୋଳକାରଙ୍କ ମର୍ମନ୍ତୁଦ ଲେଖନୀରୁ "କୃପାସିନ୍ଧୁ ବଦନ କରି ଅବଲୋକନ କେଉଁ କରମହୀନ ଜନ" ଭଳି ଅମର କବିତା ବାହାରିବା ସମ୍ଭବ ହୋଇଥିଲା । ତେବେ ପ୍ରଶ୍ନ ହେଉଛି ଏଭଳି ବ୍ୟଥାଭରା ହୃଦୟରୁ ହାସ୍ୟରସପୂର୍ଣ୍ଣ ଲେଖା ବାହାରେ କିପରି ? କବିଙ୍କ ଭାଷାରେ "ମୋର ମନେହୁଏ ରଙ୍ଗସ୍ରଷ୍ଟାର ଅନ୍ତର୍ବେଦନା ଅସୀମ । ଅତି ବ୍ୟଥାରେ ଫାଟି ନ ପଡ଼ିଲେ ବୋଧହୁଏ କୌଣସି ଲେଖକ ହାସ୍ୟରସ ସୃଷ୍ଟି କରି ପାରନ୍ତି ନାହିଁ । କବିର ମର୍ମବେଦନା ଯେତେବେଳେ ତା'ର ସହନଶକ୍ତିକୁ ବଳିକି ଉଠେ, ବେଳା ଲଙ୍ଘନ କରେ, ସେ ହୋଇଯାଏ ପାଗଳ । ପାଗଳାମିର ଛଳନାରେ ସେ ରଙ୍ଗରସର ଗୁମ୍ଫାତଳେ ଆତ୍ମଗୋପନ ଓ ଆତ୍ମପ୍ରବଞ୍ଚନା କରି ଦୁଃସହ ଦୁଃଖକୁ ଏଡ଼ି ଦେବାର ଚେଷ୍ଟା କରେ । ଏତକ ନ ଥିଲେ ହୁଏତ ସେ ମୃତ୍ୟୁକୁ ଆଶ୍ରୟ କରନ୍ତା । ନିରୂପାୟ, ନିରାଶ୍ରୟ, ବିଷାଦବିଦୀର୍ଣ୍ଣ ଚିତ୍ତକୁ କ୍ଷଣିକ ଆରାମ ଦେବା ନିମନ୍ତେ ସତେକି ଏହା ଗୋଟିଏ ଈଶ୍ୱରଦତ୍ତ ଉପାୟ । ମରା ମନକୁ ବହଲାଇ ବଞ୍ଚାଇ ରଖିବାର ଗୋଟିଏ ସହଜାତ କୌଶଳ ।

ହାସ୍ୟରସ ସୃଷ୍ଟି ଯାହା ଲେଖକ ଅପେ ତ ହସେନା—ଆନଙ୍କୁ ହସାଇ ରସାଇ ନାହିଁଲେହେଁ । ନଜେ ଦେଖଣାହାଣ୍ଡି ରୂପେ ଉହାଡ଼ରେ ରହି ପରକୁ ହସାଇବାର ଯେଉଁ ଆନନ୍ଦ ତାହା ହିଁ ତାଙ୍କୁ ଦିଏ କ୍ଷଣିକ ଅବ୍ରାମ ଆଉ ସାନ୍ତ୍ୱନା ।"

ଲକ୍ଷ୍ମୀକାନ୍ତଙ୍କର ଜୀବନୀ ଆଲୋଚନା ପ୍ରସଙ୍ଗରେ 'ଡଗର' ପତ୍ରିକାର ଆଲୋଚନା ସ୍ୱତଃ ମନକୁ ଆସେ । ୧।୭।୧୯୩୭ ମସିହାରେ ଲକ୍ଷ୍ମୀକାନ୍ତଙ୍କ ପ୍ରଯତ୍ନ ଓ ତାଙ୍କର ସୁଯୋଗ୍ୟ ପୁତ୍ର ନତ୍ୟାନନ୍ଦଙ୍କ ସମ୍ପାଦନରେ ପାକ୍ଷିକ ଭାବରେ 'ଡଗର' ଆତ୍ମପ୍ରକାଶ କଲା ଭଦ୍ରଖରୁ । ଏହିଦିନଠାରୁ ମୃତ୍ୟୁପର୍ଯ୍ୟନ୍ତ ଲକ୍ଷ୍ମୀକାନ୍ତ ଏହାର ପ୍ରଯୋଜକ ରହି ନଜର ଅପୂର୍ବ ଲେଖନୀ ଚାଳନାରେ ତାଙ୍କର ଲଳିକା, ଶ୍ଳେଷପୂର୍ଣ୍ଣ କବିତା, ରଙ୍ଗରସର ପରିବେଷଣ କରି ଓଡ଼ିଆ ପାଠକ ସମାଜକୁ ତନ୍ମୟ କରି ରଖିଥିଲେ । ଗତ ପନ୍ଦରବର୍ଷର ଜୀବନକାଳ ମଧ୍ୟରେ ବାସ୍ତବରେ 'ଡଗର' ଦ୍ୱାରେ ଦ୍ୱାରେ ରଙ୍ଗରସ ବିତରଣ କରି ଆସିଛି । 'ଡଗର' ନାମକରଣ ମଧ୍ୟ ଲକ୍ଷ୍ମୀକାନ୍ତଙ୍କ କଳ୍ପନା-ପ୍ରସୂତ । ହାସ୍ୟରସପୂର୍ଣ୍ଣ ରଚନାରେ ଲକ୍ଷ୍ମୀକାନ୍ତ ନଜକୁ 'ହନୁମାନ ନକଲ ନବିସ', 'କଳି ବାଲ୍ମୀକି' ପ୍ରଭୃତି ଛଦ୍ମନାମରେ ନଜର ପାଠକ ପାଠିକାମାନଙ୍କ ଆଗରେ ପରିଚୟ ଦେଇ ଆସି ଅଛନ୍ତି । ସମସାମୟିକ ଶିକ୍ଷା, ରାଜନୀତି, ଅଫିସର ବ୍ୟବହାର ଓ ପ୍ରଧାନ ଘଟଣାକୁ ଅତି ଜୀବନ୍ତ ଭାବରେ ଲକ୍ଷ୍ମୀକାନ୍ତ ଲଳିକା ଅଥବା ଶ୍ଳେଷାତ୍ମକ କବିତା ମାଧ୍ୟମରେ ଆଲୋଚନା କରି ହାସ୍ୟରସ ସୃଷ୍ଟି କରିବାରେ ପାରଙ୍ଗମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଧୁନିକ ସମାଜର ଯୁବକ-ଯୁବତୀମାନଙ୍କୁ ଶ୍ଳେଷ କରି 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ଲଳିକା-ରୂପ ତାଙ୍କର 'ଚଟକ ଚନ୍ଦ୍ରହାସ ଚମ୍ପୂ' ବହୁପାଠକର ହୃଦୟ ଆକର୍ଷଣ କରିଥିଲା । ଡଗରରେ ତାଙ୍କ ପ୍ରକାଶିତ ବ୍ୟଙ୍ଗ କାବ୍ୟ ନବରାମାୟଣ ଓ ମହାଭାରତ କବିଙ୍କର ଖ୍ୟାତିକୁ ଅଧିକ ପ୍ରସାରିତ କରିଥିଲା । 'ଡଗର'ରେ ତାଙ୍କର "କଣାମାମୁଁ" ଉପନ୍ୟାସ ଧାରାବାହିକ ପ୍ରକାଶିତ ହୋଇ ବହୁପାଠକଙ୍କ ଦୃଷ୍ଟି ଆକର୍ଷଣ କରିଅଛି । କଣାମାମୁଁରେ ସମସାମୟିକ ଜାତୀୟ ଆନ୍ଦୋଳନ ଅତି ନିପୁଣ ଓ ସରସ ଭାବରେ ଅଭିବ୍ୟକ୍ତ ହୋଇଅଛି । ଏତଦ୍‌ବ୍ୟତୀତ ତାଙ୍କ ରଚିତ ବହୁ ଲୋକପ୍ରିୟ ଗ୍ରନ୍ଥ, ଚଉତିଶା ଓ ଖଣ୍ଡକବିତା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ଲୋକପ୍ରିୟ ହୋଇପାରିଛି ।

'କୁଙ୍କୁମ' ପ୍ରଥମ ବର୍ଷ ଷଷ୍ଠ ସଂଖ୍ୟାରେ ଗଦ୍ୟ କବିତାକୁ 'ପାରୋଡ଼ି' କରି 'ଗଦ୍ୟ କବିତା' ଆକାରରେ 'ଆମର ସ୍ୱାଧୀନତା' ଶୀର୍ଷକ କବିତାରେ ହାସ୍ୟରସିକ ଲକ୍ଷ୍ମୀକାନ୍ତ ଲେଖିଛନ୍ତି ଯେ ସ୍ୱାଧୀନତା ପାଇବାପାଇଁ ଆମ୍ଭକୁ କେତେ ମୁଣ୍ଡ ହଲା, ନାକଫୁଲା, ଲୁଣମରା, ପଟୁଆର, ସ୍ଲୋଗାନ୍, ଖଦଡ଼ ପିନ୍ଧା, ମୂତାକଟା—ଏମିତି କେତେ କ'ଣ କରିବାକୁ ପଡ଼ିଥିଲା । ବର୍ତ୍ତମାନ କିନ୍ତୁ ଆମର ନଜର ସରକାର ପ୍ରତିଷ୍ଠିତ ହୋଇଛି । ତାଙ୍କର ହାତରେ—

'ତାଙ୍କର ହାତରେ ଦେଉଛୁ ଗୁଆ ଟେକ
ତାଙ୍କର ମୁଣ୍ଡେ ଥୋଇଛୁ ଆମେ ଠେକ

ତା ଆଉ କେହି ନୁହେଁ—ତାଙ୍କରି ଏକା
ହାଣ୍ଡି କୁଣ୍ଡି ବେକା
ଦେଇଛୁ ଛୁଞ୍ଚ ଆଉ ଗଲା
ତେଲଧଡ଼ି ସଙ୍ଗେ ପଲା
ଗୁଞ୍ଜୁଣୀ କୁଲା ଚୁଲୁଣୀ
ଆମର ନାହିଁ ଆଉ କିଛୁ ଖଲୁଣି
ଆମେ ଛାଣ୍ଡିଲେ ଦେଇଛୁ ପଘା
ନାହିଁ ଆମର କେଉଁଥିକୁ ଲଗା
ଆମେ ନାଚିବା ଧେଇ ଧେଇ
ଆମ ସରକାର ହାତେ ସଅଁପି ଦେଇ
ଆମର ଘର କରଣା
ଆଉର କ୍ୟା ପରବାୟ—
ଆଉର୍ କିସ କୋ ଡରନା ?

ତାଙ୍କର କବିତ୍ୱର ଆଲୋଚନା ପାଇଁ ଏଇଭଳି ଅସଂଖ୍ୟ କବିତା ଉଦ୍ଧାର କରାଯାଇ ପାରେ । ସମସାମୟିକ ସମସ୍ୟା ଉପରେ ତାଙ୍କର ହାସ୍ୟରସପୂର୍ଣ୍ଣ କଟାକ୍ଷ କେଉଁ ପାଠକ ପ୍ରାଣରେ ବିଜୁଳିର ଚମକ ସୃଷ୍ଟି କରେ ନାହିଁ ।

ଲକ୍ଷ୍ମୀକାନ୍ତ କେବଳ କବି ନୁହନ୍ତି, ସେ ଜଣେ ଆଜନ୍ମ ସାଧକ ଓ ଅମୃତର ସନ୍ତାନ । ଜୀବନବ୍ୟାପୀ ନାନା ଦୁଃଖ ଯନ୍ତ୍ରଣା ମଧ୍ୟରେ ସେ ଯେଉଁ ପବିତ୍ର ଲକ୍ଷ୍ୟ ପଥରେ ଅଗ୍ରସର ହୋଇଛନ୍ତି, ସେଥିରେ ତାଙ୍କର ଦୃଢ଼ତା କ୍ଷୁଣ୍ଣ ହୋଇ ନାହିଁ । ବରଂ ଜୀବନର ମହା ପରୀକ୍ଷା କ୍ଷେତ୍ରରେ, ସଂସାରର ନାନା ଜଞ୍ଜାଳ ମଧ୍ୟରେ ସବୁ ଦୁଃଖ କଷ୍ଟକୁ ଆନନ୍ଦରେ ମୁଣ୍ଡାଇ ସେ ଗାଇଛନ୍ତି ଭଗବାନଙ୍କ ଉଦ୍ଦେଶ୍ୟରେ—"ଆଉ ଜଞ୍ଜାଳ କାହିଁକି—ମନ କାମନା ମେଣ୍ଟିଲା ନାହିଁକି ।" ଜୀବନରେ ସମସ୍ତ ଉପଭୋଗରୁ ସେ ବଞ୍ଚିତ ହୋଇଛନ୍ତି । ତଥାପି ସେହି ଦୁସ୍ତର ଜୀବନ ସାଧକ କବିଙ୍କୁ ସାଧନା ପଥରୁ ବିଚଳିତ କରିପାରି ନାହିଁ ପ୍ରାଣର ଆକୁଳ ନିବେଦନ ମଧ୍ୟରେ ତାଙ୍କର 'ତୁମେ ଯଦି ମଙ୍ଗଳ-ଆଳୟ' କବିତାରେ ସ୍ପଷ୍ଟ ଘୋଷଣା କରିଛନ୍ତି—

"ସବୁଥିରୁ ବଞ୍ଚିତ କରି କେଉଁ ସମ୍ଭାବନା ଉଡ଼ାଇବ ହେ,
ଯାହା ଦେଇଥିଲ ସବୁ ତ ନେଲଣି
ଆଉ ଏବେ କିସ ଛଡ଼ାଇବ ହେ ।"

ଏତେ ଦୁଃଖ ଯନ୍ତ୍ରଣା ମଧ୍ୟରେ ବି ତାଙ୍କର ମଙ୍ଗଳ-ଆଳୟ ବିଭୁପଦରୁ ବିଶ୍ୱାସ ତୁଟି ନ ଥିଲା । ନିଷ୍ଠାପର ସାଧନା ଓ ତପସ୍ୟା ଯୋଗୁ ଯୁଗ ଯୁଗ ପାଇଁ ସେ ଓଡ଼ିଆ ସାହିତ୍ୟରେ ଅମୃତର ସନ୍ତାନ ହୋଇ ରହିବେ ।

କବିଙ୍କର ଯେ କୌଣସି ଖଣ୍ଡିଏ ରଚନା ଭିତରେ ତାଙ୍କ ଜୀବନର ନିର୍ଦ୍ଦିଷ୍ଟ ଚିନ୍ତାଧାରା ଖୋଜି ପାଇବା ଅସମ୍ଭବ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚଳାଇ କବି ବା କଳାକାର ଭିନ୍ନ ଭିନ୍ନ ଦୃଷ୍ଟିଭଙ୍ଗୀ ଓ ଅବସ୍ଥାର ସୁଯୋଗ ନେଇ ନିଜର ଜୀବନ-ଦର୍ଶନ ରୂପାୟିତ କରେ । ସାଧାରଣ ପାଠକ ଆଗରେ ତା'ର ଚିନ୍ତାଧାରା ପରିବେଷଣ କରି ନିଜର ସୁଖ ଦୁଃଖ, ଅଭାବ ଅନୁଭୂତି ମଧ୍ୟରେ ପାଠକଙ୍କୁ ସମଦୁଃଖ ଏବଂ ସୁଖରେ ଅଭିଭୂତ କରେ ତା'ର ଆଦର୍ଶରେ ଅନୁପ୍ରାଣିତ କରେ ।

ସେହିପରି ଓଡ଼ିଆ ସାହିତ୍ୟକୁ କାନ୍ତକବିଙ୍କର ବହୁ ଦାନ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଜୀବନଦର୍ଶନ ଖୋଜିବା କଷ୍ଟକର । କାରଣ ସାହିତ୍ୟର ଏଭଳି କୌଣସି ବିଭାଗ ନାହିଁ, ଯେଉଁଥିରେ ସେ ଲେଖନୀ ଚଳାଇ ନାହାନ୍ତି ଏବଂ ନିପୁଣ କଳାକାର ଭାବରେ ପ୍ରତିଷ୍ଠିତ ହୋଇ ନାହାନ୍ତି; ଏ କଥା ଅସ୍ୱୀକାର କରିହେବ ନାହିଁ । ଯଦୁମଣିଙ୍କ ପରେ ଦରିଦ୍ର ଓଡ଼ିଆ ସମାଜରେ ଆଉ ହସ ଫୁଟିବାର ସୁଯୋଗ ଆସିଲା ନାହିଁ । ହାସ୍ୟରସର ଧାରା ଓଡ଼ିଆ ସାହିତ୍ୟରେ ଲୁପ୍ତ ପ୍ରାୟ ହେବାକୁ ବସିଲା । ସେ ପ୍ରାଣଧାରାକୁ ପୁଣି ପ୍ରବହମାନା ସ୍ରୋତସ୍ୱିନୀରେ ପରିଣତ କଲେ ଏ ଯୁଗର ଯଦୁମଣି ରହସ୍ୟର ଶିଳ୍ପୀ କାନ୍ତକବି । ବ୍ୟଙ୍ଗ କବିତା, କ୍ଷୁଦ୍ରଗଳ୍ପ, ରହସ୍ୟମୟ କାହାଣୀ, ଭଜନ, ସଙ୍ଗୀତ, କ୍ଷୁଦ୍ରକବିତା ଇତ୍ୟାଦି ଅସଂଖ୍ୟ ରଚନା ମଧ୍ୟରେ ଓଡ଼ିଆ ସାହିତ୍ୟ ସମୃଦ୍ଧ ହୋଇଉଠିଛି । କାନ୍ତକବିଙ୍କର ବହୁ କବିତା ଓଡ଼ିଶାର ଘରେଘରେ ଏତେ ଲୋକପ୍ରିୟ ଯେ ତାହା ଲୋକମୁଖରେ ମୁଖରିତ ହୋଇଥାଏ ଅଥଚ କାନ୍ତକବି ଲକ୍ଷ୍ମୀକାନ୍ତ ଯେ ଏଭଳି ମନଫୁଲାଣିଆ କରି ସେମାନଙ୍କୁ ମଜାଇ ରଖିଛନ୍ତି, ଏ କଥା କେହି ଜାଣନ୍ତି ନାହିଁ କହିଲେ ଚଳେ । "ଦେ ମୋତେ ବାଇଆ କରି" ମୁଁ ପିଲାଦିନରୁ ଗାଇ ଗାଇ ନାଚ ଶିଖିଚି, ବନ୍ଧୁ ମୁଖରୁ ଶୁଣି ଆନନ୍ଦ ପାଇଚି । ମାତ୍ର ସେଇ କବିତାର ଅମର କବିଙ୍କୁ ଜାଣି ନ ଥିଲି । 'ଜୀବନ-ସଙ୍ଗୀତ''ର 'ସବୁଥିରୁ ଦଣ୍ଡିତ କରି' 'ଭଙ୍ଗାମୋର ଡଙ୍ଗା ଖଣ୍ଡିକ' 'ଆସ ପ୍ରିୟତମ ମରଣ ମୋହର' ପ୍ରଭୃତି ବହୁ କବିତା କେତେ ବୃଦ୍ଧଙ୍କୁ ପାଗଳ କରିଛି, ତନ୍ମୟ ହୋଇ ଭଜିବାର ଦେଖିଛି । ସେମାନଙ୍କୁ ମନବୋଧ ଚଉତିଶା ପରି ଏ ସବୁ କବିତା ଏ ବିଂଶ ଶତାବ୍ଦୀର ପତ୍ରିକା ପ୍ରଚୁରିତ ଯୁଗରେ ମଧ୍ୟ ଏତେ ଆପଣାର ଓ ମନଛୁଆଁ ହୋଇଥିଲେହେଁ ସେମାନେ ହୁଏତ କବିତାର ସ୍ରଷ୍ଟାଙ୍କୁ ଚିହ୍ନିବାର ଅବକାଶ ନାହିଁ ।

ସେ ଯାହା ହେଉ, କାନ୍ତକବିଙ୍କର ଜୀବନ ଦର୍ଶନ ଖୋଜି ପାଇବା ପାଇଁ "ଜୀବନ-ସଙ୍ଗୀତ''ର କବିତାଗୁଡ଼ିକ ଯେପରି ଅଧିକ ରୂପାୟିତ ହୋଇ ଉଠିଛି । ନିଜର ଜୀବନର ନାନା ଅନୁଭୂତି-ବହୁଳ ଅଭିବ୍ୟକ୍ତ ଏଇ ସାମାନ୍ୟ କେତେଗୋଟି କବିତାରେ ଫୁଟିଥିଲେ ହେଁ ଏକଥା ସ୍ୱୀକାର କରିବାକୁ ହେବ ଯେ ବାସ୍ତବିକ "ଜୀବନ-ସଙ୍ଗୀତ" ଜୀବନର ସଙ୍ଗୀତକୁ ମୁଖରିତ କରିବାରେ ସର୍ବାଧିକ ସମର୍ଥ ହୋଇଛି ।

ସାହିତ୍ୟ ଯଦିଓ ଜୀବନର ସମାଲୋଚନା ବୋଲି ପ୍ରତିପାଦିତ ହୋଇଛି, ତଥାପି ମନେରଖିବାକୁ ହେବ ଯେ ଏହା ଜୀବନର ପ୍ରକୃତ ପ୍ରତିନିଧିତ୍ୱ କରେ ନାହିଁ । ମନୁଷ୍ୟ ନିଜେହିଁ ନିଜର ପ୍ରତିନିଧି ହୋଇପାରେ । ତେବେ ରଚନାର ସେହି କ୍ଷୀଣ ପରିସର ମଧ୍ୟରେ ଆମେ ଦେଖୁ କାନ୍ତକବି "ସଂସାର-ନଗର ସଂସାର କାଗ୍ରତେ" ନିଜକୁ ତିଳ ତିଳ କରି ଇନ୍ଧନ ଯୋଗାଇଛନ୍ତି । ତା'ରି ମଧ୍ୟରେ ଦଳିତକଳି ପେଷି ହୋଇ ଯାଇଛନ୍ତି । ଆଶା ଆକାଂକ୍ଷା, ହତାଶା, ଗ୍ଲାନି ମଧ୍ୟରେ ଗଭୀର ନୈରାଶ୍ୟବାଦୀ ହୋଇ ପଡ଼ିଥିଲେ ହେଁ କେଉଁ ●ସ୍ୱରୂପ ଦେବତାର ମୋହନ ଆକର୍ଷଣ ତାଙ୍କୁ ଏ ସବୁ ମଧ୍ୟରେ ବିଚଳିତ କରି ପାରିନି । ସେ ପ୍ରଭୁପଦରେ ସେଇ ପରମ ପଦରେ ନିଜକୁ ହଜାଇ ଦେଇଛନ୍ତି । ଜୀବନର ସମସ୍ତ ହତାଦର, ଦୁଃଖ, ଦୁର୍ଦ୍ଦଶା ମଧ୍ୟରେ ସେ ସେହି ପରମଶକ୍ତି ନିକଟରେ କେତେ ମାନ ଅପମାନ, ଅଭିମାନ କରିଛନ୍ତି, ନିଜର କର୍ତ୍ତବ୍ୟପଥରୁ ଟଳି ନ ଯିବା ପାଇଁ ସେ ବଦ୍ଧପରିକର ହୋଇଛନ୍ତି । ଗଭୀର ଅଦ୍ୱୈତବାଦରେ ମୁଗ୍ଧ ହୋଇ ସେ ପରମଶକ୍ତି ଏବଂ ନିଜ ଭିତରେ କୌଣସି ପାର୍ଥକ୍ୟ ଦେଖିପାରି ନାହାନ୍ତି ଏବଂ ଅତି ବିନମ୍ର ଭାବରେ ସେଇ ପରମ ପଦରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଛନ୍ତି । ତାଙ୍କର କବିତାର ଛନ୍ଦେ ଛନ୍ଦେ ଜୀବନର ଏହି ନିଖୁଣ ଅଭିବ୍ୟକ୍ତି ଅତି ଜୀବନ୍ତ ହୋଇଉଠିଛି ।

ନିୟତିର ଇଙ୍ଗିତ ବିରୁଦ୍ଧରେ ଯିବାର ଶକ୍ତି କାହାର ନାହିଁ । ଯୁଗଗୌରବ ବରେଣ୍ୟ କାନ୍ତକବିଙ୍କୁ ପଙ୍ଗୁକରି ଗଡ଼ି ବିଧାତାର କେଉଁ ଅଭିଳାଷ ପୂରଣ ହୋଇଛି, ତାହା ତାଙ୍କୁଇ ଜଣା । ପୁଣି ତାହାରି ମଧ୍ୟରେ ସଂସାର ଖିବ ଝଡ଼ ଝଞ୍ଜା, କଷଣ ମଧ୍ୟରେ ସେ ପେଷି ହୋଇ ଯାଇଛନ୍ତି । "ତୁମେ ସଦା ମଙ୍ଗଳ-ଆଳୟ" କବିତାରେ ଏହି ଭାବ ପ୍ରାଞ୍ଜଳ ଭାବରେ ଆଲୋଚିତ ହୋଇଅଛି ।

କବି ପ୍ରାଣର ସେହି ଆକୁଳ ନିବେଦନ ମଧ୍ୟରେ ଜଣାଣ କରିଛନ୍ତି—

"ଏଡ଼େ ବଡ଼ ପ୍ରଭୁପଦ ଆଶ୍ରା କରି
କରମ-ଫାଶ ନ ତୁଟିଲି ମୋହରି !"

ଭଗବାନ ଯେ ଏଡ଼େ ନିର୍ଦ୍ଦୟ ହୋଇ ପାରନ୍ତି ସେ ବିଶ୍ୱାସ କବି କରିପାରି ନାହାନ୍ତି । ମଙ୍ଗଳମୟ ସ୍ରଷ୍ଟାଙ୍କର ଇଚ୍ଛା ମଙ୍ଗଳମୟ ହେଉ, ତାହା ହିଁ ସେ ପ୍ରଭୁ ପଦରେ ଚିନ୍ତା କରିଛନ୍ତି । ଜୀବନର ଏହି ଝଡ଼ ଝଞ୍ଜା ମଧ୍ୟରେ ସେ ରାଧାନାଥଙ୍କ ପରି ଗଭୀର ନୈରାଶ୍ୟବାଦୀ ନ ହୋଇଥିବାରୁ ମଧୁବାବୁଙ୍କ ପରି "ମରଣକୁ କରିଅଛି ଅମୃତସୋପାନ" ପରି ସେ ମୃତ୍ୟୁରେ ମଧ୍ୟ ଅମୃତର ସନ୍ଧାନ ଦେଇଛନ୍ତି । ସେ 'ଆସ ପ୍ରିୟତମ ମରଣ ମୋହର" କବିତାରେ ଗାଇଛନ୍ତି—

"ଆସ ପ୍ରିୟତମ ମରଣ ମୋହର
ମୋହ ବନ୍ଧନ ତୁଟାଇ
ଆସ ଆସ ମୋର ଅନ୍ଧନୟନେ
ନୂତନ ଜଗତ ଫୁଟାଇ ।

× × ×

ଜର ଜର ମୋର କାତର ଅନ୍ତରେ
ସୁନା-କାଠି ଛୁଇଁ ଦେଇ ଯାଅ ଥରେ
ନବୀନ ଜୀବନେ ନବ ବସନ୍ତର
ନବ ସଙ୍ଗୀତ ଉଠାଇ ।”

କବିଗୁରୁ ରବୀନ୍ଦ୍ର ଏହି ଭାବରେ ମୁଗ୍ଧ ହୋଇ ତାଙ୍କର “ପୂରବୀ”ରେ ଗାଇଥିଲେ—

“ସେଇ ବିଶ୍ୱ ଚିର ଲୋକେ
ଯେଥା ସୁଗମ୍ଭୀର ବାଜେ
ଅନ୍ତରେର ବୀଣା ଯାର
ଶବ୍ଦହୀନ ସଙ୍ଗୀତ ଧାରାୟ
ଛୁଟେଛେ ରୂପେର ବନ୍ୟା
ଗହ୍ରେ ସୂର୍ଯ୍ୟେ ତାରାୟ ତାରାୟ ।”

‘ମରଣ’ ମଧ୍ୟରେ ଏଭଳି ଅମୃତର ସନ୍ଧାନ ଦେବା ସାହିତ୍ୟରେ ପଟାନ୍ତର ନାହିଁ । ସେକ୍‌ସପିୟରଙ୍କ ପରି ଜଗତର ବହୁ ବିଖ୍ୟାତ ମନୀଷୀ ମୃତ୍ୟୁ ମଧ୍ୟରେ ମଙ୍ଗଳର ନିର୍ଦ୍ଦେଶ ଦେଖି ପାରି ନାହାନ୍ତି । ବରଂ ତାହା କୁତ୍ସିତ କଦାକାର, ଅସ୍ପୃହଣୀୟ ଭାବେ ପ୍ରତିଭାତ ହୋଇଛି ।

ଜୀବନ ସଂଘର୍ଷ ଯେତିକି ଯେତିକି ବଢ଼ି ଉଠିଛି କବି ସେ ସବୁକୁ ପ୍ରତି ପଦକ୍ଷେପରେ ଆନନ୍ଦରେ ମୁଣ୍ଡେଇ ନେଇ ତାହା ଭଗବାନଙ୍କର ଆଶୀର୍ବାଦ ବୋଲି ଗ୍ରହଣ କରିଛନ୍ତି ଏବଂ ବିନୀତ ଭାବରେ ପଚାରିଛନ୍ତି “ଆଉ କଙ୍କାଳ କାହିଁକି—ମନକାମନା ମେଣ୍ଟିଲା ନାହିଁକି ?” ଏବଂ ପରେ ଗଭୀର ନିଷ୍ଠାମଧ୍ୟରେ ସେହି ସଂଘର୍ଷ ଓ କଠୋର ଜୀବନ ପରୀକ୍ଷା ମଧ୍ୟରେ ବିଚଳିତ ନ ହୋଇ ସେ ଘୋଷଣା କରିଛନ୍ତି ତାଙ୍କର ଜୀବନ ଲକ୍ଷ୍ୟରୁ କେବେ ହେଲେ ବିଚ୍ୟୁତ ହେବେ ନାହିଁ । ତେଣୁ—

“ରଖିଲେ ବା ରଖ, ନ ରଖିଲେ ନାହିଁ
ନାହିଁ ତ ଭାବନା ତିଳେ ତାହାପାଇଁ
ଛାଡ଼ିବି କି ପଦେ ଛଡ଼ାଇଲେ ଯେତେ
ପଦତଳେ ଲୋଟି ମରିବି ହେ ।”

କାରଣ ସେ ନିଜ ମଧ୍ୟରେ ଭଗବାନଙ୍କୁ ଉପଲବ୍ଧି କରିଛନ୍ତି । ତାଙ୍କର ବିଶ୍ୱାସ ହୋଇଛି ଯେ ମଣିଷର ଅଭାବ ଅସୁବିଧା ହସ କାନ୍ଦ ମଧ୍ୟରେ କେବଳ ସେହି

ପରମେଶ୍ୱରଙ୍କର ପ୍ରଚ୍ଛନ୍ନ ହସ୍ତ ରହିଛି । ବିଶେଷତଃ ମଣିଷ ଯେଉଁଭଳି ସଂସାରର ମୋହ ଜାଲରେ ପଡ଼ି ସମସ୍ତ ଦ୍ରବ୍ୟକୁ ମୋର ବୋଲି କହି ଦାରୁଣ ଦୁର୍ବିପାକ ମଧ୍ୟରେ ଗତି କରେ, ସେକଥା ସେ ଚେତେଇ ଦେଇ ପ୍ରାଣପ୍ରସ୍ପେନ୍ଦନା ମଧ୍ୟରେ ଗାଇଛନ୍ତି—

'ମୋର ମୋର ବୋଲି
ନ ବୁଝି ଆପେ ମଲି
ସବୁ ମୋହର...........ସବୁ ତୋହର ।"

କବି ଗଙ୍ଗାଧର ଏହି ଭାବରେ ଉଦ୍‌ବୁଦ୍ଧ ହୋଇ ତାଙ୍କର ବିଖ୍ୟାତ 'ଭକ୍ତି' କବିତାରେ ଲେଖିଥିଲେ—

"କି ଦେଇ ପୂଜିବି ଯାହା ମୁଁ ଦେଖୁଛି
ସବୁ ତୁମ୍ଭର ପ୍ରସାଦ
ଯାହା ପରସାଦ ତାଙ୍କୁ ଅରପିଲେ
ହେବ କିନା ଅପରାଧ ।"

କବି ବିଶ୍ୱର ଶିକ୍ଷକ । ତାଙ୍କର ଜୀବନଦର୍ଶନ ମଧ୍ୟରେ ଏକର ଅନୁଭୂତି ଅନେକରେ ପରିଣତ ହୋଇଯାଏ । ତା ମଧ୍ୟରେ କ୍ଷୁଦ୍ର ସଂକୀର୍ଣ୍ଣ ମାନସିକ ପରିସର କେବଳ ଉନ୍ନତ, ବିସ୍ତାରିତ ହୁଏ ନାହିଁ; ସମୃଦ୍ଧ ମଧ୍ୟ ହୁଏ । କବିର ଆବେଗ ପ୍ରତି ହୃଦୟରେ ମୂର୍ଚ୍ଛନା ତୋଳେ । ଜୀବନର ସ୍ୱାଦ ସେ ପାଏ କବିର ଦର୍ଶନ ମଧ୍ୟରେ । ସେହିଠାରେ କବି ହୁଏ ଦ୍ରଷ୍ଟା, ସେ ଆଗାମୀ ଯୁଗର ବାର୍ତ୍ତାବହ ହୋଇଉଠେ ।

ବିଖ୍ୟାତ ହିନ୍ଦୀସାହିତ୍ୟର ଅନ୍ୟତମ ବରେଣ୍ୟ କବିଙ୍କ ଭାଷାରେ —

"ମାନବ ଜୀବନ ବେଦୀପର
ପରିଣୟ ହୋ ବିରହ ମିଳନକା
ସୁଖ ଦୁଃଖ ଦୋନେ ନାଚେଙ୍ଗେ
ହେ ଆଁଖ୍ ଖେଲକା ମନକା ।" (ଜୟଶଙ୍କର ପ୍ରସାଦ)

ଅର୍ଥାତ୍ ଦୁନିଆରେ ସୁଖ ଦୁଃଖ ଲାଗି ରହିଛି । ଏକଥା ମଣିଷ ଜାଣି ମଧ୍ୟ ବିଚଳିତ ହୁଏ । ଜୀବନକୁ ସୁନିୟନ୍ତ୍ରଣ କରିପାରେ ନାହିଁ । କାନ୍ତକବି ଏହି ମହାସତ୍ୟ ଉପଲବ୍ଧି କରିଛନ୍ତି ।

